1274

॥ ଶ୍ରୀହରିଃ ॥

# ପରମାର୍ଥସୂତ୍ର-ସଂଗ୍ରହ

**परमार्थसूत्र-संग्रह ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ଲେଖକ—**ଜୟଦୟାଲ ଗୋୟନ୍ଦକା**

ଓଡ଼ିଆ ଭାଷାନ୍ତର—**ସୁଧାକର ମହାପାତ୍ର**

॥ ଶ୍ରୀହରିଃ ॥

# ନିବେଦନ

**'ପରମାର୍ଥସୂତ୍ର ସଂଗ୍ରହ'**—ପୁସ୍ତକର ଏହି ନାମରୁ ହିଁ ସ୍ପଷ୍ଟ ହୁଏ ଯେ ଏଥିରେ ଜୀବନକୁ ଉଚ୍ଚକୁ ଉଠାଇବା ପାଇଁ ମହତ୍ତ୍ୱପୂର୍ଣ୍ଣ ପାରମାର୍ଥିକ କଥା ସୂତ୍ରରୂପରେ ସଙ୍କଳିତ କରାଯାଇଛି। ଗମ୍ଭୀର ପାରମାର୍ଥିକ ଚିନ୍ତନ ଏବଂ ସରଳ ଆଧ୍ୟାତ୍ମିକ ବିଗ୍ରହରେ ପରିପୂର୍ଣ୍ଣ ତଥା ଜନକଲ୍ୟାଣାର୍ଥେ ସମର୍ପିତ ବ୍ରହ୍ମଲୀନ ପରମ ଶ୍ରଦ୍ଧେୟ ଶ୍ରୀଜୟଦୟାଲ ଗୋୟନ୍ଦକାଙ୍କର କତିପୟ ଲେଖା ଏବଂ ମହତ୍ତ୍ୱପୂର୍ଣ୍ଣ ପ୍ରବଚନର ସାର ସୂକ୍ତି ରୂପରେ ଏଥିରେ ସଜା ଯାଇଛି।

ପାରମାର୍ଥିକ ସୂକ୍ତିମାନଙ୍କର ଏହି ସଂଗ୍ରହରେ ଶରଣାଗତି, ଶ୍ରଦ୍ଧା, ପ୍ରେମ, ଦୟା, ଭକ୍ତି, ଜ୍ଞାନଯୋଗ, କର୍ମଯୋଗ, ସାଧନାର କଥା, ସତର୍କତା ଆଦି ମୋଟ ଚଉଦଟି ଉପଯୋଗୀ ଶୀର୍ଷକ ରହିଛି। ସେହି ସବୁ ଶୀର୍ଷକରେ ମୁଖ୍ୟତଃ ତତ୍ ତତ୍ ବିଷୟ ସମ୍ବନ୍ଧିତ ବିନ୍ଦୁଗୁଡ଼ିକ ଉପରେ ଗୋଟିଏ ବାକ୍ୟରୁ ଆରମ୍ଭ କରି ଛୋଟ ବଡ଼ ଅନେକ ଅବତରଣିକା (ପାରାଗ୍ରାଫ୍) ପର୍ଯ୍ୟନ୍ତ ବିଭିନ୍ନ ଦୃଷ୍ଟିକୋଣରୁ ବିଗ୍ରହ କରାଯାଇଛି। ଏହି ପ୍ରକାର ପୁସ୍ତକର ବିଷୟବସ୍ତୁ ସମସ୍ତଙ୍କ ପାଇଁ ହିତକାରୀ ଏବଂ ଆତ୍ମପ୍ରେରକ ଅଟେ। ଏହାର ପଠନ-ପାଠନରେ ଜୀବନ-ସୁଧାରିବା କୌଶଳ ଏବଂ ଉତ୍ତମ ବ୍ୟବହାରର ଶିକ୍ଷା, ଆଧ୍ୟାତ୍ମିକ ଉନ୍ନତି ସହିତ ଭଜନ-ସାଧନ-ବିଷୟକ ପବିତ୍ର ପ୍ରେରଣା ନିଶ୍ଚିତରୂପେ ପ୍ରାପ୍ତ ହୁଏ।

ମର୍ମକୁ ସ୍ପର୍ଶ କଲାଭଳି ଏହାର ତଥ୍ୟପରକ (ଆତ୍ମ-ସଂସ୍କାର ବିଷୟକ) କଥା କାମରେ ଲଗାଇଲେ ସର୍ବୋପରି ପାରମାର୍ଥିକ ଲାଭ 'ଆତ୍ମକଲ୍ୟାଣ' ସୁନିଶ୍ଚିତ ହୁଏ। ଅତଏବ ଜିଜ୍ଞାସୁ ସଜ୍ଜନବୃନ୍ଦ, କଲ୍ୟାଣକାମୀ ମହାନୁଭବ ଏବଂ ମା'-ଭଉଣୀମାନେ ଏହି ପୁସ୍ତକରୁ ଅଧିକାଧିକ ଲାଭ ଉଠାଇବା ପାଇଁ ଆମର ବିନମ୍ର ପ୍ରାର୍ଥନା।

ଗୀତାପ୍ରେସ୍ ଦ୍ୱାରା ପ୍ରକାଶିତ ପୁସ୍ତକାବଳୀକୁ ଓଡ଼ିଆ ଭାଷାରେ ପ୍ରକାଶିତ କରିବାରେ **'ଗୀତା ଭାଗବତ ଭବନ'**ର ଶ୍ରୀମାନ୍ ପ୍ରଦୀପକୁମାର, ଜ୍ୟୋତିପ୍ରକାଶ ଓ ସତ୍ୟପ୍ରକାଶ ଅକୁଣ୍ଠିତ ସାହାଯ୍ୟ କରିଥିବାରୁ ଧନ୍ୟବାଦର ପାତ୍ର। ଏହି ପୁସ୍ତକର ସମ୍ପାଦନା କାର୍ଯ୍ୟ ଡକ୍ଟର ମାର୍କଣ୍ଡ ଦାସ ସୁଚାରୁରୂପେ କରିଥିବାରୁ ଆମେ ତାଙ୍କୁ ଆମର ଶୁଭେଚ୍ଛା ଜଣାଉଛୁ।

—**ପ୍ରକାଶକ**

॥ ଶ୍ରୀହରିଃ ॥

# ବିଷୟ-ସୂଚୀ





॥ ଶ୍ରୀହରିଃ ॥

# ଶରଣାଗତି

୧- ଭଗବାନ୍‌ଙ୍କଠାରେ ଶରଣାଗତି ଗୋଟିଏ ବଡ଼ ମହତ୍ତ୍ୱପୂର୍ଣ୍ଣ ସାଧନ । ପରନ୍ତୁ ସେଥିରେ ଅନନ୍ୟତା ହେବା ଉଚିତ ।

୨- ଗୀତାର ଆରମ୍ଭରେ ଅର୍ଜୁନ **"ଶାଧି ମାଂ ତ୍ୱାଂ ପ୍ରପନ୍ନମ୍"** (୨/୭) କହି ଭଗବାନ୍‌ଙ୍କ ଶରଣାପନ୍ନ ହୋଇଛନ୍ତି ଏବଂ ପରିଶେଷରେ ଭଗବାନ୍ **"ସର୍ବଧର୍ମାନ୍‌ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ"** (୧୮/୬୬) କହି ଶରଣାଗତିକୁ ପୂର୍ଣ୍ଣ ସମର୍ଥନ କରିଛନ୍ତି ।

୩- ସାଧକର ଆବଶ୍ୟକତା ହେଉଛି ପରମାତ୍ମାଙ୍କର ପରାୟଣ ହେବା । ଶ୍ରୀପରମାତ୍ମାଙ୍କ ଶରଣ ନେବାମାତ୍ରେ ସବୁ କିଛି ସମ୍ଭବ ହୋଇପାରେ ।

୪- ସେହି ପରମାତ୍ମାଙ୍କ ଶରଣ ନେବା ସାଧକଙ୍କ କର୍ତ୍ତବ୍ୟ । ଶରଣ ନେବା ପରେ ପ୍ରଭୁ ସ୍ୱୟଂ ସବୁ ଭାର ସମ୍ଭାଳି ନିଅନ୍ତି ।

୫- ପ୍ରଭୁଙ୍କୁ ପାଇବା ପାଇଁ ଆମକୁ ଘରୁ କିଛି ଦେବାକୁ ପଡେ ନାହିଁ । ଭଗବାନ୍‌ଙ୍କ ଜିନିଷ ଭଗବାନ୍‌ଙ୍କୁ ସମର୍ପଣ କରିଦେବା ଉଚିତ । ଏଥିରେ ଆମର କିଛି ଲାଗେନା ।

୬- ସମସ୍ତ ବିଘ୍ନରୁ ମୁକ୍ତି ପାଇବାର ମୁଖ୍ୟ ଉପାୟ—ଈଶ୍ୱରଙ୍କ ଶରଣ ।

୭- ଭଗବାନ୍‌ଙ୍କୁ ଯନ୍ତ୍ରୀ ମାନି ନିଜକୁ ତାଙ୍କ ହାତରେ ସମର୍ପଣ କରି ଦେଇ ତାଙ୍କ ହାତକୁ ଯନ୍ତ୍ର କରି ତାଙ୍କରି ଆଜ୍ଞାରେ ଚଳିବା ଉଚିତ ।

୮- ଯେ ସମୟ ପଡିଲେ ନିଜର ସର୍ବସ୍ୱ ପ୍ରଭୁଙ୍କ ପାଇଁ ସମର୍ପଣ କରିବାକୁ ପ୍ରସ୍ତୁତ ହୁଏ, ସେ ହିଁ ଶ୍ରେଷ୍ଠ ।

୯- ଶରଣାଗତି ନିମନ୍ତେ ଚାରୋଟି କଥା ସାଧକମାନଙ୍କୁ ମାନିବାକୁ ହୁଏ ।

୧. ସବୁ କିଛି ପରମାତ୍ମାଙ୍କର ମନେ କରି ତାଙ୍କୁ ଅର୍ପଣ କରିବା ।

୨. ତାଙ୍କ ପ୍ରତ୍ୟେକ କାର୍ଯ୍ୟରେ ପରମ ସନ୍ତୋଷ ଲାଭ କରିବା ।

୩. ତାଙ୍କ ଆଜ୍ଞାନୁସାରେ ତାଙ୍କ ପାଇଁ ସମସ୍ତ କର୍ତ୍ତବ୍ୟ କର୍ମ କରିବା ।

୪. ନିତ୍ୟ ନିରନ୍ତର ସ୍ୱାଭାବିକଭାବେ ତାଙ୍କୁ ସ୍ମରଣ ରଖିବା ।

୧୦- ଶରୀର, ମନ, ବୁଦ୍ଧି, ଆତ୍ମା—ସବୁ ତାଙ୍କରି ଚାରୁଚରଣରେ ଅର୍ପଣ କରି ଦିନ-ରାତି ତାଙ୍କରି ଚିନ୍ତନରେ ଲିପ୍ତ ରହିବା ବିଧେୟ ।

୧୧- ସବୁ କିଛି ପରମାତ୍ମାଙ୍କୁ ସମର୍ପଣ କରି ଦେବାର ଅର୍ଥ ନୁହେଁ ଘରଦ୍ୱାର ଛାଡ଼ି ସଂନ୍ୟାସୀ ହୋଇଯିବା ବା କର୍ତ୍ତବ୍ୟ କର୍ମ ତ୍ୟାଗ କରି କର୍ମହୀନ

ହୋଇ ବସିଯିବା । ସାଂସାରିକ ବସ୍ତୁ ଉପରେ ଆମେ ଭୁଲରେ ମମତା ଆରୋପିତ କରି ରଖିଛନ୍ତି ଅର୍ଥାତ୍ ସେଥିରେ ଯେଉଁ ମୋ'ପଣ ଅଛି, ତାହାକୁ ଉଠାଇ ଦେବା । ଏହା ତାଙ୍କ ବସ୍ତୁ ତାଙ୍କୁ ହିଁ ଅର୍ପଣ କରି ଦେବା ।

୧୨- କେବଳ ପରମାତ୍ମାଙ୍କ ବ୍ୟତୀତ କାହାରି କୌଣସି ସମୟରେ ବି ତିଳେମାତ୍ର ଆଶ୍ରୟ ନ ନେଇ ଲଜ୍ଜା, ଭୟ, ମାନ-ବଡ଼ିମା ଏବଂ ଆସକ୍ତି ତ୍ୟାଗ କରି, ଶରୀର ଓ ସଂସାରରେ ଅହଂତା-ମମତା ରହିତ ହୋଇ କେବଳ ଏକ ପରମାତ୍ମା ହିଁ ନିଜର ପରମ ଆଶ୍ରୟ, ପରମ ଗତି ଏବଂ ସର୍ବସ୍ୱ ବୁଝି ତଥା ଅନନ୍ୟ ଭାବରେ ଅତିଶୟ ଶ୍ରଦ୍ଧା, ଭକ୍ତି ଓ ପ୍ରେମପୂର୍ବକ ନିରନ୍ତର ଭଗବାନ୍‌ଙ୍କ ନାମ, ଗୁଣ, ପ୍ରଭାବ ଓ ସ୍ୱରୂପ ଚିନ୍ତନ କରିବା ଏବଂ ଭଗବାନ୍‌ଙ୍କୁ ଭଜନ, ସ୍ମରଣ କରି ତାଙ୍କ ଆଜ୍ଞାନୁସାରେ ସମସ୍ତ କର୍ତ୍ତବ୍ୟ କର୍ମକୁ ନିଃସ୍ୱାର୍ଥଭାବରେ କେବଳ ଭଗବାନ୍‌ଙ୍କ ପାଇଁ ଆଚରଣ କରିବା ହିଁ 'ସବୁ ପ୍ରକାରେ ପରମାତ୍ମାଙ୍କ ଅନନ୍ୟ ଶରଣ' ହେବା ଅଟେ ।

୧୩- ଶରଣ, ଆଶ୍ରୟ, ଅନନ୍ୟଭକ୍ତି, ଅବ୍ୟଭିଚାରିଣୀ ଭକ୍ତି, ଅବଲମ୍ବନ, ନିର୍ଭରତା ଏବଂ ଆତ୍ମସମର୍ପଣ ଆଦି ଶବ୍ଦ ପ୍ରାୟ ଏକାର୍ଥବୋଧକ ।

୧୪- ସମସ୍ତ ସାଧନ ମଧ୍ୟରେ ପରମାତ୍ମାଙ୍କ ଶରଣାଗତି ପରି ସରଳ, ସୁଗମ, ସୁଖସାଧ୍ୟ ସାଧନ ଅନ୍ୟ କିଛି ନାହିଁ ବୋଲି ପ୍ରତୀତ ହୁଏ । ଏଣୁ ପ୍ରାୟ ସବୁ ଶାସ୍ତ୍ରରେ ଏହାର ପ୍ରଶଂସା କରାଯାଇଛି ।

୧୫- ଏହି ସମସ୍ତ ଜଗତ୍ ସେହି ପରମାତ୍ମାଙ୍କର ଅଟେ । ସେ ସମସ୍ତ ପଦାର୍ଥ ଉତ୍ପନ୍ନ କରନ୍ତି । ସେ ନିୟନ୍ତ୍ରଣକର୍ତ୍ତା । ସେ ଆଧାର ଏବଂ ସେ ସ୍ୱାମୀ । ସେ ଆମକୁ ଆମର କର୍ମବଶତଃ ଯେପରି ଯୋନି, ଯେଉଁ ସ୍ଥିତି ମିଳିବା କଥା ସେଥିରେ ଉତ୍ପନ୍ନ କରି ନିଜର କିଛି ବସ୍ତୁକୁ ସମ୍ଭାଳିବା ଓ ସେବାର ଭାର ଦେଇଛନ୍ତି ଏବଂ ଆମପାଇଁ କର୍ତ୍ତବ୍ୟର ବିଧି ମଧ୍ୟ ବତାଇ ଦେଇଛନ୍ତି । ପରନ୍ତୁ ଆମେ ଭ୍ରମରେ ପରମାତ୍ମାଙ୍କ ପଦାର୍ଥକୁ ନିଜର ବୋଲି ମାନି ନେଉଛୁ, ଏଥିପାଇଁ ଆମର ଦୁର୍ଗତି ହେଉଛି । ଯଦି ଆମେ ଏହି ଭୁଲକୁ ସଂଶୋଧନ କରି ବୁଝିଯିବା ଯେ ଯାହା କିଛି ଅଛି ସବୁ ଭଗବାନ୍‌ଙ୍କର, ଆମେ ତ ତାଙ୍କର ସେବକ ମାତ୍ର, ତାଙ୍କର ସେବା କରିବା ଆମର ଧର୍ମ; ତେବେ ସେହି ପରମାତ୍ମା ଆମକୁ ସତ୍ୟପରାୟଣ ବୁଝି ଆମ ଉପରେ ପ୍ରସନ୍ନ ହେବେ ଏବଂ ଆମେ ତାଙ୍କ ଦୟା ଏବଂ ପୁରସ୍କାରର ପାତ୍ର ହେବା ।

୧୬- ଜାତି ବା ଆଚରଣରେ କେହି କେତେ ନୀଚ ବା ପାପୀ ହେଉ ନା କାହିଁକି ଭଗବାନ୍‌ଙ୍କ ଶରଣମାତ୍ରେ ହିଁ ସେ ଅନାୟାସରେ ପରମଗତି ପ୍ରାପ୍ତ ହୁଏ ।

୧୭- ଭଗବାନ୍ ଶରଣାଗତିକୁ ଯେତେ ମହତ୍ତ୍ୱ ଦେଇଛନ୍ତି, ସେତିକି ଅନ୍ୟ କୌଣସି ସାଧନକୁ ଦେଇ ନାହାଁନ୍ତି ।

୧୮- ଶ୍ରୀହନୁମାନ୍‌ଙ୍କ ପରି ପ୍ରେମରେ ବିହ୍ୱଳ ହୋଇ ଅତି ଶ୍ରଦ୍ଧାରେ ଭଗବାନ୍‌ଙ୍କ ଶରଣାପନ୍ନ ହେଲେ ସେ ପ୍ରତ୍ୟକ୍ଷତଃ ପ୍ରାପ୍ତ ହୁଅନ୍ତି ।

୧୯- ଭକ୍ତ ଭଗବାନ୍‌ଙ୍କ ପାଇଁ ତାଙ୍କ ଶରଣାଗତ ହେବା ଉଚିତ । ଫଳରେ ତତ୍ତ୍ୱ ଉପଲବ୍ଧିରେ ବିଳମ୍ବ ହୁଏ ନାହିଁ ।

୨୦- ଥରେ ମାତ୍ର ନିର୍ମଳ ହୃଦୟରେ ଯିଏ ଭଗବାନ୍‌ଙ୍କ ଶରଣ ହୋଇଯାଏ, ଭଗବାନ୍ ତାହାକୁ ଅଭୟ କରି ଦିଅନ୍ତି । ଏହା ଭଗବାନ୍‌ଙ୍କର ବ୍ରତ ।

୨୧- ପୂର୍ଣ୍ଣ ଅନନ୍ୟତା ହେଲେ ଭଗବାନ୍‌ଙ୍କ ଆଡୁ ଅତି ଶୀଘ୍ର ଇଚ୍ଛିତ ଉତ୍ତର ମିଳେ ।

୨୨- କେବଳ ଏକ ପରମାତ୍ମାଙ୍କ ଶରଣ ନେଲେ ସମସ୍ତ କାମ ସିଦ୍ଧ ହୋଇଯାଏ । ପରନ୍ତୁ ଶରଣ ନେବାର କାମ ସାଧକଙ୍କର । ଶରଣାଗତ ହୋଇଯିବା ପରେ ପ୍ରଭୁ ସ୍ୱୟଂ ତାର ସମସ୍ତ ଭାର ସମ୍ଭାଳି ନିଅନ୍ତି ।

୨୩- ଯଦି କେହି କାହାର ପରାୟଣ ହୋଇଯାଆନ୍ତି, ତେବେ ତାର ସମସ୍ତ ଭାର ସେ ହିଁ ସମ୍ଭାଳି ନିଅନ୍ତି । ଯେପରି ପିଲା ଯେପର୍ଯ୍ୟନ୍ତ ମା'ର ପରାୟଣ ହୋଇ ରହେ, ସେପର୍ଯ୍ୟନ୍ତ ତାର ସୁରକ୍ଷା ଏବଂ ସବୁ ପ୍ରକାରେ ସମ୍ଭାଳିବାର ଦାୟିତ୍ୱ ମା' ନିଜ ଉପରକୁ ନେଇଯାଏ ।

୨୪- ଛୋଟ ବାଳକ ଅପରାଧ କରି ନିଜ ମା'ର କୋଳକୁ ଯାଇ ବସି ଯାଏ । ସେହି ପ୍ରକାରେ ଭକ୍ତ ନିଜର ପରମ ସୁହୃଦ୍ ଭଗବାନ୍‌ଙ୍କ ପାଦପଦ୍ମରେ ପଡିଯାଏ । ପୁଣି ସେ ରଖିଲେ ରଖନ୍ତୁ ବା ମାରିଲେ ମାରନ୍ତୁ ସେଥିପ୍ରତି ଚିନ୍ତା କରେ ନା । ଭଗବାନ୍‌ଙ୍କଦ୍ୱାରା କରାଯାଇଥିବା ବିଧାନରେ ସଦା ପ୍ରସନ୍ନ ରହେ, ଅତି ବଡ ଦୁଃଖ ପଡିଲେ ମଧ୍ୟ ସେ ବିଚଳିତ ହୁଏ ନାହିଁ ।

୨୫- ଯେଉଁ ସମୟରେ ବାଳକର ବଥ ଚିପାଯାଏ, ସେ ସମୟରେ ସେ ନିଜର ମା'ଙ୍କ କୋଳରେ ସୁଖରେ ବସିଥାଏ, ଟିକିଏ ବି ଡରେ ନାହିଁ । ସେ କାନ୍ଦିଲେ ମଧ୍ୟ ଜାଣେ ଯେ ମୋର ସ୍ନେହମୟୀ ମା' କେବେ ସ୍ୱପ୍ନରେ ମଧ୍ୟ ମୋର ଅମଙ୍ଗଳ କରି ନ ପାରେ । ତା'ର ପ୍ରତ୍ୟେକ ବିଧାନ ମୋ ପାଇଁ ମଙ୍ଗଳମୟ । ଏହି ପ୍ରକାରେ ଭକ୍ତ ନିଃଶଙ୍କ ହୋଇ ବିଶ୍ୱାସପୂର୍ବକ ଭଗବାନ୍‌ଙ୍କ ଚରଣରେ ଆଶ୍ରୟ ନିଏ ।

୨୬- ଆମେ ତ ପ୍ରଭୁଙ୍କର ବାଳକ । ମା' ବାଳକର ଦୋଷ ଉପରେ

ଧ୍ୟାନ ଦିଏ ନାହିଁ। ତାହାର ହୃଦୟରେ ବାଳକ ପାଇଁ ଅପାର ସ୍ନେହ ରହିଥାଏ। ପ୍ରଭୁ ଯଦି ଆମର ଦୋଷଗୁଡ଼ିକ ପ୍ରତି ଧ୍ୟାନ ଦେବେ, ତେବେ ଆମର କିଛି ଠିକଣା ରହିବ ନାହିଁ।

୨୭- ଆମ୍ଭଙ୍କୁ ସେ ଚାହିଁଲେ ଯେପରି ରଖନ୍ତୁ, ଯେଉଁଠି ରଖନ୍ତୁ, ତାଙ୍କରି ସ୍ମୃତିସ୍ମରଣ ଅବିଚଳ କରିବା ଉଚିତ। ତାଙ୍କର ଇଚ୍ଛାରେ ଆମର ଇଚ୍ଛା, ତାଙ୍କରି ସୁଖରେ ଆମର ସୁଖ ଅନୁଭବ କରିବା ଉଚିତ। ପ୍ରଭୁ ଯଦି ଆମକୁ ନରକରେ ରଖିବାକୁ ଚାହାଁନ୍ତି ତେବେ ଆମେ ବୈକୁଣ୍ଠକୁ ଅପେକ୍ଷା କରିବା ଉଚିତ ନୁହେଁ, ବରଂ ନରକରେ ବାସ କରିବାକୁ ହିଁ ପରମ ଆନନ୍ଦ ମାନିବା ଉଚିତ।

୨୮- ସବୁ ପ୍ରକାରରେ ପ୍ରଭୁଙ୍କ ଶରଣାପନ୍ନ ହୋଇଯିବା ପରେ ତାଙ୍କଠାରୁ ଇଚ୍ଛା ବା ପ୍ରାର୍ଥନା କରିବାକୁ ପଡ଼େ ନାହିଁ। ପ୍ରଭୁ ଆମର ଓ ଆମେ ପ୍ରଭୁଙ୍କର ହୋଇଗଲେ ଆଉ ବାକି କ'ଣ ରହିଲା?

୨୯- ସାରା ସଂସାର ସେହି ନଟବରଙ୍କ କ୍ରୀଡାସ୍ଥଳ ଅଟେ। ପ୍ରଭୁ ବଡ ନିପୁଣତାର ସହିତ ନାଟ୍ୟ କରୁଛନ୍ତି। ତାଙ୍କ ପରି ଅନ୍ୟ ଖେଳାଳି କେହି ନାହିଁ। ଏହା ଯାହା କିଛି ହେଉଛି, ସବୁ ତାଙ୍କରି ଖେଳ। ତାଙ୍କ ବ୍ୟତୀତ କିଏ ଏପରି ଅଦ୍‌ଭୁତ ଖେଳ କରି ପାରିବ ନାହିଁ। ଏହିପ୍ରକାରେ ସଂସାରର ସମସ୍ତ କ୍ରିୟା ସେହି ଭଗବାନ୍‌ଙ୍କର ଲୀଳା ବୁଝି ଶରଣାଗତ ଭକ୍ତ ପ୍ରତିକ୍ଷଣରେ ପ୍ରସନ୍ନ ହୁଏ ଏବଂ ପଦେ ପଦେ ପ୍ରଭୁଙ୍କ ଦୟା ଦର୍ଶନ କରେ।

୩୦- ଶରଣାଗତ ଭକ୍ତ ସ୍ୱୟଂ ଉଦ୍ଧାରରୂପ ଅଟେ ଏବଂ ଜଗତର ଉଦ୍ଧାର ମଧ୍ୟ କରିପାରେ। ଏପରି ମହାପୁରୁଷଙ୍କ ଦର୍ଶନ, ସ୍ପର୍ଶ, ଭାଷଣ ଏବଂ ଚିନ୍ତନରେ ମନୁଷ୍ୟ ପବିତ୍ର ହୋଇଯାଏ। ସେ ଯେଉଁଆଡ଼େ ଯାଆନ୍ତି, ସେଠାକାର ବାତାବରଣ ପବିତ୍ର ହୋଇଯାଏ। ପୃଥିବୀ ପବିତ୍ର ହୋଇ ତୀର୍ଥ ହୋଇଯାଏ। ଏପରି ପୁରୁଷ ସଂସାରରେ ଜନ୍ମ ନେବା ସାର୍ଥକ ଏବଂ ଧନ୍ୟ।

୩୧- ଅଭିନ୍ନଦର୍ଶୀ ପରମାତ୍ମପରାୟଣ ତଦ୍ରୂପ ଭକ୍ତମାନଙ୍କଠାରେ କେହି ତ ସ୍ୱାମୀ ଶୁକଦେବଙ୍କ ପରି ଲୋକମାନଙ୍କ ଉଦ୍ଧାର ପାଇଁ ଉଦାସୀନ ପରି ବିଚରଣ କରନ୍ତି, କେହି ଅର୍ଜୁନଙ୍କ ପରି ଭଗବଦାଜ୍ଞାନୁସାରେ ଆଚରଣ କରି କର୍ତ୍ତବ୍ୟ କର୍ମ ପାଳନରେ ଲିପ୍ତ ରହନ୍ତି, କେହି ପ୍ରାତଃସ୍ମରଣୀୟା ଭକ୍ତିମତୀ ଗୋପୀମାନଙ୍କ ପରି ଅଦ୍‌ଭୁତ ପ୍ରେମଲୀଳାରେ ମତ୍ତ ରହନ୍ତି ଏବଂ କେହି ଜଡ଼ଭରତ ପରି ଜଡ଼ ଏବଂ ଉନ୍ମତ୍ତବତ୍ ଚେଷ୍ଟା କରୁଥାଆନ୍ତି।

୩୨- ଯେପରି କେହି ପ୍ରେମୀ ସଜ୍ଜନ ନିଜର କୌଣସି ନ୍ୟାୟକାରୀ ସୁହୃଦ୍

ସଜ୍ଜନଙ୍କଦ୍ୱାରା କରାଯାଇଥିବା ନ୍ୟାୟକୁ ନିଜର ଇଚ୍ଛାର ପ୍ରତିକୂଳ ନିଷ୍ପତ୍ତି ହେଲେ ମଧ୍ୟ ସେହି ସଜ୍ଜନଙ୍କ ନ୍ୟାୟପରାୟଣତା, ବିବେକବୁଦ୍ଧି, ବିଗ୍ରହଶୀଳତା, ସୁହୃଦତା, ପକ୍ଷପାତହୀନତା ଏବଂ ପ୍ରେମ ଉପରେ ବିଶ୍ୱାସ ରଖି ହର୍ଷର ସହିତ ସ୍ୱୀକାର କରି ନିଅନ୍ତି, ଏହି ପ୍ରକାରେ ଶରଣାଗତ ଭକ୍ତ ମଧ୍ୟ ଭଗବାନ୍‌ଙ୍କର ଅତି କଠିନ ବିଧାନକୁ ସହର୍ଷ ସାଦର ସ୍ୱୀକାର କରେ, କାରଣ ସେ ଜାଣେ, ମୋର ସୁହୃଦ୍ ଅକାରଣ କରୁଣାଶୀଳ ଭଗବାନ୍ ଯାହା କିଛି ବିଧାନ କରନ୍ତି, ସେଥିରେ ତାଙ୍କର ଦୟା, ପ୍ରେମ, ନ୍ୟାୟ ଓ ମୋର ମଙ୍ଗଳକାମନା ପୂର୍ଣ୍ଣ ହୋଇ ରହିଥାଏ । ସେ ଭଗବାନ୍‌ଙ୍କର କୌଣସି ବିଧାନ ଉପରେ କେବେ ଭୁଲରେ ମଧ୍ୟ ମନ ଊଣା କରେ ନାହିଁ ।

୩୩- ଯାଦୁକରର କୌଣସି ଚେଷ୍ଟା ତା' ଆଦେଶରେ ଖେଳ ଦେଖାଉଥିବା ବ୍ୟକ୍ତିକୁ ନିଜ ମନର ପ୍ରତିକୂଳ ବା ଦୁଃଖଦାୟକ ଜଣା ପଡେ ନାହିଁ । ସେ ନିଜର ସ୍ୱାମୀର ଅଧୀନ ହୋଇ ବଡ ଆନନ୍ଦର ସହିତ ତା'ର ପ୍ରତ୍ୟେକ କ୍ରିୟାକୁ ସ୍ୱୀକାର କରେ । ଏହିପରି ଭକ୍ତ ମଧ୍ୟ ଭଗବାନ୍‌ଙ୍କ ପ୍ରତ୍ୟେକ ଲୀଳାରେ ପ୍ରସନ୍ନ ରହେ, ସେ ଜାଣେ ଯେ ସବୁ ମୋର ପ୍ରଭୁଙ୍କର ମାୟା । ସେହି ଅଦ୍‌ଭୁତ ଖେଳାଳି ନାନାପ୍ରକାର ଖେଳ କରନ୍ତି ମୋ ଉପରେ ତ ତାଙ୍କର ଅପାର ଦୟା ରହିଛି ଯେ ସେ ନିଜର ଲୀଳାରେ ମୋତେ ସାଙ୍ଗରେ ରଖିଛନ୍ତି—ଏହା ମୋର ବଡ଼ ସୌଭାଗ୍ୟ ଯେ ମୁଁ ଲୀଳାମୟଙ୍କର ଲୀଳାର ସାଧନ ହୋଇ ପାରିଛି, ଏହା ବୁଝି ସେ ତାଙ୍କର ପ୍ରତ୍ୟେକ ଲୀଳାରେ, ତାଙ୍କର ପ୍ରତ୍ୟେକ ଖେଳରେ, ତାଙ୍କରି ଚାତୁରୀ ଏବଂ ତାହା ପଛରେ ତାଙ୍କର ଦିବ୍ୟ ଦର୍ଶନ କରି ପ୍ରତି ପଦରେ ପ୍ରସନ୍ନ ହୁଏ ।

୩୪- ଆନନ୍ଦରେ ମଗ୍ନ ହୋଇଥିବା ସେହି ଭଗବାନ୍‌ଙ୍କର ଶରଣାଗତ ଭକ୍ତ ଲୀଳାମୟ ଭଗବାନ୍‌ଙ୍କର ଆନନ୍ଦମୟୀ ଲୀଳାର ହିଁ ଅନୁକରଣ କରେ । ଅତଏବ ତାହାର କର୍ମ ମଧ୍ୟ ଲୀଳାମାତ୍ର ଅଟେ ।

୩୫- ପରମାତ୍ମାଙ୍କ ଶରଣର ତତ୍ତ୍ୱ ଜାଣି ଭକ୍ତ ଭଗବାନ୍‌ଙ୍କର ତଦ୍ରୂପତାକୁ ପ୍ରାପ୍ତ ହୋଇଯାଏ ।

୩୬- ସମ୍ପୂର୍ଣ୍ଣ କର୍ମ ଭଗବାନ୍‌ଙ୍କୁ ଅର୍ପଣ କରି ପ୍ରତିକ୍ଷଣ ତାଙ୍କୁ ସ୍ମରଣ ରଖିବା ଏବଂ କ୍ଷଣକ ବିସ୍ମୃତିରେ ମଧ୍ୟ ମଣିହୀନ ସର୍ପ ବା ଜଳରୁ ବାହାର କରାଯାଇଥିବା ମାଛ ପରି ପରମ ବ୍ୟାକୁଳ ହୋଇ ଛଟପଟ ହେବା ଶରଣାଗତ ଭକ୍ତର ସ୍ୱଭାବ ହୋଇଯାଏ ।

୩୭- ଶରଣାଗତ ସାଧକର ଯଦି କେବେ କୌଣସି ଭୟ ଥାଏ, ତେବେ

ଏହି ଭୟ ରହେ ଯେ କେବେ ତାହାର ଚିତ୍ତରୁ ପ୍ରିୟତମ ପରମାତ୍ମାଙ୍କର ବିସ୍ମୃତି ନ ହେଉ। ବାସ୍ତବରେ ସେ କେବେ ପରମାତ୍ମାଙ୍କୁ ଭୁଲି ପାରେ ନାହିଁ।

୩୮- ଶରଣାଗତ ସାଧକ କଥା କ'ଣ କହିବା ? ଯିଏ ଯଥାର୍ଥ ରୂପରେ ଈଶ୍ୱରଙ୍କ ଅସ୍ତିତ୍ୱ ମାନି ନିଏ, ତାହାର ମଧ୍ୟ ଭୟ ଓ ପାପ ରହେ ନାହିଁ।

୩୯- ସତୀଶିରୋମଣି ପତିବ୍ରତା ସ୍ତ୍ରୀ ନିଜର ପରମପ୍ରିୟ ପତିଙ୍କର ଇଙ୍ଗିତକୁ ଅପେକ୍ଷା କରି ସଦାସର୍ବଦା ପତିଙ୍କର ଅନୁକୂଳ ହୋଇ ଛାୟା ପରି ଚଳେ, ସେହି ପ୍ରକାରେ ଈଶ୍ୱରପ୍ରେମୀ ଶରଣାଗତ ଭକ୍ତ ଭଗବଦିଚ୍ଛାର ଅନୁସରଣ କରି ସବୁ କିଛି ତାଙ୍କରି ବୋଲି ଜାଣି ତାଙ୍କରି ପାଇଁ କାମ କରେ।

୪୦- ଶରଣାଗତ ଭକ୍ତ ଏହି ତତ୍ତ୍ୱକୁ ଜାଣେ ଯେ ଦୈବଯୋଗରୁ ଯାହାକିଛି ଆସି ପ୍ରାପ୍ତ ହୁଏ, ତାହା ଈଶ୍ୱରଙ୍କର ନ୍ୟାୟସଙ୍ଗତ ବିଧାନ ଏବଂ ତାଙ୍କରି ଦୟାପୂର୍ଣ୍ଣ ଆଜ୍ଞାରେ ହୁଏ। ଏହାକୁ ସେ ପରମ ସୁହୃତ୍ ପ୍ରଭୁଙ୍କଦ୍ୱାରା ପ୍ରେରିତ ପୁରସ୍କାର ବୁଝି ଆନନ୍ଦରେ ମୁଣ୍ଡ ପାତି ଗ୍ରହଣ କରେ।

୪୧- ଶରଣାଗତ ଭକ୍ତର ଯାହା କିଛି ହୁଏ ସେ ସେଥିରେ ସନ୍ତୁଷ୍ଟ ରହେ। ପ୍ରାରବ୍ଧବଶତଃ ଅନିଚ୍ଛା ବା ପରେଚ୍ଛାରେ ଯାହା କିଛି ଲାଭ-ହାନି, ସୁଖ-ଦୁଃଖ ପ୍ରାପ୍ତି ହୁଏ, ସେ ତାହାକୁ ପରମାତ୍ମାଙ୍କ ଦୟାପୂର୍ଣ୍ଣ ବିଧାନ ବୁଝି ସର୍ବଦା ସମାନଭାବରେ ସନ୍ତୁଷ୍ଟ, ନିର୍ବିକାର ଓ ଶାନ୍ତ ରହେ।

୪୨- ଶରଣାଗତିର ରହସ୍ୟକୁ ବୁଝୁଥିବା ଭକ୍ତ ନିଜ ଉଦ୍ଧାର ପାଇଁ ଚିନ୍ତା କରିବା ତ ଦୂରର କଥା, ସେ ଏହି ପ୍ରସଙ୍ଗ ସ୍ମୃତିରେ ଆସିବାକୁ ମଧ୍ୟ ପସନ୍ଦ କରେ ନାହିଁ। ଯଦି ଭଗବାନ୍ ସ୍ୱୟଂ କେବେ ତା'କୁ ଉଦ୍ଧାରର କଥା କହନ୍ତି, ତେବେ ସେ ଶରଣାଗତିରେ ତ୍ରୁଟି ମନେକରି ଲଜ୍ଜିତ ଓ ସଙ୍କୁଚିତ ହୋଇ ନିଜକୁ ଧିକ୍କାର କରେ। ସେ ବୁଝେ ଯେ ଯଦି ମୋର ମନରେ କେବେ ମୁକ୍ତିର ଇଚ୍ଛା ଛପି ରହି ନ ଥାନ୍ତା, ତେବେ ଆଜି ଏହି ଅପ୍ରିୟ ପ୍ରସଙ୍ଗ ପାଇଁ ଅବସର କେଉଁଠୁ ଆସନ୍ତା?

୪୩- ଶରଣାଗତ ସାଧକ ପ୍ରତ୍ୟେକ ଦୁଃଖ-ସୁଖରେ ତାଙ୍କରି ଦୟାପୂର୍ଣ୍ଣ ବିଧାନ ସ୍ୱୀକାର କରି ପ୍ରସନ୍ନ ରହେ।

୪୪- ଭଗବାନ୍‌ଙ୍କ ପ୍ରିୟ ପ୍ରେମୀ ଶରଣାଗତ ଭକ୍ତ ମହାନ୍ ଦୁଃଖରୂପ ଫଳକୁ ବଡ ଆନନ୍ଦର ସହିତ ଭୋଗ କରି, ପଦେ-ପଦେ ତାଙ୍କର ଦୟାର ସ୍ମରଣ କରି ପରମ ପ୍ରସନ୍ନ ରହେ।

୪୫- ଶରଣାଗତ ଭକ୍ତର ଉଦ୍ଧାର ହେବା ନ ହେବାର ମାନେ ଆଉ

କ'ଣ ଅଛି? ସେ ତ ନିଜେ ନିଜକୁ ମନ-ବୁଦ୍ଧି ସହିତ ତାଙ୍କ ଚରଣରେ ସମର୍ପିତ କରି ସର୍ବଥା ନିଶ୍ଚିନ୍ତ ହୋଇଯାଏ। ତାକୁ ଉଦ୍ଧାରର ଚିନ୍ତା ଆଉ କାହିଁକି ଲାଗିବ?

୪୬- ଶରଣ ହୋଇଯିବା ପରେ ଯଦି ଆମ ମନରେ ନିଜ ଉଦ୍ଧାର ଚିନ୍ତା ହୁଏ ଏବଂ ଆମେ ନିଜକୁ ଶରଣାଗତ ମଧ୍ୟ ବୁଝନ୍ତି, ତେବେ ତାହା ଆମର ନୀଚତା। ଆମେ ଶରଣାଗତିର ରହସ୍ୟ ବୁଝି ନାହୁଁ।

୪୭- ଶରଣ ଗ୍ରହଣ କରିବା ପରେ ଯଦି ଶରଣାଗତକୁ ଚିନ୍ତା କରିବାକୁ ପଡ଼େ, ତେବେ ତାହା ଶରଣ କିପରି ହେଲା? ଯିଏ ଯାହାର ଶରଣ ହୁଏ, ତାହାର ଚିନ୍ତା ତାହାର ସ୍ୱାମୀଙ୍କର ରହେ।

୪୮- ନିଜର ଉଦ୍ଧାର ଚିନ୍ତା ତ ଶରଣାଗତ ସାଧକର ଚିତ୍ତରୁ ଚ୍ଛଲିଯାଏ ।

୪୯- ଯିଏ ଚିନ୍ତା କରେ, ନିଜକୁ ବନ୍ଧା ହୋଇଛି ବୋଲି ମନେକରେ, ବନ୍ଧନରୁ ମୁକ୍ତି ଚ୍ଛହେଁ, ସେ ବାସ୍ତବରେ ପରମାତ୍ମାଙ୍କ ତତ୍ତ୍ୱକୁ ଜାଣି ତାଙ୍କର ଶରଣ ହୋଇ ନାହିଁ।

୫୦- ଅର୍ପଣ ଠିକ୍‌ଭାବେ ହୋଇଯିବା ପରେ ସାଧକ ବନ୍ଧନମୁକ୍ତ ହୋଇଯାଏ, ତାହାର କୌଣସି ପ୍ରକାରର କିଛି ଚିନ୍ତା ରହେ ନାହିଁ।

୫୧- ମାୟା ବନ୍ଧନରୁ ମୁକ୍ତ ହେବା ହିଁ ସବୁଠାରୁ ବଡ ପୁରସ୍କାର। ଯାହା କିଛି ଅଛି, ସବୁ ଭଗବାନଙ୍କର। ଏହି ବୁଦ୍ଧି ଆସିଯିବା ପରେ ମମତା ଚ୍ଛଲିଯାଏ । ଏବଂ ଯାହା କିଛି ରହେ, ସେ ସବୁ ପରମାତ୍ମା, ଏହି ବୁଦ୍ଧିରେ ଅହଂକାର ନାଶ ହୋଇଯାଏ। ଅର୍ଥାତ୍ ଏକ ପରମାତ୍ମାଙ୍କୁ ଜଗତର ଉପାଦାନ କାରଣ ଓ ନିମିତ୍ତ କାରଣ ବୁଝି ନେଲେ ସେଥିରେ ମମତା ଓ ଅହଙ୍କାର ନଷ୍ଟ ହୋଇଯାଏ।

୫୨- "ମୁଁ-ମୋର" ହିଁ ବନ୍ଧନ। ଭଗବାନ୍‌ଙ୍କର ଶରଣାଗତ ଭକ୍ତ "ମୁଁ-ମୋର" ବନ୍ଧନରୁ ମୁକ୍ତ ହୋଇ ପରମାତ୍ମାଙ୍କୁ କହେ କେବଳ ତୁମେ ଅଛ, ଆଉ ସବୁ କିଛି ତୁମର।

୫୩- ଯିଏ ନିଜେ-ନିଜକୁ ଭଗବାନ୍‌ଙ୍କ ହାତରେ ଅର୍ପଣ କରିଦିଏ, ତାହାଦ୍ୱାରା ଶାସ୍ତ୍ର ନିଷିଦ୍ଧ କର୍ମ ହୋଇପାରେ ନାହିଁ। ଯଦି ଶାସ୍ତ୍ର ବିରୁଦ୍ଧ କିଛି କାମ ହୋଇଯାଏ, ତେବେ ବୁଝିବା ଉଚିତ ମୋର ଲଗାମ ଭଗବାନ୍‌ଙ୍କ ହାତରେ ନାହିଁ, କେବଳ କାମର ହାତରେ।

୫୪- ଯଦି ସଦ୍‌ଗୁଣର ବୃଦ୍ଧି ହେବା ନ ଦେଖିବ, ତେବେ ବୁଝିବ ଯେ ଶରଣରେ ତ୍ରୁଟି ରହିଛି । ଯେପରି ସୂର୍ଯ୍ୟଙ୍କ ଶରଣ ନେଲେ ଅନ୍ଧକାର ରହେ

ନାହିଁ, ସେପରି ଭଗବାନ୍‌ଙ୍କ ଶରଣ ନେଲେ ହୃଦୟରେ କିଛି ଦୋଷ ରହେ ନାହିଁ।

୫୫- ଯେଉଁ ଶରଣାଗତ ଭକ୍ତ ନିଜ ଜୀବନକୁ ପରମାତ୍ମାଙ୍କ ହାତରେ ସମର୍ପି ଦେଇ ତାଙ୍କରି ଇଙ୍ଗିତରେ ନାଚେ, ତାହାଦ୍ୱାରା ପାପ କିପରି ହୋଇ ପାରିବ?

୫୬- ଭଗବାନ୍‌ଙ୍କର ଶରଣାଗତ ଅନନ୍ୟ ଭକ୍ତ ସବୁଆଡ଼େ, ସବୁଥିରେ, ସର୍ବଦା ଭଗବାନ୍‌ଙ୍କୁ ଦେଖେ, ସେ ଲୁଚି କରି ପାପ ମଧ୍ୟ କିପରି କରିବ?

୫୭- ଶରଣାଗତି ମାର୍ଗରେ ଗ୍ଲୁଥିବା ସାଧକର ହୃଦୟରେ ଦୁର୍ଗୁଣ, ଦୁରାଗ୍ରର ସ୍ୱତଃ ନଷ୍ଟ ହୋଇଯାଏ ତଥା ସଦାଗ୍ରର ଓ ସଦ୍‌ଗୁଣର ବିକାଶ ମଧ୍ୟ ଭଗବାନ୍‌ଙ୍କ ଦୟାରୁ ଆପେ-ଆପେ ହୁଏ।

୫୮- ଭକ୍ତ ବିଗ୍ରର କରେ ଯେ ମୋଠାରେ ଯେଉଁ 'ମୁଁ' ଥିଲା ସେହି 'ମୁଁ' ତ ପ୍ରଭୁଙ୍କ ଶରଣ ହୋଇଗଲା। ଏବେ ମୁଁ ପ୍ରଭୁଙ୍କର କାଠ ପିତୁଳା।

୫୯- କାଠ କଣ୍ଢେଇକୁ ସୂତ୍ରଧର ଯେପରି ନଗ୍ରଏ, ସେ ସେପରି ନାଚେ । ନିଜ ଆଡୁ କିଛି ଚେଷ୍ଟା କରେ ନାହିଁ। ସେପରି ଭକ୍ତ ନିଜ ଅହଙ୍କାରରେ କିଛି କରେ ନାହିଁ। ତାହାଦ୍ୱାରା ଯାହା କିଛି ହୁଏ, ସବୁ ଭଗବାନ୍ କରନ୍ତି। ଏଣୁ ତା'ର ପ୍ରତ୍ୟେକ କ୍ରିୟା ପରମ ପବିତ୍ର ଓ ଆଦର୍ଶ। ସେଥିରେ ଭଗବାନ୍‌ଙ୍କ ରୁଚିର ପ୍ରତିକୂଳ ବା ଆଜ୍ଞାର ପ୍ରତିକୂଳ କିଛି ହୁଏ ନାହିଁ।

୬୦- ସ୍ୱାମୀଙ୍କର ପୂର୍ଣ୍ଣଭାବରେ ଶରଣ ହେବା ପରେ ସ୍ୱାମୀଙ୍କ ଇଙ୍ଗିତରୁ ହିଁ ତାଙ୍କ ହୃଦୟର ଭାବ ବୁଝି ହୋଇଯାଏ। ତେଣିକି ଶରଣାଗତ ଭକ୍ତ ପ୍ରେମପୂର୍ବକ ଆନନ୍ଦର ସହିତ ତାଙ୍କ ଇଙ୍ଗିତରେ ହିଁ କାମ କରିବାକୁ ଲାଗେ।

୬୧- ଦୈବଯୋଗରୁ ନିଜ ମନର ବିପରୀତ ଅତି ବଡ଼ ସଙ୍କଟ ପଡ଼ିଲେ ମଧ୍ୟ ଭକ୍ତ ସେହି ସଙ୍କଟକୁ ଦୟାମୟ ସ୍ୱାମୀଙ୍କର ଦୟାପୂର୍ଣ୍ଣ ବିଧାନର ପୁରସ୍କାର ମନେକରି ଅତ୍ୟନ୍ତ ପ୍ରସନ୍ନତାପୂର୍ବକ ସ୍ୱୀକାର କରେ।

୬୨- ଯେଉଁ ପୁରୁଷ ସବୁ ପ୍ରକାରେ ନିଜେ-ନିଜକୁ ଭଗବାନ୍‌ଙ୍କୁ ଅର୍ପଣ କରି ଦିଏ, ତାହାର ସମସ୍ତ କ୍ରିୟା ପତିବ୍ରତା ସ୍ତ୍ରୀ ପରି ସ୍ୱାମୀଙ୍କ ଅନୁକୂଳ ହେବାକୁ ଲାଗେ।

୬୩- ଯେପରି ଶେଷନାଗ ନିଜର ଶରୀରରେ ଶଯ୍ୟା ତିଆରି କରି ନିରନ୍ତର ତାହାକୁ ଭଗବାନ୍‌ଙ୍କ ସେବାରେ ଲଗାଇ ରଖେ, ଯେପରି ରାଜା ଶିବି

ନିଜ ଶରୀର କପୋତ ରକ୍ଷାପାଇଁ ଦେଇଥିଲେ, ଯେପରି ମୟୂରଧ୍ୱଜ ରାଜାଙ୍କ ପୁତ୍ର ନିଜ ଶରୀରକୁ ପ୍ରଭୁଙ୍କ କାମରେ ଅର୍ପଣ କରି ଦେଲା, ସେପରି ପ୍ରଭୁଙ୍କ ଇଚ୍ଛା, ଆଜ୍ଞା-ପ୍ରେରଣା ଏବଂ ସଙ୍କେତ ଅନୁସାରେ ଲୋକ-ସେବା ରୂପରେ ବା ଅନ୍ୟ କିଛି ରୂପରେ ଶରୀରକୁ ପ୍ରଭୁଙ୍କ କାର୍ଯ୍ୟରେ ଲଗାଇ ଦେବା ହିଁ ଶରୀରକୁ ପ୍ରଭୁଙ୍କୁ ଅର୍ପଣ କରିବା ।

୬୪- ସବୁ ପ୍ରକାରରେ ଭଗବାନ୍‌ଙ୍କ ଶରଣ ହେବାପାଇଁ ବୁଦ୍ଧି, ମନ, ଇନ୍ଦ୍ରିୟ ଓ ଶରୀର—ଏହି ସବୁକୁ ସମ୍ପୂର୍ଣ୍ଣରୂପେ ଭଗବାନ୍‌ଙ୍କୁ ଅର୍ପଣ କରିଦେବା ଆବଶ୍ୟକ ।

## ବୁଦ୍ଧିର ଅର୍ପଣ

୬୫- ଭଗବାନ୍ 'ଅଛନ୍ତି' ଏହି କଥା ବୁଦ୍ଧିଦ୍ୱାରା ପ୍ରତ୍ୟକ୍ଷଭାବରେ ନିତ୍ୟନିରନ୍ତର ନିଶ୍ଚୟ ରହିବା, ସଂଶୟ, ଭ୍ରମ ଓ ଅଭିମାନରୁ ସମ୍ପୂର୍ଣ୍ଣତଃ ରହିତ ହୋଇ ଭଗବାନ୍‌ଙ୍କୁ ପରମ ଶ୍ରଦ୍ଧା କରିବା, ବଡ଼-ରୁ-ବଡ଼ ବିପତ୍ତି ପଡ଼ିଲେ ମଧ୍ୟ ଭଗବାନ୍‌ଙ୍କ ଆଜ୍ଞାରୁ ଟିକିଏ ହେଲେ ବିଚ୍ୟୁତ ନ ହେବା ଅର୍ଥାତ୍ ପ୍ରତିକୂଳ ଭାବ ନ ହେବା ତଥା ପବିତ୍ର ହୋଇ ବୁଦ୍ଧିଦ୍ୱାରା ଗୁଣ ଓ ପ୍ରଭାବ ସହିତ ଭଗବାନ୍‌ଙ୍କ ସ୍ୱରୂପ ଏବଂ ତତ୍ତ୍ୱକୁ ଜାଣି ସେହି ତତ୍ତ୍ୱ ଓ ସ୍ୱରୂପରେ ବୁଦ୍ଧି ଅବିଚଳିତ ଭାବରେ ନିତ୍ୟନିରନ୍ତର ସ୍ଥିର ରହିବା । ଏହା ହିଁ ବୁଦ୍ଧିକୁ ଭଗବାନ୍‌ଙ୍କଠାରେ ଅର୍ପଣ କରିବା ଅଟେ ।

## ମନର ଅର୍ପଣ

୬୬- ପ୍ରଭୁଙ୍କ ଅନୁକୂଳତାରେ ଅନୁକୂଳତା, ତାଙ୍କ ଇଚ୍ଛାନୁସାରେ ଇଚ୍ଛା ଏବଂ ତାଙ୍କ ପ୍ରସନ୍ନତାରେ ହିଁ ପ୍ରସନ୍ନ ହେବା, ପ୍ରଭୁଙ୍କ ସାକ୍ଷାତ ପାଇଁ ଉତ୍କଟ ଇଚ୍ଛା, କେବଳ ପ୍ରଭୁଙ୍କ ନାମ, ରୂପ, ଗୁଣ, ପ୍ରଭାବ, ରହସ୍ୟ ଓ ଲୀଳା ଆଦିକୁ ମନରେ ନିରନ୍ତର ଚିନ୍ତନ କରିବା, ମନ ପ୍ରଭୁଙ୍କଠାରେ ରହିବା ଏବଂ ପ୍ରଭୁ ମନରେ ବାସ କରିବେ, ମନ ପ୍ରଭୁଙ୍କଠାରେ ରମଣ କରିବ ଏବଂ ପ୍ରଭୁ ମନରେ ରମଣ କରିବେ । ଏହି ରମଣ ଅତ୍ୟନ୍ତ ପ୍ରେମପୂର୍ଣ୍ଣ ଏବଂ ସେହି ପ୍ରେମ ଏପରି ହେବ ଯେପରି କ୍ଷଣକପାଇଁ ପ୍ରଭୁଙ୍କର ବିସ୍ମରଣ ଜଳ ବିହୁନେ ମାଛର ବ୍ୟାକୁଳତାଠାରୁ ଆହୁରି ବଢ଼ିଯାଇ ମନରେ ବ୍ୟାକୁଳତା ଉତ୍ପନ୍ନ କରିଦେବ । ଏହା ହିଁ ଭଗବାନ୍‌ଙ୍କୁ ମନ ଅର୍ପଣ କରିବା ଅଟେ ।

## ଇନ୍ଦ୍ରିୟମାନଙ୍କ ଅର୍ପଣ

୬୭- କାଠ କଣ୍ଢେଇ ଯେପରି ସୂତ୍ରଧାରର ଇଙ୍ଗିତରେ ହାତର କୌଶଳରେ ନାଚେ, ତାହାର ସକଳ କ୍ରିୟା ସ୍ୱାଭାବିକ ସୂତ୍ରଧାରର ଇଚ୍ଛାର ଅନୁକୂଳ ହୁଏ, ଏହିପରି ନିଜର ସମସ୍ତ ଇନ୍ଦ୍ରିୟ ଭଗବାନ୍‌ଙ୍କ ହାତରେ ସମର୍ପଣ କରି ଦେଇ ତାଙ୍କ ଇଚ୍ଛା, ଆଜ୍ଞା, ପ୍ରେରଣା ଓ ସଙ୍କେତ ଅନୁସାରେ କାର୍ଯ୍ୟ କରିବା ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯାହା କିଛି କ୍ରିୟା ହୁଏ, ତାହା ପ୍ରଭୁ କରାଉଛନ୍ତି ବୋଲି ମନେ କରିବା—ଏହା ହିଁ ନିଜର ଇନ୍ଦ୍ରିୟମାନଙ୍କୁ ପ୍ରଭୁଙ୍କୁ ଅର୍ପଣ କରିଦେବା ଅଟେ ।

## ଶରୀରର ଅର୍ପଣ

୬୮- ପ୍ରଭୁଙ୍କର ଚରଣରେ ପ୍ରଣାମ କରିବା, ଏହି ଶରୀର ପ୍ରଭୁଙ୍କର ସେବା ଏବଂ ତାଙ୍କ କାର୍ଯ୍ୟପାଇଁ ବୋଲି ମନେକରି ପ୍ରଭୁଙ୍କ ସେବାରେ ଏବଂ ତାଙ୍କ କାର୍ଯ୍ୟରେ ଶରୀରକୁ ଲଗାଇ ଦେବା । ଖାଇବା-ପିଇବା, ଉଠିବା-ବସିବା, ଶୋଇବା-ଚେଇଁବା ସବୁ କିଛି ପ୍ରଭୁଙ୍କ କାର୍ଯ୍ୟପାଇଁ ହେବା ହିଁ ଶରୀର ଅର୍ପଣ ଅଟେ ।

୬୯- ନିଜର ଲଗାମକୁ ଭଗବାନ୍‌ଙ୍କ ହାତରେ ସମର୍ପି ଦେବା ଉଚିତ, ଯେଉଁ ପ୍ରକାରେ ଭଗବାନ୍ କରାଇବେ, ସେପରି କାଠ କଣ୍ଢେଇ ପରି କର୍ମ କରିବ ।

୭୦- ଭଗବାନ୍‌ଙ୍କ ଶରଣାର୍ଥୀକୁ ଏପରି ସ୍ୱୀକାର କରିବା ଉଚିତ ଯେ ଭଗବାନ୍ ଯାହା କିଛି କରନ୍ତି, ସବୁ ମଙ୍ଗଳପାଇଁ କରନ୍ତି । ତାଙ୍କର ପ୍ରତ୍ୟେକ ବିଧାନ ଦୟା ଓ ନ୍ୟାୟପୂର୍ଣ୍ଣ ମାନି ଆନନ୍ଦିତ ହେବା ଉଚିତ ।

୭୧- ପିଲା ଯେପରି ସମସ୍ତ କ୍ରିୟାକୁ ମାତାଙ୍କୁ ସମର୍ପି ଦେଇ ମାତୃପରାୟଣ ହୋଇଯାଏ, ଏହିପ୍ରକାର ଆମେ ମଧ୍ୟ ନିଜେ-ନିଜକୁ ଏବଂ ନିଜର ସମସ୍ତ କ୍ରିୟାକୁ ପରମାତ୍ମାଙ୍କ ହାତରେ ସମର୍ପି ଦେଇ ତାଙ୍କରି ଚରଣରେ ପଡିଯିବା ଉଚିତ ।

୭୨- ଯେଉଁ ପୁରୁଷ ପିଲାଙ୍କ ପରି ଭଗବାନ୍‌ଙ୍କ ଉପରେ ଭରସା କରେ, ଭଗବାନ୍ ତାହାର ଉନ୍ନତି ଓ ରକ୍ଷାର ବ୍ୟବସ୍ଥା ସ୍ୱୟଂ କରନ୍ତି, ତାହାକୁ କେବଳ ନିମିତ୍ତ କରାନ୍ତି ।

୭୩- ସର୍ବଶକ୍ତିମାନ୍, ସର୍ବାନ୍ତର୍ଯାମୀ, ପରମଦୟାଳୁ, ସର୍ବଜ୍ଞ ପ୍ରଭୁ ନିଜର ଆଶ୍ରିତକୁ କେବେ ତଳେ ପଡ଼ିବାକୁ ଦିଅନ୍ତି ନାହିଁ ।

୭୪- ପିଲା ପରି ପରମ ଶ୍ରଦ୍ଧା ଓ ବିଶ୍ୱାସର ସହିତ ଯେ ନିଜେ-ନିଜକୁ

ପରମାତ୍ମାଙ୍କ କୋଳରେ ସମର୍ପି ଦିଏ, ସେହି ପୁରୁଷ ପରମାତ୍ମାଙ୍କ କୃପାର ଇଚ୍ଛୁକ ଓ ପାତ୍ର ହୋଇଯାଏ ଏବଂ ତାହାର ଫଳସ୍ୱରୂପ ସେ ପରମାତ୍ମାଙ୍କ ଦୟାରୁ ପରମାତ୍ମାଙ୍କୁ ପ୍ରାପ୍ତ କରେ।

୭୫- ଯେଉଁ ଲୋକ ନିଜର ପୁରୁଷାର୍ଥଦ୍ୱାରା ଭଗବାନ୍‌ଙ୍କୁ ପାଇବାରେ ନିଜକୁ ସର୍ବଥା ଅସମର୍ଥ ମଣୁଥାଏ, ଯିଏ ନିରନ୍ତର କେବଳ ତାଙ୍କରି କୃପାର ବାଟ ଖୋଜୁଥାଏ, ତଥା ମାତୃପରାୟଣ ଶିଶୁପରି ତାଙ୍କରି ଉପରେ ସର୍ବଦା ନିର୍ଭର କରେ, ତାହା ସହିତ ମିଳିବାପାଇଁ ଭଗବାନ୍ ସ୍ୱୟଂ ଆତୁର ହୋଇ ଉଠନ୍ତି ଏବଂ ଏପ୍ରକାର ଦୌଡ଼ନ୍ତି, ଯେପରି ନୂଆ ଛୁଆ ଜନ୍ମ କରିଥିବା ଗାଈ ନିଜର ବାଛୁରୀ ପାଖକୁ ଆସିବାକୁ ଦୌଡ଼େ।

୭୬- ଭଗବାନ୍‌ଙ୍କ ଆଶ୍ରୟଦ୍ୱାରା ସ୍ୱତଃ ସଦ୍‌ଗୁଣ ଓ ସଦାଚାର ବୃଦ୍ଧି ହେବାକୁ ଲାଗେ।

୭୭- ସମସ୍ତ ସଦ୍‌ଗୁଣ ଭଗବଚ୍ଚରଣାଗତିଦ୍ୱାରା ପ୍ରାପ୍ତ ହୋଇଯିବା କେଉଁ ବଡ଼ କଥା ଅବା! ଏହି ସବୁ ଗୁଣ ତ ଭଗବାନ୍‌ଙ୍କ ପ୍ରେମୀମାନଙ୍କର ସାନ୍ନିଧ୍ୟରୁ ବି ପ୍ରାପ୍ତ ହୋଇପାରେ।

୭୮- ଶରଣାଗତିର ଦୃଢ଼ତାପାଇଁ ସାଧକ ସର୍ବଦା ଆତ୍ମନିରୀକ୍ଷଣ କରିବା ଉଚିତ। ତାକୁ ସର୍ବଦା ନିଜର ମନକୁ ଦେଖିବାକୁ ହେବ ଯେ ସେଥିରେ ସଦ୍‌ଗୁଣ ଓ ଭଗବାନ୍‌ଙ୍କ ବାସ ହେଉଛି ନା ବିଷୟମାନଙ୍କର। ସେ ଧ୍ୟାନ ରଖିବା ଉଚିତ ଯେ ତାହାର ବାଣୀ ଭଗବଦ୍‌ଗୁଣାନୁବାଦର ରସାନୁଭବ କରୁଛି କି ନାହିଁ । ତାହାର କ୍ରିୟାମାନ ଭଗବାନ୍‌ଙ୍କ ବଦଳରେ ଭୋଗମାନଙ୍କ ଆଡକୁ ଯାଉ ନାହିଁ ତ?

୭୯- ଯେ ନିଜେ-ନିଜକୁ ଭଗବାନ୍‌ଙ୍କୁ ଅର୍ପଣ କରିଦିଏ, ତା'ର ସକଳ ଆଚରଣ ଭଗବତ୍‌କୃପାଦ୍ୱାରା ଭଗବାନ୍‌ଙ୍କର ଅନୁକୂଳ ହୁଏ—ଏହା ହିଁ ଶରଣାଗତିର କଷଟି ପଥର।

୮୦- ଯାହା କିଛି ସଂସାର ବୋଲି ପ୍ରତୀତ ହୁଏ, ତାହା ଭଗବାନ୍‌ଙ୍କର ଲୀଳା। ଭଗବାନ୍ ହିଁ ଲୀଳା କରୁଛନ୍ତି। ତାଙ୍କରି ରୁଚି ଅନୁସାରେ ଲୀଳା ପରି କାମ କରିବା ଉଚିତ।

୮୧- ମାଲିକଙ୍କ ଇଚ୍ଛାରେ ସବୁ କାମ ହୁଏ। ଏଣୁ ମାଲିକ ଯେପରି କରନ୍ତି, ସେଥିରେ ପ୍ରସନ୍ନ ରହିବା ଉଚିତ। ତାହାର ବିପରୀତ ଇଚ୍ଛା କରିବା ଅନୁଚିତ।

୮୨- ନିଜ ମନ ଅନୁସାରେ କାମ କଲେ ଶରଣାଗତିରେ ଦୋଷ ଲାଗେ।

ଏଥିପାଇଁ ନିଜର ଇଚ୍ଛାକୁ ଛାଡି ଦେଇ ଯଦ୍ଦ୍ୱାରା ସ୍ୱାମୀ ପ୍ରସନ୍ନ ହେବେ, ସେପରି କାମ ସ୍ୱାମୀଙ୍କ ପାଇଁ ଲୀଳାମାତ୍ର ମନେ କରି କରିବା ଉଚିତ ।

୮୩- ଆପଣ ନିଜର ସାଧନ ସମୟକୁ ଟିକିଏ ସୁଧାରି ଦେଲେ କଲ୍ୟାଣ ହୋଇ ପାରିବ । ଈଶ୍ୱରଙ୍କ ଶରଣ ନେଲେ କାମ ହୋଇଯାଏ । ବିଗ୍ରହ କରିବାରେ ଆମେ ବ୍ୟର୍ଥରେ ସମୟ ବ୍ୟତୀତ କରୁଁ ।

୮୪- ମହାତ୍ମାମାନଙ୍କ ଶରଣ ନେବା ପରେ ଭଜନ ଧ୍ୟାନ ହେବାରେ କିଛି କଠିନତା ହୁଏ ନାହିଁ ଏବଂ ସ୍ୱଭାବ ମଧ୍ୟ ସ୍ୱତଃ ସୁଧୁରି ଯାଏ । ଚିତ୍ତରେ ଚିନ୍ତା ବା କୌଣସି ପ୍ରକାର ଇଚ୍ଛା ହେଲେ ଶରଣାଗତିରେ ଦୋଷ ହୁଏ ।

୮୫- ଭଗବାନ୍‌ଙ୍କୁ ସବୁ ସମୟରେ ଚିନ୍ତନ କଲେ ଶରଣ ହୋଇଯାଏ ।

୮୬- ସଂସାର ସବୁ ମିଥ୍ୟା—ଏହା ଜାଣି ନିରନ୍ତର ନାରାୟଣଙ୍କ ଶରଣ ନେବା ଉଚିତ ।

୮୭- ସଂସାର ମିଥ୍ୟା । ସବୁ ଭଗବାନ୍‌ଙ୍କ ଲୀଳା ଅଟେ । ତାହାକୁ ସତ୍ ବୋଲି ବୁଝିଲେ ଆସକ୍ତି ଜାତ ହୋଇ ଇଚ୍ଛା ଉତ୍ପନ୍ନ ହେବାରୁ ମନୁଷ୍ୟଠାରେ ବହୁତ ଦୋଷ ଆସିଯାଏ । ତେଣୁ ଭଗବାନ୍‌ଙ୍କ ଶରଣ ନେବା ଉତ୍ତମ ।

୮୮- ନାରାୟଣଙ୍କ ଶରଣ ନେବା ଉଚିତ । ଯାହା କିଛି ହେଉଛି, ସବୁ ତାଙ୍କରି ଆଜ୍ଞାରେ ହେଉଛି ।

୮୯- ମାଲିକ ଯେପରି ଚାହାନ୍ତି, ସେପରି କରନ୍ତୁ । ମୁଁ ନିଶ୍ଚିନ୍ତ । ଏପରି ଭାବନା ହେବା ଉଚିତ ।

୯୦- ଯିଏ ସବୁ ସମୟରେ ଭଗବାନ୍ ନାରାୟଣଙ୍କ ଚିନ୍ତନରେ ଶରଣ ରଖିବ, ଏକ କ୍ଷଣ ମଧ୍ୟ ଛାଡିବ ନାହିଁ ଏବଂ ଭଗବାନ୍‌ଙ୍କ ନାମରୂପ ଚିନ୍ତନ କରି ଦେହତ୍ୟାଗ କରିବ, ସେ ଭଗବାନ୍‌ଙ୍କୁ ପ୍ରାପ୍ତ ହେବ । ସେ ମୃତ୍ୟୁରୂପୀ ସଂସାରସାଗରରେ ବୁଡିଯିବ ନାହିଁ । ତାହାକୁ ମୃତ୍ୟୁ ମାରି ପାରିବ ନାହିଁ ।

୯୧- ଭଗବାନ୍‌ଙ୍କ କାମ କର ଏବଂ ତାଙ୍କ ଭାର ତାଙ୍କରି ଉପରେ ଛାଡି ଦିଅ ।

୯୨- ସବୁକିଛି ମାଲିକଙ୍କର ବୋଲି ବୁଝିବା ଉଚିତ । ସ୍ୱାମୀ ନିଜର ବସ୍ତୁକୁ ଯେପରି ଇଚ୍ଛା କରିବେ, ସେପରି ବ୍ୟବହାର କରି ପାରିବେ । ସବୁ ତାଙ୍କରି ।

୯୩- ଭଗବାନ୍‌ଙ୍କ ଶରଣାଗତ ହେଲେ ତାଙ୍କରି କୃପାରେ ଆପଣଙ୍କ ବଡ଼ ବଡ଼ ସାଧନା କରିବା ପାଇଁ ଶକ୍ତି ଆସିଯିବ । ଏହି କଥାରେ ବିଶ୍ୱାସ ରଖିବା ଉଚିତ ।

୯୪- ଜୀବ ଯେପର୍ଯ୍ୟନ୍ତ ଜାଗ୍ରତ ନ ହୁଏ, ସେପର୍ଯ୍ୟନ୍ତ ମାୟାର ପ୍ରବଳ ଶକ୍ତି ତାକୁ ଦବାଇ ରଖେ। ଯଦି ଜାଗ୍ରତ ହୋଇ ପରମାତ୍ମାଙ୍କ ଶରଣ ନେଇଯାଏ ଏବଂ ତାଙ୍କର ସ୍ୱରୂପକୁ ଜାଣି ପାରେ, ତେବେ ମାୟାଶକ୍ତି କିଛି କରି ପାରେ ନାହିଁ।

୯୫- ଭଗବଦର୍ପଣ-ବୁଦ୍ଧିରେ ମୋହଯୁକ୍ତ କର୍ତ୍ତାପଣ ଅଭିମାନ ରହେ ନାହିଁ, ଅଭିମାନଶୂନ୍ୟ ନିର୍ଦ୍ଦୋଷ କର୍ତ୍ତାପଣମାତ୍ର ରହେ, ତାହା ମଧ୍ୟ ସାଧନ କରିଚ୍ଲିଲେ ଶେଷରେ ସମାପ୍ତ ହୋଇଯାଏ।

୯୬- ଯେପରି ଚ୍ଛକର ସବୁ କାମ କରି ମଧ୍ୟ ଲାଭ-ହାନିକୁ ମାଲିକଙ୍କର ବୋଲି ବୁଝେ, ବେତନ ବ୍ୟତୀତ ଅନ୍ୟ କିଛି ନିଜର ବୋଲି ଭାବେ ନାହିଁ, ଏହି ପ୍ରକାର ସବୁ କିଛି ଭଗବାନ୍‌ଙ୍କର ବୋଲି ବୁଝିବା ଉଚିତ ଏବଂ ଯାହା କିଛି ମୋଟା ଖାଇବାକୁ ମୋଟା ପିନ୍ଧିବାକୁ ମିଳେ, ତାହାକୁ ପ୍ରଭୁଙ୍କ ପ୍ରସାଦରୂପକ ବେତନ ବୋଲି ବୁଝିବାକୁ ହେବ।

୯୭- ନିଜର ଏହି ଶରୀର ପ୍ରଭୁଙ୍କ କୃପାପ୍ରସାଦରୁ ଉତ୍ପନ୍ନ ହୋଇଛି, ତେଣୁ ଏହା ମଧ୍ୟ ମାଲିକଙ୍କର। ଏପରି ବିଚ୍ଛର କରି ସେହି ପ୍ରଭୁଙ୍କ ସତ୍ ସେବକ ହେବା ଉଚିତ। ଏହି ପ୍ରକାର ବୁଝୁଥିବା ଚ୍ଛକର ମାଲିକର ବହୁତ ପ୍ରିୟ ହୁଏ।

୯୮- ମାୟା ତ ଅତି ଦୁସ୍ତର, କିନ୍ତୁ ଭଗବାନ୍‌ଙ୍କ ଶରଣ ନେବା ପରେ ଦୁସ୍ତର ହୋଇ ରହେ ନାହିଁ।

୯୯- ଭବବତ୍‌ପ୍ରାପ୍ତି କେବଳ ଭଗବାନ୍‌ଙ୍କ ଭଜନ, ଧ୍ୟାନର ତୀବ୍ର ଅଭ୍ୟାସ କଲେ ହୋଇ ପାରେ ଏବଂ ସେହି ନାରାୟଣଙ୍କ ଆଶ୍ରୟ ଉପରେ ପୁରୁଷାର୍ଥ କଲେ ସବୁ ସ୍ଥାନରେ ହୋଇପାରେ।

୧୦୦- ଶରଣର ସାଧାରଣ ସ୍ୱରୂପ ଏହା ଅଟେ—

୧. ଶ୍ରୀଭଗବାନ୍‌ଙ୍କର ଅନୁକୂଳ ହେବା ଏବଂ ତାଙ୍କରି ଇଚ୍ଛା ଅନୁସାରେ ଚଳିବା।

୨. ଶ୍ରୀଭଗବାନ୍‌ଙ୍କର ନାମ, ରୂପ ଓ ଗୁଣକୁ ସବୁ ସମୟରେ ସ୍ମରଣ କରିବା।

୩. ସୁଖ ବା ଦୁଃଖ ଯାହା କିଛି ପ୍ରାପ୍ତ ହେଲେ, ସେଥିରେ ଆନନ୍ଦ ଅନୁଭବ କରିବା। ସେଥିରେ ଭଗବାନ୍‌ଙ୍କ ଦୟା ଏବଂ ତାଙ୍କଦ୍ୱାରା କରାଯାଇଥିବା ବିଧାନ ବୋଲି ବୁଝି ପ୍ରସନ୍ନ ରହିବା। ମନକୁ ମଳିନ ନ କରିବା।

୪. ନିଜର କଲ୍ୟାଣପାଇଁ ଭଗବାନ୍‌ଙ୍କ ଉପରେ ନିର୍ଭର କରିବା। କିଛି ଚିନ୍ତା ନ କରିବା। ଭଗବାନ୍‌ଙ୍କ ଉପରେ ପୂରା ବିଶ୍ୱାସ ରଖିବା ଏବଂ ନିଜକୁ ତାଙ୍କ ଚରଣର ଶରଣ ବୋଲି ମନେ କରିବା।

୧୦୧- ନିର୍ଭୟତା, ଧୀରତା, ଗମ୍ଭୀରତା, ସନ୍ତୋଷ, ଶାନ୍ତି ଓ ପ୍ରସନ୍ନତା ଆଦି ଗୁଣ ଶରଣାପନ୍ନ ପୁରୁଷଙ୍କଠାରେ ସ୍ୱତଃ ଆସିଯାଏ।

୧୦୨- ନିଜର ସର୍ବସ୍ୱ ଭଗବାନ୍‌ଙ୍କୁ ଅର୍ପଣ କରିଦେଲେ ତୁମେ ତାଙ୍କ ସର୍ବସ୍ୱର ମାଲିକ ହୋଇଯିବ।



## ଶ୍ରଦ୍ଧା

୧- ଯାହାର ଅନ୍ତଃକରଣ ଯେତିକି ସ୍ୱଚ୍ଛ ଅର୍ଥାତ୍ ମଳଦୋଷରୁ ରହିତ, ତାଙ୍କଠାରେ ସେତିକି ଶ୍ରଦ୍ଧା ହୁଏ।

୨- ଶ୍ରଦ୍ଧା ହିଁ କଲ୍ୟାଣର ପରମ କାରଣ। ଏଥିପାଇଁ ଆତ୍ମାର କଲ୍ୟାଣ ଚାହୁଁଥିବା ପୁରୁଷ ଶ୍ରଦ୍ଧା ବୃଦ୍ଧିପାଇଁ ବିଶେଷ ପ୍ରଯତ୍ନ କରିବା ଆବଶ୍ୟକ।

୩- ଶ୍ରଦ୍ଧା ଅନୁସାରେ ଉତ୍ସାହ ଏବଂ ଉତ୍ସାହ ଅନୁସାରେ ହିଁ ସାଧନରେ ତତ୍ପରତା ହୁଏ ଏବଂ ସେହି ତତ୍ପରତାରେ ମନ ଓ ଇନ୍ଦ୍ରିୟଗୁଡ଼ିକର ସଂଯମର ମଧ୍ୟ ସାମର୍ଥ୍ୟ ହୋଇଯାଏ।

୪- ଭଗବାନ୍ ତଥା ମହାପୁରୁଷମାନଙ୍କର ପ୍ରଭାବ ଓ ଗୁଣାବଳୀ ଶୁଣି ମଧ୍ୟ ଶ୍ରଦ୍ଧା ହୁଏ ନାହିଁ—ଏହାର କାରଣ ହେଉଛି ଅନ୍ତଃକରଣର ମଳିନତା ଏବଂ ତଦନୁକୂଳ ଚେଷ୍ଟା ନ ହେବାର କାରଣ ହେଲା ଶ୍ରଦ୍ଧାର ଅଭାବ।

୫- ଅନ୍ତଃକରଣର ମଳିନତା ଦୂର କରିବାର ସବୁଠାରୁ ଶ୍ରେଷ୍ଠ ଉପାୟ ଭଗବାନ୍‌ଙ୍କର ନାମ ଜପ। ଏଣୁ ଯାହା ବି ହେଉ—ହଠ ବା ପ୍ରେମଦ୍ୱାରା ନାମ ଜପ କରିବା ଉଚିତ। ନାମ-ଜପଦ୍ୱାରା ଅନ୍ତଃକରଣର ମଳିନତା ନଷ୍ଟ ହୋଇଯିବ, ସେଥିରେ ସାତ୍ତ୍ୱିକ ଶ୍ରଦ୍ଧା ହୋଇଯିବ ଏବଂ ତାଙ୍କ କଥାନୁସାରେ ତତ୍ପରତାଦ୍ୱାରା ଚେଷ୍ଟା ହେବାକୁ ଲାଗିବ।

୬- ଅନ୍ତଃକରଣର ସ୍ୱଚ୍ଛତାଦ୍ୱାରା ଶ୍ରଦ୍ଧା ହୁଏ। ଶ୍ରଦ୍ଧାର ସାଧନରେ ତତ୍ପରତା ହୁଏ, ତତ୍ପରତାଦ୍ୱାରା ମନ ଓ ଇନ୍ଦ୍ରିୟ ନିରୋଧ ହୋଇ ପରମାତ୍ମାଙ୍କ ସ୍ୱରୂପରେ ନିରନ୍ତର ଧ୍ୟାନ ହୁଏ। ସେହି ଧ୍ୟାନଦ୍ୱାରା ପରମାତ୍ମାଙ୍କ ତତ୍ତ୍ୱର ଯଥାର୍ଥ ଜ୍ଞାନ

ହୁଏ ଏବଂ ଜ୍ଞାନଦ୍ୱାରା ପରମ ଶାନ୍ତି ପ୍ରାପ୍ତି ହୁଏ । ଏହାକୁ ଭଗବତ୍‌ପ୍ରାପ୍ତି, ପରମଧାମର ପ୍ରାପ୍ତି ଆଦି ନାମରେ ଗୀତାରେ କୁହାଯାଇଛି ।

୭- ଯାହାର ଏପରି ବିଶ୍ୱାସ ହୁଏ ଯେ ମୁଁ ଭଗବାନ୍‌ଙ୍କ ଶରଣରେ ଅଛି— ମୋର ଧାରଣାକୁ ଦୃଢ଼ ଏବଂ ଅନ୍ତଃକରଣର ଶୁଦ୍ଧି ଭଗବାନ୍ ହିଁ କରନ୍ତି, ତାହାର ସେପରି ହୁଏ ।

୮- ଭଗବାନ୍‌ଙ୍କଠାରେ ଶ୍ରଦ୍ଧା ଓ ପ୍ରେମ ହୋଇଯିବା ପରେ ସେ ନ ମିଳିବେ ଏପରି ହୋଇ ନ ପାରେ । ବାଧ୍ୟ ହୋଇ ଭଗବାନ୍ ନିଜର ଶ୍ରଦ୍ଧାଳୁ ଭକ୍ତର ଶ୍ରଦ୍ଧାକୁ ଫଳୀଭୂତ କରନ୍ତି । ଯେପର୍ଯ୍ୟନ୍ତ ପ୍ରଭୁଙ୍କ କୃପା ଉପରେ ବିଶ୍ୱାସ ହୋଇ ନାହିଁ, ସେପର୍ଯ୍ୟନ୍ତ ପ୍ରଭୁଙ୍କ ପ୍ରସାଦ ଆମେ କିପରି ପାଇ ପାରିବା ।

୯- ଭଗବାନ୍‌ଙ୍କ ଦର୍ଶନରେ ବିଳମ୍ବ ହେବାର ମୂଳ କାରଣ ଦୃଢ଼ ବିଶ୍ୱାସର ଅଭାବ । ଯେଉଁ ପ୍ରକାର ନିଶ୍ଚୟ ହେଉ ପଛେ, ନିଶ୍ଚୟ ହୋଇଗଲେ ଭଗବାନ୍ ଯେ ନ ଆସିବେ, ଏପରି ହୋଇ ନ ପାରେ ।

୧୦- ବାସ୍ତବିକ ଶ୍ରଦ୍ଧା ଏପରି ବଳବତୀ ହୁଏ ଯେ ଭଗବାନ୍‌ଙ୍କୁ ବାଧ୍ୟ ହୋଇ ସେହି ଶ୍ରଦ୍ଧାକୁ ଫଳୀଭୂତ କରିବାପାଇଁ ପ୍ରକଟ ହେବାକୁ ପଡ଼େ । ଯଦି ପରଶମଣି ଖାଣ୍ଟି ଏବଂ ଲୁହା ମଧ୍ୟ ଖାଣ୍ଟି, ତେବେ ସ୍ପର୍ଶ ମାତ୍ରକେ ନିଶ୍ଚିତ ସୁନା ହିଁ ହେବ ।

୧୧- ଶ୍ରଦ୍ଧାବାନ୍‌ଙ୍କୁ ଭଗବାନ୍ ପ୍ରାପ୍ତ ହୁଅନ୍ତି । ଶ୍ରଦ୍ଧାଳୁ ଭକ୍ତର ଅଭାବ ପୂର୍ତ୍ତି କରି ଭଗବାନ୍ ତାହାର କାର୍ଯ୍ୟକୁ ସିଦ୍ଧ କରି ଦିଅନ୍ତି । ଶ୍ରଦ୍ଧା ହେବାପରେ ସବୁ କାମର ପୂର୍ତ୍ତି ଆପେ ଆପେ ହୋଇଯାଏ ।

୧୨- ଭଗବନ୍ନିଷ୍ଠା ଭଗବାନ୍‌ଙ୍କୁ ବଳପୂର୍ବକ ନିଜର ଋଣୀ କରିଦିଏ ।

୧୩- ଯେଉଁମାନେ ଭଗବାନ୍‌ଙ୍କର ଅତି ଛୋଟ ଛୋଟ ଆଜ୍ଞାକୁ ପାଳନ କରିବାପାଇଁ ନିଜର ସର୍ବସ୍ୱକୁ ଅର୍ପଣ କରିଦେବାକୁ ପ୍ରସ୍ତୁତ ରହନ୍ତି, ଭଗବାନ୍ ସେମାନଙ୍କର ଋଣୀ ହୋଇଯାନ୍ତି ।

୧୪- ଈଶ୍ୱରଙ୍କ ପ୍ରାପ୍ତିରେ ଖୁବ୍ ବିଶ୍ୱାସ ରଖ । ଏପରି ବିଗ୍ୱର କର ଯେ ମୋର ଆଉ କୌଣସି ଆଧାର ନାହିଁ, କେବଳ ଭଗବାନ୍‌ଙ୍କ ଦୟାଳୁତା ଦେଖି ମୋର ପୂରା ବିଶ୍ୱାସ ଯେ ସେ ଅବଶ୍ୟ ମୋତେ ମନେ ରଖିବେ ।

୧୫- କଲ୍ୟାଣରେ ଶ୍ରଦ୍ଧା ହିଁ ପ୍ରଧାନ ।

୧୬- ପରମ ପ୍ରିୟତମ ପ୍ରଭୁଙ୍କର ମନ-ମୋହିନୀ ମୂର୍ତ୍ତିର ସାକ୍ଷାତ୍ ଦର୍ଶନ କରିଥିବା ଏବଂ ତାଙ୍କ ତତ୍ତ୍ୱକୁ ଭଲଭାବରେ ଜାଣିଥିବା ପୁରୁଷମାନଙ୍କଠାରୁ

ଈଶ୍ୱରଙ୍କ ଗୁଣ, ପ୍ରେମ ଏବଂ ପ୍ରଭାବର କଥା ପ୍ରେମରେ ଶୁଣିଲେ ଓ ବୁଝିଲେ ଈଶ୍ୱରଙ୍କଠାରେ ତର୍କରହିତ ବିଶୁଦ୍ଧ ଶ୍ରଦ୍ଧା ଉତ୍ପନ୍ନ ହୋଇପାରେ।

(୧) ରାଜା ଦ୍ରୁପଦଙ୍କର ମହାଦେବଙ୍କ ବଚନ ଉପରେ ଉତ୍ତମ ଶ୍ରଦ୍ଧା ଥିଲା। ମହାଦେବଙ୍କ ବଚନରେ ଦ୍ରୁପଦ ନିଜର କନ୍ୟାକୁ ପୁତ୍ର ମାନି ତା'ର ବିବାହ ମଧ୍ୟ କରିଦେଲେ। (୨) ଜବାଲାଙ୍କ ପୁତ୍ର ସତ୍ୟକାମଙ୍କର ଗୁରୁଙ୍କ ବଚନରେ (୩) ଶୁକଦେବଙ୍କର ରାଜା ଜନକଙ୍କ ବଚନରେ (୪) ଦ୍ରୋଣାଚାର୍ଯ୍ୟଙ୍କର ମହାରାଜ ଯୁଧିଷ୍ଠିରଙ୍କ ବଚନରେ ଉତ୍ତମ ଶ୍ରଦ୍ଧା ଥିଲା।



# ପ୍ରେମ

୧- ସବୁ କିଛି ଭଗବାନ୍‌ଙ୍କ ସଙ୍କଳ୍ପ। ସେ ଯାହା ଚାହାନ୍ତି, ତାହା କରନ୍ତି। ତାଙ୍କଠାରେ ବିକାର ହେବାର କୌଣସି କାରଣ ନାହିଁ। ଭଗବାନ୍‌ଙ୍କର ବିଧାନରେ ନିଜର କୌଣସି ପ୍ରକାର "ଆପତ୍ତି" ନ ରହିଲେ ବୈରାଗ୍ୟ ଏବଂ ସତ୍‌ସଙ୍ଗରେ ପ୍ରେମର ଅଧିକତା ଦେଖାଯାଏ।

୨- ପ୍ରେମ ହୋଇଯିବା ପରେ ତ ପ୍ରେମୀଙ୍କର ଟିକିଏ କଥା ଶୁଣିଲେ ହିଁ ରୋମାଞ୍ଚ, ଅଶ୍ରୁପାତ ଆଦି ପ୍ରେମାନନ୍ଦର ଚିହ୍ନ ପ୍ରତ୍ୟକ୍ଷ ହେବାକୁ ଲାଗେ।

୩- ପ୍ରେମାସ୍ପଦଙ୍କ ପାଖରୁ ଆସିଥିବା ସାଧାରଣ ମନୁଷ୍ୟ ମଧ୍ୟ ବଡ଼ ପ୍ରିୟ ଲାଗେ। ଯଦି ଜଣେ ସାଧାରଣ ମନୁଷ୍ୟ ସହିତ ପ୍ରେମ ହେବା ପରେ ତାଙ୍କ ଗୁଣାନୁବାଦ ଏବଂ ପ୍ରେମର କଥା ଶୁଣିଲେ ଆନନ୍ଦ ଲାଗେ, ତେବେ ପ୍ରେମିକ-ଶିରୋମଣି ଭଗବାନ୍‌ଙ୍କ କଥା ଆଉ କ'ଣ କହିବା? ଉଦ୍ଧବଙ୍କ କଥା ଶୁଣି ଗୋପୀମାନଙ୍କର ଯେପରି ପ୍ରେମ ହୋଇଥିଲା, ସେପରି ପ୍ରେମ ଏବେ ମଧ୍ୟ ହୋଇପାରେ।

୪- ପ୍ରେମରେ ଯେତିକି ତ୍ରୁଟି ହୁଏ, ସେତିକି ବିଳମ୍ବ ହୁଏ।

୫- ବିଳମ୍ବ ଏଥିପାଇଁ ହୁଏ ଯେ ସାଧକ ଡେରିକୁ ସହି ଯାଏ। ଯଦି ସାଧକକୁ ପ୍ରଭୁଙ୍କ ବିୟୋଗ ଏପରି ଅସହ୍ୟ ହୋଇଯିବ ଯେ ତା'ର ପ୍ରାଣ ବାହାରି ଯିବ, ତେବେ ପୁଣି ମିଳିବାରେ ଟିକିଏ ବିଳମ୍ବ ହେବ ନାହିଁ।

୬- ଯେପର୍ଯ୍ୟନ୍ତ ସାଧକ ପରମାତ୍ମାଙ୍କ ନ ମିଳିବାକୁ (ଅପ୍ରାପ୍ତିକୁ) ବରଦାସ୍ତ କରିଯାଉ ଥାଏ, ଯେପର୍ଯ୍ୟନ୍ତ ଭଗବାନ୍‌ଙ୍କ ବିନା ତା'ର କାମ ଚଳିଯାଉଥାଏ, ସେପର୍ଯ୍ୟନ୍ତ ଭଗବାନ୍ ମଧ୍ୟ ଦେଖନ୍ତି ଯେ ଏହାର କାମ ମୋ ବିନା ଚଳି

ଯାଉଛି, ପୁଣି ମୋର ଶୀଘ୍ରତାର ଆବଶ୍ୟକତା କ'ଣ ? ଯେଉଁ ଦିନ ଭଗବାନ୍‌ଙ୍କ ବିନା ସାଧକ ରହି ପାରିବ ନାହିଁ, ସେଦିନ ଭଗବାନ୍ ମଧ୍ୟ ସାଧକ ବିନା ରହି ପାରିବେ ନାହିଁ।

୭- ବିଳମ୍ବ ଭଗବାନ୍‌ଙ୍କୁ ପାଇବାର ଇଚ୍ଛାରେ ହୁଏ, ପାଇବାରେ ନୁହେଁ।

୮- ସଗୁଣରେ ପ୍ରେମ ହୋଇ ତାଙ୍କର ଦର୍ଶନ ହୋଇଯିବା ପରେ ନିର୍ଗୁଣର ଭାବକୁ ଅତି ଶୀଘ୍ର ବୁଝି ହୁଏ।

୯- ଶ୍ରୀପରମେଶ୍ୱରଙ୍କ ପରି ସଂସାରରେ ପ୍ରେମ କରିବାପାଇଁ ଅନ୍ୟ କେହି ମଧ୍ୟ ନାହିଁ। କେହି ମଧ୍ୟ ଶ୍ରୀପରମେଶ୍ୱରଙ୍କ ସଙ୍ଗେ ପ୍ରେମ କରିବାକୁ ଇଚ୍ଛା କଲେ, ସେ ସମସ୍ତଙ୍କ ସଙ୍ଗେ ପ୍ରେମ କରିବାକୁ ପ୍ରସ୍ତୁତ ରହନ୍ତି।

୧୦- ଭଗବାନ୍‌ଙ୍କୁ ପ୍ରେମ କରିବାପାଇଁ ଇଚ୍ଛା ହେଲେ ଭଗବାନ୍‌ଙ୍କୁ ହିଁ ସବୁଠାରୁ ଉତ୍ତମ ବୋଲି ବୁଝିବା ଉଚିତ। ସଂସାରରେ ଶ୍ରୀନାରାୟଣଙ୍କ ପରି ଦୟାଳୁ ତଥା ସୁହୃଦ୍ ଆଉ କେହି ବି ନାହାନ୍ତି। ତାଙ୍କ ପରି ଆଉ କୌଣସି ପ୍ରେମୀ ନାହାଁନ୍ତି। ସେ ଛୋଟଠାରେ ମଧ୍ୟ ପ୍ରେମ କରନ୍ତି, କାହାରିକୁ ଘୃଣା କରନ୍ତି ନାହିଁ। ଯଦି କୌଣସି ମନୁଷ୍ୟ ନିଜର ନୀଚତାକୁ ଦେଖି ତାଙ୍କୁ ନ ଭଜେ, ତେବେ କିଛି ଉପାୟ ନାହିଁ। ପରନ୍ତୁ ଭଗବାନ୍‌ଙ୍କ ଆଡୁ ସମସ୍ତଙ୍କ ପାଇଁ 'ଦ୍ୱାର ଖୋଲା' ଅଟେ। ଯିଏ ଯେତେ ନୀଚ ହେଉନା କାହିଁକି ଯଦି ନିରନ୍ତର ଭଜନ କରେ, ତେବେ ତାକୁ ଭଜନର ପ୍ରଭାବରେ ପରମାନନ୍ଦଙ୍କ ପ୍ରାପ୍ତି ହୋଇଯାଏ। ଭଗବାନ୍‌ଙ୍କର ଏପରି ପ୍ରଭାବକୁ କେହି ନ ଜାଣିଲେ ସେଥିରେ ଭଗବାନ୍‌ଙ୍କର କିଛି ଦୋଷ ନାହିଁ।

୧୧- ଭଗବତ୍‌ପ୍ରେମ ଏତେ ପ୍ରବଳ ହୋଇଯିବା ଉଚିତ ଯେ ଯାହାଦ୍ୱାରା ଭଗବାନ୍ ନ ମିଳି ରହି ପାରିବେ ନାହିଁ। ଏଇପରି ତୀବ୍ର ଉତ୍କଣ୍ଠା ହେଲେ ଭଗବାନ୍ ମିଳନ୍ତି।

୧୨- ଭଗବାନ୍‌ଙ୍କ ପ୍ରେମୀ ଭଗବାନ୍‌ଙ୍କ ସର୍ବସ୍ୱର ମାଲିକ ହୋଇଯାଏ।

୧୩- ପ୍ରେମାସ୍ପଦଙ୍କ ପ୍ରତି ପ୍ରେମ ହେବା ଆବଶ୍ୟକ, ପ୍ରେମ ହିଁ ପ୍ରଧାନ । ପ୍ରେମ ନ ହେଲେ ମିଳିବାର ବିଶେଷ ମୂଲ୍ୟ ନାହିଁ।

୧୪- ଭଗବାନ୍‌ଙ୍କଠାରେ ଏପରି ପ୍ରେମ ହୋଇଯିବା ଉଚିତ ଯଦ୍ଦ୍ୱାରା ତାଙ୍କ ସହିତ ନ ମିଳିଲେ ଚିତ୍ତରେ ଶାନ୍ତି ଆସିବ ନାହିଁ।

୧୫- ଭଗବାନ୍‌ଙ୍କଠାରେ ଅଧିକ ପ୍ରେମ ହେବାର ଉପାୟ ଭଗବାନ୍‌ଙ୍କୁ ଚିନ୍ତନ କରିବା।

୧୬- ସବୁ ଜୀବଙ୍କ ପ୍ରତି ଯେଉଁ ନିଷ୍କାମପ୍ରେମ ହୁଏ, ତାହା ପ୍ରକୃତରେ ଭଗବାନ୍‌ଙ୍କ ପ୍ରତି ହିଁ ହୁଏ, କାରଣ ଭଗବାନ୍ ହିଁ ସବୁଜୀବଙ୍କର ଆତ୍ମା ଅଟନ୍ତି।

୧୭- ନିଜର ଉଦ୍ଧାର ନ ହେଉ ପଛେ, କେବଳ ପ୍ରେମ ସହକାରେ ଭଗବାନ୍‌ଙ୍କ ଚିନ୍ତନ ହେବା ଉଚିତ।

୧୮- ଭଗବାନ୍‌ଙ୍କଠାରେ ଏତିକି ପ୍ରେମ ବଢ଼ିଯିବା ଉଚିତ ଯେ ଭଗବାନ୍‌ଙ୍କୁ ଭକ୍ତ ଛାଡି ପାରିବ ନାହିଁ।

୧୯- ନାମ-ଜପାଦିର ଅଭ୍ୟାସ ହେବାରୁ ଅନ୍ତଃକରଣରୁ ମଳ ନାଶ ହୋଇଯିବା ପରେ ଭଗବାନ୍‌ଙ୍କଠାରେ ପ୍ରେମ ହୁଏ।

୨୦- ସବୁ ସମୟରେ ଭଗବାନ୍‌ଙ୍କ ନିକଟରେ ରହିବାର ଉତ୍କଣ୍ଠା ରଖିବା ଉଚିତ। ଭଗବାନ୍‌ଙ୍କ ପାଖରେ ନିତ୍ୟ ରହିବାପାଇଁ ଉତ୍କଣ୍ଠା ହିଁ ପ୍ରଧାନ ହେତୁ। ଉତ୍କଣ୍ଠା ହେବାପରେ କୌଣସି ପ୍ରତିବନ୍ଧକ ରହିପାରେ ନାହିଁ।

୨୧- ଭଗବାନ୍ ନ ମିଳନ୍ତୁ ପଛେ, କିନ୍ତୁ ଅନନ୍ୟ ପ୍ରେମ ହେବା ଉଚିତ।

୨୨- ଭଗବାନ୍‌ଙ୍କଠାରେ ପ୍ରେମ ହୋଇ ସଂସାରରେ ବଞ୍ଚି ରହିଲେ ତ ତାହାଠାରୁ ବଳି ଆନନ୍ଦ ଆଉ କିଛି ନାହିଁ।

୨୩- ପ୍ରେମରେ ବିହ୍ୱଳ ହୋଇ ନିତ୍ୟ ନିରନ୍ତର ଭଗବାନ୍‌ଙ୍କର ନାମ ଜପ କରିବାର ନାମ ଭଜନ।

୨୪- ଯେଉଁ ବିଦ୍ୟାଦ୍ୱାରା ଭଗବାନ୍‌ଙ୍କଠାରେ ପ୍ରେମ ହୁଏ, ତାହାର ନାମ ସଦ୍‌ବିଦ୍ୟା।

୨୫- ଯେଉଁ ଶାସ୍ତ୍ରଦ୍ୱାରା ସଂସାରରେ ବୈରାଗ୍ୟ ଏବଂ ପରମେଶ୍ୱରଙ୍କଠାରେ ପ୍ରେମ ହୁଏ, ତାହାର ନାମ ସତ୍‌ଶାସ୍ତ୍ର।

୨୬- ଭଜନ, ଧ୍ୟାନର ତୀବ୍ର ଅଭ୍ୟାସ କଲେ ହୃଦୟ ଶୁଦ୍ଧ ହୁଏ, ତେବେ ବାସ୍ତବ ଧାରଣା ହୁଏ। ଭଗବାନ୍‌ଙ୍କଠାରେ ପୂର୍ଣ୍ଣ ପ୍ରେମ ହେବାର ଉପାୟ କରିବା ଉଚିତ।

୨୭- ପ୍ରେମପୂର୍ବକ ଭଜନରେ ଏପରି ମଗ୍ନ ହୋଇଯାଅ ଯେ ଶରୀରର ଜ୍ଞାନ ନ ରହୁ। ସେତେବେଳେ କେବଳ ଆନନ୍ଦ ହିଁ ଆନନ୍ଦ।

୨୮- ପ୍ରେମର ଅଭାବ ହେଲେ କାମ କଲେ ମଧ୍ୟ ଅଧିକ ଭଜନ ହେବା କଠିନ।

୨୯- ଅନନ୍ୟ ପ୍ରେମ ହେବା କାରଣରୁ ସବୁ ସମୟରେ ଏକମାତ୍ର ଭଗବାନ୍‌ଙ୍କଠାରେ ଯାହାଙ୍କର ଧ୍ୟାନ ଲାଗି ରହିଥାଏ, ସେ ଧନ୍ୟବାଦର ପାତ୍ର।

ତାହାଙ୍କର ନିରନ୍ତର ଭଗବାନ୍‌ଙ୍କ ସ୍ମରଣ ହେଉଥାଏ । ତାଙ୍କର ପୁଣି ଜୀବନ୍ମୁକ୍ତିରେ କି ପ୍ରୟୋଜନ ? ସେ ତ ଦର୍ଶନ କରିବାର ଯୋଗ୍ୟ ।

୩୦- ପ୍ରାଣ ପଛକେ ଚ୍ୟୁଲିଯାଉ, କିନ୍ତୁ ପ୍ରଭୁଙ୍କ ପ୍ରେମରେ କଳଙ୍କ ନ ଲାଗୁ ।

୩୧- ବିଶ୍ୱାସ ହିଁ ସାର । ବିନା ବିଶ୍ୱାସରେ ନାରାୟଣ ପ୍ରେମ ହୁଏ ନାହିଁ । ବିନା ପ୍ରେମରେ ନାରାୟଣ ମିଳନ୍ତି ନାହିଁ ଏବଂ ନାରାୟଣଙ୍କ ମିଳିବା ବିନା ସଂସାରରୁ ଉଦ୍ଧାର ହେବାର ଆଉ କିଛି ଉପାୟ ନାହିଁ ।

୩୨- ଭଗବାନ୍‌ଙ୍କର ପ୍ରଭାବ ଜାଣି ନ ଥିବା ପର୍ଯ୍ୟନ୍ତ ସଂସାରର ଚିନ୍ତନ ହୁଏ । ଭଗବାନ୍‌ଙ୍କ ପ୍ରଭାବ ଜାଣିଗଲେ ସେଥିରେ ଶ୍ରଦ୍ଧାଯୁକ୍ତ ପୂର୍ଣ୍ଣପ୍ରେମ ହୋଇଯାଏ, ପୁଣି ଅନ୍ୟ ଚିନ୍ତନ ହୋଇପାରେ ନାହିଁ ।

୩୩- ପ୍ରେମ ହେବା ଉଚିତ । ମିଳିବା କମ୍ ହେଉ ପଛକେ, ମୁଁ ତ ପ୍ରେମୀଙ୍କର ।

୩୪- ଭଗବାନ୍ ଶ୍ରୀକୃଷ୍ଣଙ୍କ ମନମୋହିନୀ ମୂର୍ତ୍ତିକୁ ନିଜ ହୃଦୟରୁ କେବେ ପାସୋରିବା ଉଚିତ ନୁହେଁ ।

୩୫- ସେହି ମୟୂରମୁକୁଟଧାରୀ, ବଂଶୀବିହାରୀଙ୍କ ମଧୁର ମୂର୍ତ୍ତି ଓ ମିଠା ବାଣୀରେ ଥରେ ପ୍ରୀତି ଲାଗିଗଲେ ଆଉ ତାହା ଲେଉଟି ଆସେ ନାହିଁ । ଚିତ୍ତ ସେଥିରେ ମଜ୍ଜି ଯାଏ ।

୩୬- ଭଗବାନ୍‌ଙ୍କଠାରେ ପ୍ରେମ ହୋଇଗଲେ ସାଂସାରିକ ପ୍ରେମ ଆପେ-ଆପେ କମି ଯାଏ । ସାଂସାରିକ ପ୍ରେମକୁ ଦୂର କରିବାପାଇଁ ଅନ୍ୟ ସାଧନ କରିବାକୁ ପଡେ ନାହିଁ ।

୩୭- ସଂସାରରେ ଯେଉଁ କାମରେ ଅଧିକ ପ୍ରେମ ହୁଏ, ଚିତ୍ତରେ ତାହା ବସିଯାଏ । ସେହିପରି ପ୍ରେମ ଅଧିକ ହେବାପରେ ଭଗବାନ୍ ମନରେ ବସି ଯାଆନ୍ତି ।

୩୮- ପ୍ରେମୀକୁ ଭଗବାନ୍‌ଙ୍କ ବିନା ଶାନ୍ତି ମିଳେ ନାହିଁ ।

୩୯- ପତିବ୍ରତା ସ୍ତ୍ରୀ ପତିଙ୍କୁ ଦେଖି ପତିଙ୍କ ଇଚ୍ଛାନୁସାରେ ସବୁ କାମ ଯେପରି କରେ, ସେହିପରି ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ମୟୂର ମୁକୁଟଧାରୀ ବଂଶୀବଟ-ବିହାରୀ ମାଧୁରୀମୂର୍ତ୍ତିକୁ ନିଜ ନେତ୍ର ସମ୍ମୁଖରେ ଦେଖି କାମ କରୁଥାଅ ।

୪୦- ନେତ୍ର ଯେଉଁ ଯେଉଁ ଆଡକୁ ଯାଉଥାଏ, ସେହି ସେହି ଠାରେ ଶ୍ରୀବାସୁଦେବ ଶ୍ୟାମସୁନ୍ଦରଙ୍କ ମୂର୍ତ୍ତିକୁ ଭାବନା କର ।

୪୧- ଯେଉଁ ଯେଉଁ ଆଡେ ନେତ୍ର ଯାଏ, ସେହି ସେହି ଠାରେ ଆନନ୍ଦମୟ

ଶ୍ରୀକୃଷ୍ଣଚନ୍ଦ୍ରଙ୍କ ମୂର୍ତ୍ତିକୁ ଚିନ୍ତନ କରି ମନକୁ ଭଗବାନଙ୍କ ଠାରେ ରଖି ସାଂସାରିକ କର୍ମ କରିଚାଲ।

୪୨- ମନ ସହିତ ଭଜନ କଲେ ଏବଂ ଶାସ୍ତ୍ରର ଅଭ୍ୟାସ କଲେ ଯେତିକି ଲାଭ ଏକ ବର୍ଷରେ ହେବ, ବିନା ମନରେ କଲେ ଶହେ ବର୍ଷରେ ମଧ୍ୟ ହୋଇ ପାରିବ ନାହିଁ, ଆଜିକାଲି ଲୋକଙ୍କର ଉନ୍ନତି ନ ହେବାର କାରଣ ଏହା ହିଁ ଅଟେ।

୪୩- କିଛି କ୍ଷଣ ନାମୋଚ୍ଚାରଣ କରୁ କରୁ ପ୍ରେମରେ ମଗ୍ନ ହୋଇଗଲେ ସେହି ସମୟରେ ଭଗବାନ୍ ପ୍ରକଟ ହୋଇଯାନ୍ତି।

୪୪- ପ୍ରେମ ପ୍ରାପ୍ତି ପାଇଁ ଭଗବାନ୍‌ଙ୍କୁ ପ୍ରାର୍ଥନା କରିବା ଉଚିତ ଏବଂ ଭଗବାନ୍‌ଙ୍କ ଆଗରେ କାନ୍ଦିବା ଉଚିତ।

୪୫- ପ୍ରେମ ପରମାତ୍ମାଙ୍କ ଦୟାରୁ ପ୍ରାପ୍ତ ହୁଏ। ପରମାତ୍ମାଙ୍କର କେତେ ଦୟା, ସ୍ମରଣ ରଖ ଯେ ଆମର ବୃତ୍ତି ପରମାର୍ଥ ଆଡକୁ ଯାଉଛି।

୪୬- ଯେଉଁଠାରେ ପ୍ରେମ ଅଛି, ସେଠାରେ ଶକ୍ତି ବେଶୀ।

୪୭- ଭଗବାନ୍‌ଙ୍କଠାରେ ପୂର୍ଣ୍ଣ ପ୍ରେମ ଓ ବିଶ୍ୱାସ ହୋଇ ଯିବା ପରେ ଯେତେ ବିଷୟୀ ଲୋକଙ୍କ ସଙ୍ଗ ହେଉନା କାହିଁକି, ପୁଣି ଭଗବାନ୍‌ଙ୍କ ସ୍ମୃତି ଭୁଲି ହୁଏ ନାହିଁ।

୪୮- ଭଗବାନ୍ ବଡ ପ୍ରେମୀ। ଯିଏ ଏହି ଭଗବାନ୍‌ଙ୍କ ପ୍ରେମ ଛାଡି ସାଂସାରିକ ତୁଚ୍ଛ ସ୍ତ୍ରୀ ଓ ନିଜ ଶରୀରର ଦାସ ହୋଇ ସେମାନଙ୍କୁ ପ୍ରେମ କରେ, ସେ ପଶୁ।

୪୯- ସମୟ ଚାଲି ଯାଉଛି। ଯାହା କିଛି ସାଂସାରିକ ବସ୍ତୁ ଦେଖିବାକୁ ମିଳେ, ସବୁ ନାଶବାନ୍। ଏପରି ଜାଣି ସେଥିରୁ ପ୍ରେମ ଛାଡି ସତ୍ୟରୂପ ଭଗବାନ୍‌ଙ୍କଠାରେ ପ୍ରେମ କରିବା ଉଚିତ।

୫୦- ଭଗବାନ୍ କେବଳ ପ୍ରେମ ହିଁ ଚାହାନ୍ତି।

୫୧- ପ୍ରେମପୂର୍ବକ ନିରନ୍ତର ନାରାୟଣଙ୍କର ନାମର ଜପ ହେଉଥିଲେ ସାଂସାରିକ ବ୍ୟସନ ଯେତେ ପ୍ରବଳ ହେଉନା କାହିଁକି, କିଛି ଡର ନାହିଁ। ରାସ୍ତା ସୁଧାରିବାକୁ ଏହାଠାରୁ ବଳି ଆଉ କି ଉପାୟ ଅଛି।

୫୨- ଯେଉଁ ପ୍ରେମ ନିରନ୍ତର ରହେ, ତାହାର ମହିମା ଅଛି।

୫୩- ଭଗବାନ୍‌ଙ୍କ ବିରହରେ ବିତିଯାଉଥିବା ଗୋଟିଏ କ୍ଷଣ ଯୁଗ ପରି ଲାଗେ।

୫୪- ଅନନ୍ୟ ପ୍ରେମ ପ୍ରାପ୍ତ କରିବାର ତିନୋଟି ସାଧନ—(୧) ପ୍ରେମୀ ଭଗବାନ୍‌ଙ୍କୁ ଚିତ୍ତରୁ କେବେ ନ ପାସୋରିବା। (୨) ପ୍ରେମୀଙ୍କ ମନର ଅନୁକୂଳରେ ଚାଲିବା। ଯଦି ପ୍ରେମୀଙ୍କ ମନର କଥା ଜଣା ନାହିଁ, ତେବେ ତାଙ୍କ ହୁକୁମର ଅନୁକୂଳରେ ଚଳିବା। (୩) ପ୍ରେମୀଙ୍କୁ ସର୍ବସ୍ୱ ଅର୍ପଣ କରିଦେବା।

୫୫- ନିଜର ମିତ୍ର ଅପାର ଧନୀ ହେଲେ ମଧ୍ୟ ତାଙ୍କର ଧନ ନେବା ପାଇଁ ଆଶା କରିବା ଅନୁଚିତ। ଧନ ନେବାର ଆଶା ପ୍ରେମରେ କଳଙ୍କ ଲଗାଇ ଦିଏ।

୫୬- ପ୍ରେମର ରକ୍ଷା ନିଜେ କରିବେ। ଯେପରି ମହାରାଜ ଯୁଧିଷ୍ଠିର ନିଜ ଧର୍ମର ପାଳନ ନିଜେ-ନିଜେ କରୁଥିଲେ, ସେହିପରି ନିଜ ସମ୍ମାନର ରକ୍ଷା ନିଜ ହାତରେ ଅଛି।

୫୭- ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି—"**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।**" (୪/୧୧) ମୋତେ ଯେ ପ୍ରେମ କରେ, ମୁଁ ତାର ପ୍ରିୟ। ମୋଠାରେ ଯାହାର ଯେତିକି ପ୍ରେମ, ସେ ମୋତେ ସେତିକି ପ୍ରିୟ—ଏହା ଭଗବାନ୍‌ଙ୍କର କଥା। ମହାପୁରୁଷଙ୍କର ମଧ୍ୟ ଏପରି ବ୍ୟବହାର ହୋଇଥାଏ।

୫୮- ନିଷ୍କାମ ଭାବରେ ପ୍ରାଣୀମାନଙ୍କ ସହ ପ୍ରେମ କରିବା ହିଁ ଭଗବାନ୍‌ଙ୍କୁ କିଣି ନେବା। ଏପରି ବ୍ୟବହାର ମହାପୁରୁଷଙ୍କଦ୍ୱାରା କରାଯାଏ। ଏହି କଥାକୁ ଆଖି ବନ୍ଦ କରି ବିଶ୍ୱାସ କରିବା ଉଚିତ। ଏହାକୁ ପାଳନ କଲେ ମହାନ୍ ଲାଭ ହୁଏ।

୫୯- ଯେଉଁ ପ୍ରେମରେ ଈର୍ଷ୍ୟା ନ ଥାଏ, ତାହା ଉଚ୍ଚକୋଟିର।

୬୦- ଭଗବାନ୍‌ଙ୍କ ପ୍ରେମରେ ମଗ୍ନ ହୋଇଗଲେ ମନର ନାଶ ହୋଇପାରେ ଅଥବା ସେ ନିଜର ଅଧୀନ ହୋଇପାରେ। ସେହି ସମୟରେ ସାଂସାରିକ ସ୍ଫୁରଣ ହୁଏ ନାହିଁ।

୬୧- ଭଗବାନ୍‌ଙ୍କଠାରେ ଶୀଘ୍ର ପ୍ରେମ ହେବାର ଉପାୟ—

(୧) ଭଗବାନ୍‌ଙ୍କ ନାମ ନିଷ୍କାମଭାବରେ ନିରନ୍ତର ଜପ ଏବଂ ସ୍ୱରୂପର ଧ୍ୟାନ କରିବାକୁ ଚେଷ୍ଟା କରିବା।

(୨) ଭଗବାନ୍‌ଙ୍କ ଗୁଣ ପ୍ରଭାବ ଓ ମର୍ମ (ତତ୍ତ୍ୱ)ର କଥା ଭଗବାନ୍‌ଙ୍କ ଭକ୍ତଙ୍କଦ୍ୱାରା ଶୁଣିବା, ପଢିବା ଓ କଥନ କରିବା।

(୩) ଭଗବାନ୍‌ଙ୍କ ଆଜ୍ଞାନୁସାରେ ନିଷ୍କାମଭାବରେ ସବୁ କାମ ଭଗବାନ୍‌ଙ୍କ ପାଇଁ କରିବା।

(୪) ଭଗବାନ୍‌ଙ୍କ ସହିତ ମିଳିବା ପାଇଁ ମନରେ ତୀବ୍ର ଇଚ୍ଛା ରଖିବା ଏବଂ ତାଙ୍କର ମନ ଓ ଗୁଣାବଳୀକୁ ଶୁଣି ଆନନ୍ଦମଗ୍ନ ହେବା।

୬୨- ଯେଉଁଦିନ ମନରେ ଧୈର୍ଯ୍ୟ ହେବ ନାହିଁ, ଭଗବାନ୍‌ଙ୍କ ବିନା ରହି ହେବ ନାହିଁ, ସେଦିନ ଭଗବାନ୍‌ଙ୍କୁ ଆସିବାକୁ ହେବ। ଯେପର୍ଯ୍ୟନ୍ତ ଆପଣ ଭଗବାନ୍‌ଙ୍କ ବିୟୋଗ ସହି ପାରିବେ, ସେପର୍ଯ୍ୟନ୍ତ ତାଙ୍କର ବିୟୋଗ ହେଉଥିବ। ଯେଉଁ ସମୟରେ ଆପଣ ଭଗବାନ୍‌ଙ୍କ ସହ ମିଳିବା ବିନା କ୍ଷଣେ ମଧ୍ୟ ରହି ପାରିବେ ନାହିଁ ତଥା ବିଚ୍ଛେଦ କାରଣରୁ ଆପଣଙ୍କ ମନ ଜଳବିହୁନେ ମାଛ ଛଟପଟ ହେବା ପରି ଛଟପଟ ହେବ, ସେତେବେଳେ ଭଗବାନ୍‌ଙ୍କ ଆଉ ଡେରି ହୋଇ ପାରିବ ନାହିଁ। ଭଗବାନ୍‌ଙ୍କୁ ପ୍ରକଟ ହେବାକୁ ହେବ।

୬୩- ସଂସାରରେ ପ୍ରେମ ପରି ଆଉ କିଛି ନାହିଁ, କିନ୍ତୁ ପ୍ରେମର ପ୍ରଭାବ ଓ ମର୍ମକୁ କେବଳ ପ୍ରେମୀ ହିଁ ଜାଣନ୍ତି।

୬୪- ପ୍ରେମୀଭକ୍ତ ପ୍ରଭୁଙ୍କୁ ଯେଉଁ ମୂର୍ତ୍ତିରେ, ଯେଉଁ ରୂପରେ ଏବଂ ଯେଉଁ ସମୟରେ ପ୍ରକଟ କରିବାକୁ ଚାହେଁ, ସେହି ଲୀଳାନିକେତନ ନଟବର ସେହି ପ୍ରେମୀର ଅନନ୍ୟ ପ୍ରେମରେ ଆକର୍ଷିତ ହୋଇ ସେହି ମୂର୍ତ୍ତି ଓ ସେହି ରୂପରେ ସେହି ସମୟରେ ପ୍ରକଟ ହୋଇ ଯାଆନ୍ତି।

୬୫- ଯେଉଁ ପ୍ରକାର କାମୀଙ୍କୁ ସ୍ତ୍ରୀଠାରେ, ଲୋଭୀକୁ ଟଙ୍କାରେ ପ୍ରେମ ହୁଏ, ସେହିପ୍ରକାର ଆମର ପରମେଶ୍ୱରଙ୍କଠାରେ ପ୍ରେମ ହେବା ଉଚିତ।

୬୬- ଏକମାତ୍ର ପରମେଶ୍ୱର ହିଁ ପ୍ରେମର ପାତ୍ର।

୬୭- ଭଗବାନ୍‌ଙ୍କ ପ୍ରେମୀ ପୁରୁଷଙ୍କ ସଙ୍ଗ କଲେ, ଅନ୍ତଃକରଣ ଶୁଦ୍ଧ ହେଲେ ଏବଂ ଭଗବାନ୍‌ଙ୍କ ଶରଣ ନେଇ ଭଜନ ଅଭ୍ୟାସ କଲେ ଭଗବାନ୍‌ଙ୍କ ଠାରେ ପ୍ରେମ ହୋଇପାରେ।

**ପ୍ରଶ୍ନ**—କାମ ବେଶୀ ପଡ଼ିବାରୁ ବିଶ୍ରାମ ମିଳୁ ନାହିଁ। ପୁଣି କଲ୍ୟାଣର ମାର୍ଗ କିପରି ଖୋଜି ହେବ?

**ଉତ୍ତର**—ପ୍ରେମ ହୋଇଗଲେ ଆପେ ଆପେ ରାସ୍ତା ମିଳିଯିବ।

୬୮- ପରମାତ୍ମାଙ୍କୁ ଯିଏ କିଛି ନ କହେ, ସେ ଉତ୍ତମ। କୌଣସି ପ୍ରକାର ତୋଷାମଦ କରିବ ନାହିଁ, ତାଙ୍କର ଇଚ୍ଛା ହେଲେ ଆସିବେ ନ ହେଲେ ନାହିଁ।

୬୯- ଭଗବାନ୍‌ଙ୍କ ପ୍ରେମୀ ଭକ୍ତଠାରୁ ଶୁଣିଥିବା ଏବଂ ଶାସ୍ତ୍ରରେ ପଢ଼ିଥିବା ଶ୍ରୀ ପରମାତ୍ମାଙ୍କ ଗୁଣ, ପ୍ରଭାବ ଓ ପ୍ରେମର କଥା ନିଷ୍କାମଭାବରେ ଲୋକଙ୍କ ପାଖରେ କହିଲେ ଭଗବାନ୍‌ଙ୍କଠାରେ ବହୁତ ପ୍ରେମ ହୋଇପାରେ।

୭୦- ମାନ ଅପମାନକୁ ସମାନ ବୋଲି ମଣି, ନିଷ୍କାମଭାବରେ ସମସ୍ତଙ୍କୁ ଭଗବାନ୍‌ଙ୍କ ସ୍ୱରୂପ ଜାଣି ସମସ୍ତଙ୍କ ସେବା କରିବା ଉଚିତ। ଏପରି କଲେ ଭଗବତ୍‌କୃପାଦ୍ୱାରା ପ୍ରେମ ହୋଇପାରେ।

୭୧- ଆପଣ ସେହି ପ୍ରଭୁଙ୍କ ସହ ମୈତ୍ରୀ କାହିଁକି କରୁନାହାନ୍ତି ? ତାଙ୍କପରି ପ୍ରେମୀ ଓ ପ୍ରଭୁ ଆଉ କେଉଁଠୁ ମିଳିବେ? ଏପରି ହିତୈଷୀ ଅନ୍ୟ କିଏ ଆଉ ହେବ ?

୭୨- ସବୁ ମନୋବାଞ୍ଛାକୁ ସେ ପୂରଣ କରନ୍ତି। ସେହିପରି ପ୍ରଭୁଙ୍କୁ ତୁମେ କାହିଁକି ପ୍ରେମ କରୁନାହିଁ ? ପ୍ରଭୁ ଆପଣଙ୍କୁ କିଛି ମାଗନ୍ତି ନାହିଁ। କେବଳ ତାଙ୍କୁ ସବୁ ସମୟରେ ସ୍ମରଣ ରଖିବା ଉଚିତ। ତାଙ୍କର ନାମର ଜପ ଓ ଧ୍ୟାନ ହିଁ ସାର। ଜପ କଲେ ଧ୍ୟାନ ଆପଣାଛାଏଁ ହୋଇଯାଏ।

୭୩- ଭଗବତ୍‌ଭକ୍ତଙ୍କ ଦ୍ୱାରା ଶ୍ରୀଭଗବାନ୍‌ଙ୍କ ଗୁଣାନୁବାଦ ଏବଂ ତାଙ୍କ ପ୍ରେମ ଓ ପ୍ରଭାବର କଥା ଶୁଣିଲେ ଅତି ଶୀଘ୍ର ପ୍ରେମ ହୋଇପାରେ। ଭକ୍ତଙ୍କର ସଙ୍ଗ ଅଭାବରେ ଶାସ୍ତ୍ରମାନଙ୍କର ଅଭ୍ୟାସ ମଧ୍ୟ ସତ୍‌ସଙ୍ଗ ପରି ହୁଏ।

୭୪- ଭଗବାନ୍‌ଙ୍କ ବିଷୟକୁ ନେଇ ଯାହାଙ୍କ ସହିତ ପ୍ରେମ ହେଲେ ମଧ୍ୟ ତାହା ଭଗବାନ୍‌ଙ୍କ ସହିତ ପ୍ରେମସ୍ୱରୂପ ଅଟେ।

୭୫- ଶ୍ରୀଭଗବାନ୍‌ଙ୍କ ପ୍ରେମ ସମାନ ଆଉ କିଛି ନାହିଁ।

୭୬- ପ୍ରେମର ମର୍ମକୁ ଯେ ଜାଣେ, ସେ ପ୍ରେମରେ ବିକି ହୋଇଯାଏ।

୭୭- ଯେତେଦିନ ପର୍ଯ୍ୟନ୍ତ ଆମେ ଭଗବାନ୍‌ଙ୍କ ବିୟୋଗକୁ ସହି ପାରୁଛୁ, ସେପର୍ଯ୍ୟନ୍ତ ଭଗବାନ୍‌ଙ୍କ ବିୟୋଗ ହେଉଅଛି। ଯେତେବେଳେ ଆମେ ଭଗବାନ୍‌ଙ୍କ ବିୟୋଗରେ ଗୋପୀମାନଙ୍କ ପରି ବିହ୍ୱଳ ହୋଇଯିବା, ସେତେବେଳେ ଭଗବାନ୍‌ଙ୍କୁ ଶୀଘ୍ର ଆସିବାକୁ ପଡିବ।

୭୮- ପ୍ରେମୀଭକ୍ତ କେବେହେଲେ ଭଗବାନ୍‌ଙ୍କୁ ଦର୍ଶନ ଦେବାକୁ ପ୍ରାର୍ଥନା କରେ ନାହିଁ, କାରଣ ସେ ଜାଣେ ଯେ ଭଗବାନ୍ ଅନ୍ତର୍ଯ୍ୟାମୀ। ସେ ମର୍ମକୁ ବୁଝନ୍ତି ଏବଂ ସେ ପ୍ରେମର ଅଧୀନ। ପୁଣି ଭକ୍ତ କାହିଁକି ତୋଷାମଦ କରିବ ?

୭୯- ଶ୍ରୀପରମାତ୍ମାଙ୍କ ସହିତ ମିଳିବାପାଇଁ ତୀବ୍ର ଇଚ୍ଛାରେ ହିଁ ପ୍ରେମ ବଢିପାରେ।

୮୦- ଶ୍ରୀପରମାତ୍ମାଙ୍କ ଆଜ୍ଞାନୁକୂଳ ଆଚରଣରେ, ତାଙ୍କ ମନ ଅନୁସାରେ ଚଳିଲେ ତାଙ୍କଠାରେ ପ୍ରେମ ହୋଇପାରେ। ଶାସ୍ତ୍ରର ଆଜ୍ଞାକୁ ମଧ୍ୟ ପରମାତ୍ମାଙ୍କ ଆଜ୍ଞା ବୋଲି ମାନିବା ଉଚିତ।

୮୧- ପ୍ରେମକୁ ଗୁପ୍ତଭାବେ ରଖିବା ଭଲ।

୮୨- ପ୍ରେମ ହେଲେ ହିଁ ଭଗବାନ୍‌ଙ୍କଠାରେ ମନ ରମଣ କରେ।

୮୩- ଯିଏ ପ୍ରେମପାଇଁ ଆତ୍ମସମର୍ପଣ କରିପାରେ, ଯିଏ ନିଜର ଶରୀର, ମନ, ଧନ ସର୍ବସ୍ୱକୁ ନିଜର ପ୍ରେମାସ୍ପଦଙ୍କ ସମ୍ପତ୍ତି ବୋଲି ବୁଝେ, ତାହାକୁ ବାସ୍ତବ ପ୍ରେମୀ ମାନିବା ଉଚିତ।

୮୪- ଯେଉଁ ବସ୍ତୁ ନିଜର ପ୍ରେମୀଙ୍କ କାମରେ ଆସେ, ତାହା ସାର୍ଥକ; ଏପରି ବୁଝିବା ଲୋକ ହିଁ ଯଥାର୍ଥ ପ୍ରେମୀ। ଏପରି ପ୍ରେମୀ ସର୍ବଥା ପୂଜନୀୟ।

୮୫- ଭଗବାନ୍‌ଙ୍କୁ କିଛି ମାଗିବା ଉଚିତ ନୁହେଁ, ପ୍ରେମ କେବଳ ପ୍ରେମପାଇଁ କରିବା ଉଚିତ।

୮୬- ସଂସାରରେ ପ୍ରେମ ବିନା ଆଉ କିଛି ନାହିଁ। ସେହି ପ୍ରେମର ମର୍ମକୁ ଜାଣିବା ପାଇଁ ପରମାତ୍ମାଙ୍କଠାରେ ମୈତ୍ରୀ କରିବା ଉଚିତ।

୮୭- ନିଜର ପ୍ରିୟତମ ମିତ୍ରଙ୍କପାଇଁ ପ୍ରାଣକୁ ମଧ୍ୟ ତୁଚ୍ଛ ବୁଝିବା ଉଚିତ। ଏପରି ପ୍ରେମୀ ଭଗବାନ୍‌ଙ୍କର ପ୍ରିୟ।

୮୮- ଭଗବାନ୍ ପ୍ରେମର ଅଧୀନ। ପ୍ରେମୀ ନିଜର ପ୍ରେମ-ରଜ୍ଜୁରେ ଭଗବାନ୍‌ଙ୍କୁ ବାନ୍ଧି ଦେଇ ପାରେ। ଭଗବାନ୍ ନିଜର ପ୍ରେମୀଙ୍କ ସଙ୍ଗ କେବେ ଛାଡନ୍ତି ନାହିଁ।

୮୯- ପାଞ୍ଚଟି କଥା ଅମୂଲ୍ୟ—ପ୍ରେମ, ଜ୍ଞାନ, ଶ୍ରଦ୍ଧା, ଉପରତି ଓ ବୈରାଗ୍ୟ। ଏସବୁ ଟଙ୍କା ଦେଇ ପାଇ ହେବ ନାହିଁ। ଏଥିମଧ୍ୟରୁ ପ୍ରେମ ପ୍ରଧାନ। ପ୍ରେମୀକୁ ସାକାର-ନିରାକାର ସ୍ୱରୂପର ପ୍ରାପ୍ତି ହୋଇପାରେ। ଜ୍ଞାନୀ ଲୋକକୁ ସଚ୍ଚିଦାନନ୍ଦଘନଙ୍କ ପ୍ରାପ୍ତି ହୁଏ।

୯୦- ବିନା ପ୍ରେମରେ ଶ୍ରୀଭଗବାନ୍‌ଙ୍କ ପ୍ରାପ୍ତି ହୋଇପାରେ ନାହିଁ, ପୁଣି ପ୍ରେମ ତତ୍ପର ନ ହେଲେ ହୁଏ ନାହିଁ। ଶ୍ରୀଭଗବାନ୍‌ଙ୍କ ଇଚ୍ଛା ଯଦି ତାଙ୍କର ଭକ୍ତି ପ୍ରଚାର କରିବା ହୁଏ, ତେବେ ଏହି ଉଦ୍ଦେଶ୍ୟ ହେବା ଉଚିତ ଯେ ଶ୍ରୀଭଗବାନ୍ ସମ୍ମତ ହୁଅନ୍ତୁ। ନିଜର ସମ୍ମାନ, ଅହଙ୍କାର, ପୂଜା, ସ୍ୱାର୍ଥ ଚାହିଁବା ଅନୁଚିତ। ଶରୀରର ଆରାମ ମଧ୍ୟ ଦେଖନ୍ତୁ ନାହିଁ।

୯୧- ଆମମାନଙ୍କର ପ୍ରେମ ବା କାହିଁ। ପ୍ରେମ ହେବା ପରେ ତ ରୋମାଞ୍ଚ ଓ ଅଶ୍ରୁପାତର ଧାରା ଚାଲେ।

୯୨- ଭଗବାନ୍‌ଙ୍କଠାରେ ପ୍ରେମ ହେବାର ଉପାୟ ହିଁ ଭଗବଦ୍‌ଭକ୍ତି। ଭଗବଦ୍‌ଭକ୍ତି ହିଁ ପ୍ରେମର ସ୍ୱରୂପ। ଭଗବାନଙ୍କଠାରେ ଯେଉଁ ଅତ୍ୟନ୍ତ ଅନୁରାଗ

ଅଛି, ତାହାର ନାମ ପ୍ରେମ ଏବଂ ସେହି ଭଗବଦ୍‌ଭକ୍ତି ଯେଉଁ ପ୍ରକାର, ତାହାକୁ ପାଳନ କରିବାଦ୍ୱାରା ଭଗବାନ୍‌ଙ୍କଠାରେ ଅନନ୍ୟ ପ୍ରେମ ହୋଇଯାଏ ।

୯୩- ମନରେ ଆତ୍ମବଳ ରଖିବା ଉଚିତ ଯେ ଗୋଟିଏ ହେଲେ ଅବଗୁଣ ଯେପରି ନ ରହେ ଅର୍ଥାତ୍ ଦୈବୀ ସମ୍ପଦର ଛବିଶଟି ଯାକ ଲକ୍ଷଣ ଆମଠାରେ ଆସିଯାଉ । ଏପରି ସ୍ଥିତି ଭଗବାନ୍‌ଙ୍କୁ ନିଷ୍କାମ ପ୍ରେମଭାବରେ ନିରନ୍ତର ଧ୍ୟାନ ସହିତ ଜପ କଲେ ଆପେ ଆପେ ପ୍ରାପ୍ତ ହୋଇଯାଏ ।

୯୪- ଭଗବାନ୍‌ଙ୍କଠାରେ ଏପରି ଲୟ ଲଗାଇ ଦେବା ଉଚିତ ଯେ ଯେପରି ଶରୀରର ଜ୍ଞାନ ମଧ୍ୟ ନ ରହେ । ଯଦି ସବୁ ସମୟରେ ଏପରି ଲାଗି ରହିପାରେ, ତେବେ ଉଦ୍ଧାର କିଛି ବଡ କଥା ନୁହେଁ ।

୯୫- ଯେ ସବୁସମୟରେ ଭଗବାନ୍‌ଙ୍କଠାରେ ମନକୁ ଲଗାଇ ରଖେ, ସେ ଅନ୍ତଃକାଳରେ ତାଙ୍କଠାରେ ମିଶିଯାଏ ।

୯୬- ମନ କେବଳ ଭଗବାନ୍‌ଙ୍କଠାରେ ମଗ୍ନ ହୋଇଯିବା ଉଚିତ ଏବଂ ଏପରି ହେବା ଉଚିତ ଯେ ମନ ତାଙ୍କରି ଆନନ୍ଦରେ ରମଣ କରିବ । ଯେପରି ତାଙ୍କ ବ୍ୟତୀତ ଆଉ କିଛି ପ୍ରତିଭାତ ନ ହେବ ।

୯୭- ଯେଉଁ ପୁରୁଷଙ୍କ ମନ ଭଗବାନ୍‌ଙ୍କଠାରେ ମଗ୍ନ ହୋଇଯାଏ, ତାଙ୍କୁ ସାରା କୁଟୁମ୍ବ ଓ ଧନ ଜଞ୍ଜାଳପରି ଜଣାପଡ଼େ । ତା'ପରେ ସେହି ଜଞ୍ଜାଳ ବଢାଉଥିବା କାମ-ଦାମ ଆପେ ଆପେ କମିଯାଏ ।

୯୮- ହରିଙ୍କ ଚରଣରେ ପ୍ରେମ ହେବାପାଇଁ ଆଠଟି କଥା ସାର—

(୧) ଯାହା କିଛି ସୁଖ-ଦୁଃଖାଦି ପ୍ରାପ୍ତ ହୁଏ, ତାହାକୁ ଭଗବାନ୍‌ଙ୍କ ଆଜ୍ଞାରୁ ପ୍ରାପ୍ତ ମନେକରି ଆନନ୍ଦର ସହିତ ସ୍ୱୀକାର କରିବା ଉଚିତ । ଏହା ଭଗବାନ୍‌ଙ୍କ ଶରଣ ଅଟେ ।

(୨) ସମସ୍ତଙ୍କୁ ଭଗବାନ୍‌ଙ୍କ ଭକ୍ତିରେ ଲଗାଇବାକୁ ଚେଷ୍ଟା କରିବା ଉଚିତ । ଏହା ଜୀବମାନଙ୍କର ପରମ ସେବା ।

(୩) ଭଗବଦ୍‌ଭକ୍ତଙ୍କ ସଙ୍ଗ କରିବା ଆବଶ୍ୟକ । ଯଦି ସେମାନଙ୍କ ସଙ୍ଗ ନ ମିଳେ, ତେବେ ତାଙ୍କର ଭକ୍ତଙ୍କ ସଙ୍ଗ ମଧ୍ୟ ଅତ୍ୟନ୍ତ ଲାଭଦାୟକ ।

(୪) ଏକାନ୍ତରେ ପରମେଶ୍ୱରଙ୍କ ଧ୍ୟାନ କରିବାପାଇଁ ଚେଷ୍ଟା କରିବା ଉଚିତ ଧ୍ୟାନ ନ ହୋଇ ପାରିଲେ ଗୀତାରୁ ଧ୍ୟାନବିଷୟକ ଶ୍ଳୋକଗୁଡିକର ଅର୍ଥକୁ ବିଗ୍ୱର କରିବା ଉଚିତ ।

(୫) ପରମେଶ୍ୱରଙ୍କ ସ୍ୱରୂପକୁ ଚିନ୍ତନ କରିବା ସହିତ ଚାଲିବା-ବୁଲିବା ପ୍ରତ୍ୟେକ କ୍ରିୟାରେ ପରମେଶ୍ୱରଙ୍କ ନାମ ଜପ କରିବାର ଅଭ୍ୟାସ ବଢ଼ାଇବା ଆବଶ୍ୟକ।

(୬) ଭଗବାନ୍‌ଙ୍କ ବ୍ୟତୀତ ଅନ୍ୟ କୌଣସି ଇଚ୍ଛା ନ କରିବା ଏବଂ କେବଳ ଭଗବାନ୍‌ଙ୍କ ସହ ମିଳିବାପାଇଁ ଉତ୍କଟ ଇଚ୍ଛା କରିବା ଉଚିତ।

(୭) ଯେଉଁ କାମ କଲେ ଭଗବାନ୍ ଖୁସୀ ହେବେ, ସେହି କାମ କରିବାକୁ ଚେଷ୍ଟା କରିବା ଅର୍ଥାତ୍ ହିଂସା-ବର୍ଜିତ ସଦାଚାର ଆଚରଣ କରିବା ଆବଶ୍ୟକ।

(୮) ନିଷ୍କାମଭାବରେ ସବୁ ଜୀବଙ୍କର ସେବା ଏବଂ ଯେଉଁ ପ୍ରକାରରେ ମନୁଷ୍ୟମାନଙ୍କର ତଥା ସବୁ ଜୀବଙ୍କର ସୁଖ ହୋଇପାରିବ, ସେପରି ଚେଷ୍ଟା କରିବା ଆବଶ୍ୟକ।

ଉପର୍ଯ୍ୟୁକ୍ତ କଥାଗୁଡ଼ିକ କାମରେ ଲଗାଇ ପାରିଲେ ଭଗବାନ୍‌ଙ୍କଠାରେ ଖୁବ୍ ଶୀଘ୍ର ପ୍ରେମ ହୋଇପାରେ। ଏଥିମଧ୍ୟରୁ ଗୋଟିଏ କଥା କାମରେ ଲଗାଇ ପାରିଲେ ମଧ୍ୟ ପରମାତ୍ମା ମିଳି ପାରିବେ। ଏହି କଥାମାନଙ୍କ ମଧ୍ୟରୁ ପ୍ରତିଟି ଲାଭଦାୟକ ଅର୍ଥାତ୍ ଆଠ ନମ୍ବରରୁ ସାତ ନମ୍ବର ଅଧିକ, ସାତରୁ ଛଅ ନମ୍ବର ଅଧିକ। ଏହି କ୍ରମରେ ବୁଝିବା ଉଚିତ।



# ପ୍ରେମ-ବିରହ-ବ୍ୟାକୁଳତା

୧- ବ୍ରଜରାଜ ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରତି ଅନନ୍ୟ ପ୍ରେମ ହେବାରେ ହିଁ ଏହି ଜୀବନର ସାର୍ଥକତା ଅଛି। ଯେଉଁ ସୌଭାଗ୍ୟବାନ୍ ବ୍ୟକ୍ତି ଏହି ଦିବ୍ୟ, ଅନନ୍ୟ ଏବଂ ବିଶୁଦ୍ଧ ପ୍ରେମ-ପୀୟୂଷକୁ ପାନ କରି ନିଏ, ତାହାର ଜନ୍ମ ସଫଳ ହୋଇଯାଏ। ତା'ର ଯୁଗ-ଯୁଗର, ଜନ୍ମ-ଜନ୍ମର ବିଷୟ-ପିପାସା ମେଣ୍ଟି ଯାଏ, ଶାନ୍ତ ହୋଇଯାଏ।

୨- ଭଗବାନ୍‌ଙ୍କ ସହ ମିଳିବାପାଇଁ ବହୁତ ଉପାୟ ମଧ୍ୟରୁ ସର୍ବୋତ୍ତମ ଉପାୟ ହେଲା "ବାସ୍ତବ ପ୍ରେମ"।

୩- ଭବତାପରେ ସନ୍ତପ୍ତ ପ୍ରାଣୀ ଭଗବଦ୍‌ପ୍ରେମର ପବିତ୍ର ମନ୍ଦାକିନୀରେ ନିମଜ୍ଜନ କରି ହିଁ ପୂର୍ଣ୍ଣ ଶାନ୍ତି ପ୍ରାପ୍ତ କରି ପାରେ। ଏହା ହିଁ ସେହି ପରମ ରସ ଯାହା ପିଇ ମନୁଷ୍ୟ ସିଦ୍ଧ, ଅମର ଓ ତୃପ୍ତ ହୋଇଯାଏ।

୪- ପରମାତ୍ମାଙ୍କ ପରି ପ୍ରେମର ସ୍ୱରୂପ ଅନିର୍ବଚନୀୟ।

୫- ପ୍ରେମ ସାଧନ ବି ଅଟେ ଏବଂ ସାଧନମାନଙ୍କର ଫଳ ମଧ୍ୟ।

୬- ଦ୍ୱୈତ-ଅଦ୍ୱୈତ ଓ ଭେଦ-ଅଭେଦଠାରୁ ପ୍ରେମର ସ୍ଥିତି ବିଲକ୍ଷଣ ଅନିର୍ବଚନୀୟ ଅଟେ।

୭- ଜଡା ସ୍ୱାଦ ବ୍ୟକ୍ତ ନ କରିପାରିବା ପରି ତାହା ବାଣୀର ବିଷୟ ନୁହେଁ ।

୮- ପ୍ରେମର ବାସ୍ତବିକ ମହତ୍ତ୍ୱ କେବଳ ପରମାତ୍ମାଙ୍କ ଅନନ୍ୟ ପ୍ରେମୀ ହିଁ ଜାଣନ୍ତି।

୯- ପ୍ରେମର ମୂଲ୍ୟ ମଧ୍ୟ କେହି ବିରଳ ଭକ୍ତ ହିଁ ଜାଣନ୍ତି।

୧୦- ବିଶୁଦ୍ଧ ପ୍ରେମରେ ଯେଉଁ ଆନନ୍ଦ ମିଳେ, ତାହାର ମହିମା ଅକଥନୀୟ ।

୧୧- ଏପରି କୌଣସି ସ୍ଥାନ ନାହିଁ, ଯେଉଁଠାରେ ପ୍ରେମ ନାହିଁ। ପ୍ରେମୀମାନଙ୍କର ପ୍ରେମ ଏବଂ ଜ୍ଞାନୀମାନଙ୍କର ଆନନ୍ଦ ସବୁ ସ୍ଥାନରେ ଅଛି।

୧୨- ପ୍ରିୟ ଓ ପ୍ରେମରେ କିଛି ଅନ୍ତର ନାହିଁ।

୧୩- ସଂସାରରେ ଏପରି କୌଣସି ପଦାର୍ଥ ନାହିଁ, ଯେଉଁଥିରେ ଆନନ୍ଦ ବ୍ୟାପ୍ତ ନ ଥିବ। ପ୍ରେମ ତାହାର ସ୍ୱରୂପ ଅଟେ। ତାହା ସବୁ ସ୍ଥାନରେ ଅଛି ।

୧୪- ପ୍ରେମ ବ୍ୟତୀତ ଅନ୍ୟ ବସ୍ତୁ ନାହିଁ। ପ୍ରେମ ହିଁ ଆନନ୍ଦ ଏବଂ ଆନନ୍ଦ ହିଁ ପ୍ରେମ।

୧୫- ଭଗବାନ୍ ସଗୁଣ-ସାକାରର ଉପାସନା କରୁଥିବା ଲୋକଙ୍କ ପାଇଁ ପ୍ରିୟତମ ହୁଅନ୍ତି ଏବଂ ନିର୍ଗୁଣ-ନିରାକାର ଉପାସନା କରୁଥିବା ଲୋକଙ୍କ ପାଇଁ ଆନନ୍ଦମୟ ହୁଅନ୍ତି।

୧୬- ପ୍ରେମର ସ୍ୱରୂପ ଅଲୌକିକ କୁହାଯାଇଛି, କାରଣ ତାହା ସଂସାରଠାରୁ ସର୍ବଥା ବିଲକ୍ଷଣ।

୧୭- ଦିବ୍ୟ, ଅନନ୍ୟ ଏବଂ ବିଶୁଦ୍ଧ ପ୍ରେମ ତ ତିନିଗୁଣରୁ ଅତୀତ ଏବଂ କାମନାରହିତ ହୋଇଥାଏ। ତାହା ପ୍ରତିକ୍ଷଣ ବଢେ। କେବେ କମେ ନାହିଁ। ତାହା ସୂକ୍ଷ୍ମରୁ ସୂକ୍ଷ୍ମତର ହୁଏ। ତାହାକୁ ବାଣୀଦ୍ୱାରା ବ୍ୟକ୍ତ କରାଯାଇ ପାରେ ନାହିଁ। ତାହା ଅନୁଭବର ବସ୍ତୁ।

୧୮- ପ୍ରେମକୁ ପାଇ ପ୍ରେମୀ ସଦା ଆନନ୍ଦରେ ମଗ୍ନ ରହେ।

୧୯- ପ୍ରେମକୁ ପାଇବା ପରେ ମନୁଷ୍ୟ କୌଣସି ବସ୍ତୁକୁ ଇଚ୍ଛା କରେ ନାହିଁ, ଶୋକ କରେ ନାହିଁ କି ଦ୍ୱେଷ କରେ ନାହିଁ, କୌଣସି ବସ୍ତୁରେ ଆସକ୍ତ ହୁଏ ନାହିଁ କି ତାର (ବିଷୟ ଭୋଗ ପ୍ରାପ୍ତିରେ ମଧ୍ୟ) ଉତ୍ସାହ ହୁଏ ନାହିଁ।

୨୦- ପ୍ରେମର ପୂର୍ଣ୍ଣତା ସେହି ଦିବ୍ୟ, ଅନନ୍ୟ ଏବଂ ବିଶୁଦ୍ଧ ପ୍ରେମରେ ହିଁ ହୁଏ, ଯେଉଁଠାରେ ପ୍ରେମୀ, ପ୍ରେମ ଓ ପ୍ରିୟତମଙ୍କ ଏକତା ହୁଏ ।

୨୧- ପ୍ରେମରେ ପ୍ରେମୀ ଓ ପ୍ରେମାସ୍ପଦଙ୍କର ନିତ୍ୟ-ଐକ୍ୟ ବା ଶାଶ୍ୱତ ସଂଯୋଗ ରହିଥାଏ ।

୨୨- ମାଧୁର୍ଯ୍ୟଭାବଠାରୁ ମଧ୍ୟ ଏହି ଅଦ୍‌ଭୁତ ପ୍ରେମଭାବ ବିଲକ୍ଷଣ ଅଟେ । ମାଧୁର୍ଯ୍ୟଭାବର ମଧ୍ୟ ଦୁଇଟି ସ୍ୱରୂପ—ସ୍ୱକୀୟାଭାବ ଏବଂ ପରକୀୟାଭାବ । ପରମଶ୍ରେଷ୍ଠ ସତୀ-ଶିରୋମଣି ପତିବ୍ରତା ନାରୀ ନିଜର ପ୍ରିୟତମ ପତିଙ୍କ ପ୍ରତି ଯେଉଁ ଭାବ ପ୍ରଦର୍ଶନ କରେ, ତାହା ସ୍ୱକୀୟାଭାବ । ତଥା ପରସ୍ତ୍ରୀର ପରପୁରୁଷଙ୍କଠାରେ ଯେଉଁ ଗୁପ୍ତ ପ୍ରେମ ହୁଏ, ସେହି ଭାବଦ୍ୱାରା ଭଗବାନ୍‌ଙ୍କ ଦିବ୍ୟ ସ୍ୱରୂପରେ ଯେଉଁ ଉଚ୍ଚଶ୍ରେଣୀର ପ୍ରେମ ହୁଏ, ତାହାକୁ ପରକୀୟାଭାବ କହନ୍ତି । ସେହି ଅନନ୍ୟପ୍ରେମୀ ଏହି ସବୁ ଭାବମାନଙ୍କ ଊର୍ଦ୍ଧ୍ୱକୁ ଉଠିଯାଏ ।

୨୩- ଦିବ୍ୟ ପ୍ରେମରେ ବଡ ଛୋଟର କୌଣସି ଶ୍ରେଣୀ ନାହିଁ । ସେଠାରେ ସମସ୍ତେ ସମାନ ।

୨୪- ଅନନ୍ୟ ଓ ବିଶୁଦ୍ଧ ପ୍ରେମରେ ଗୁଣ ଓ ପ୍ରଭାବର ବିସ୍ମୃତି ଘଟିଥାଏ, ସ୍ମୃତି ହେଲେ ମଧ୍ୟ ତାହାର କିଛି ମୂଲ୍ୟ ନାହିଁ । ସେଠାରେ ତ ଦୁହିଁଙ୍କର ଅନିର୍ବଚନୀୟ ଐକ୍ୟ ଥାଏ । ସେଠାରେ ସର୍ବଶକ୍ତିମାନ୍ ଏବଂ ସର୍ବାନ୍ତର୍ଯ୍ୟାମୀ କହି ସ୍ତୁତି କରାଯାଏ ନାହିଁ । ସ୍ତୁତିର ଅବସ୍ଥା ବହୁପୂର୍ବରୁ ସମାପ୍ତ ହୋଇଯାଏ । ଏବେ କିଏ ସର୍ବଶକ୍ତିମାନ୍ ଓ କେଉଁଠାରେ ସର୍ବେଶ୍ୱର । ଦୁହେଁ ଏକ, ସମାନ, ଦୁହେଁ ଦୁହିଁଙ୍କ ପ୍ରେମୀ ଏବଂ ପ୍ରିୟତମ । ଏମାନଙ୍କ ମଧ୍ୟରେ ପରସ୍ପର ହେତୁରହିତ ସହଜ ପ୍ରେମ ହୁଏ ।

୨୫- ପ୍ରେମ, ପ୍ରେମୀ ଏବଂ ପ୍ରେମାସ୍ପଦ ମଧ୍ୟରେ ଭେଦ ରହେ ନାହିଁ । ଭକ୍ତି, ଭକ୍ତ ଓ ଭଗବାନ୍—ସବୁ ଏକ ହୋଇଯାନ୍ତି ।

୨୬- ପ୍ରେମ, ପ୍ରେମୀ ଓ ପ୍ରେମପାତ୍ର—ଏମାନେ ଦେଖିବାକୁ ତିନିଟି ହେଲେ ମଧ୍ୟ ବାସ୍ତବରେ ଏକ । ଏମାନଙ୍କ ତତ୍ତ୍ୱ ସମସ୍ତେ ବୁଝି ପାରନ୍ତି ନାହିଁ । ଏମାନଙ୍କୁ ଏକରୂପ ବୋଲି ଜାଣିବା ଉଚିତ ।

୨୭- ଏହି ଦିବ୍ୟ ପ୍ରେମର ଅନୁଭୂତି ବିଲକ୍ଷଣ । ଏଠାରେ ଦ୍ୱୈତ ନାହିଁ କି ଅଦ୍ୱୈତ ନାହିଁ । ଦୁହିଁଙ୍କର ବିଲକ୍ଷଣ ସ୍ଥିତି ରହିଛି । ପ୍ରେମୀ ଏବଂ ପ୍ରିୟତମଙ୍କର ନିତ୍ୟ-ନୂତନ ପ୍ରେମ ଉତ୍ତରୋତ୍ତର ବଢେ ।

୨୮- ପ୍ରେମର ଦିବ୍ୟଭାବକୁ ବାଣୀଦ୍ୱାରା ବ୍ୟକ୍ତ କରିବା ଅସମ୍ଭବ । ସେ ସ୍ଥିତିରେ ପ୍ରେମ ବ୍ୟତୀତ କିଛି ରହେ ନାହିଁ । ଏହି ପ୍ରେମୀମାନଙ୍କର ମିଳନ ମଧ୍ୟ

ବଡ ବିଲକ୍ଷଣ ବା ଅତ୍ୟନ୍ତ ଅଲୌକିକ ହୁଏ। ପ୍ରେମରେ ଦ୍ୱୈତ ହେଲେ ମଧ୍ୟ ଅଦ୍ୱୈତ ଏବଂ ଅଦ୍ୱୈତ ହେଲେ ମଧ୍ୟ ଦ୍ୱୈତ। ଆମର ଦୁଇହାତ ପରସ୍ପର ମିଳି ଯୋଡି ହୋଇ ଏକ ହୋଇଯାଏ, ସେହି ସମୟରେ ଦୁଇହାତ ହେଲେ ମଧ୍ୟ ଏକ ଏବଂ ଏକ ହେଲେ ମଧ୍ୟ ଦୁଇ। ଏହିପ୍ରକାର ପ୍ରେମରେ ଭେଦ ନାହିଁ କି ଅଭେଦ ନାହିଁ।

୨୯- ଯେଉଁଠି ପୂର୍ଣ୍ଣରୂପରେ ପ୍ରେମ ଥାଏ, ସେଠାରେ ଆଦର-ସତ୍କାର ତ ଏକ ବିଘ୍ନସ୍ୱରୂପ। କ'ଣ କେହି ନିଜେ ନିଜର ଆଦର କରେ?

୩୦- ମୁକ୍ତି ତ ଭଗବତ୍‌ପ୍ରେମର ପାସଙ୍ଗ ମାତ୍ର, ସେହି ପ୍ରେମଧନକୁ ଛାଡ଼ି ସାମାନ୍ୟ ପାସଙ୍ଗକୁ ଇଚ୍ଛା କରିବା ଅତ୍ୟନ୍ତ ଲଜ୍ଜାର କଥା।

୩୧- ପ୍ରେମରେ ସ୍ୱାର୍ଥର ଗନ୍ଧ ମଧ୍ୟ ରହିବା ଅନୁଚିତ।

୩୨- ସ୍ୱାର୍ଥର ଭାବନା ନିଷ୍କାମ ପ୍ରେମପାଇଁ କଳଙ୍କସ୍ୱରୂପ।

୩୩- ଯେଉଁଠାରେ ସ୍ୱାର୍ଥର ଭାବ ଆସେ, ସେଠାରେ ପ୍ରେମ ତୁଟିବା ଆରମ୍ଭ ହୁଏ।

୩୪- ପ୍ରଭୁଙ୍କ ପ୍ରସନ୍ନତାରେ ପ୍ରସନ୍ନ ରହିବା ଉଚିତ, ତାଙ୍କଦ୍ୱାରା ନିଜର ତୋଷାମଦ କରାଇବାର ଇଚ୍ଛା ରଖିବା ମଧ୍ୟ ଏକପ୍ରକାର ସ୍ୱାର୍ଥ ଅଟେ।

୩୫- ସ୍ୱାର୍ଥ ଏବଂ ଅହଙ୍କାର—ଏ ଦୁହେଁ ପ୍ରେମମାର୍ଗରେ ବଡ ପ୍ରତିବନ୍ଧକ ।

୩୬- ହେତୁ ବା କାମନା ହିଁ ପ୍ରେମର ଦୂଷଣ।

୩୭- ନିଷ୍କାମ ପ୍ରେମରେ କାମନାର ଗନ୍ଧ ମଧ୍ୟ ନାହିଁ।

୩୮- ଭଗବତ୍‌ପ୍ରେମ ଯଦି କୌଣସି କାମନାରେ କରାଯାଏ, ତେବେ ତାହା ସକାମ ହୋଇଯାଏ। ସକାମ ପ୍ରେମରେ ଦିବ୍ୟତା, ଅନନ୍ୟତା ଏବଂ ବିଶୁଦ୍ଧତାର ଅଭାବ ହୁଏ।

୩୯- ସଂସାରର ଚିନ୍ତା ପ୍ରେମୀଙ୍କୁ ସ୍ପର୍ଶ କରିପାରେ ନାହିଁ, ତାହାଙ୍କ ଦୃଷ୍ଟିରେ ପ୍ରେମ ବ୍ୟତୀତ ଆଉ କିଛି ରହି ଯାଏ ନାହିଁ।

୪୦- ଲୌକିକ ପ୍ରେମ ଭୋଗ-କାମନା ଓ ଦୁର୍ବାସନାଗୁଡ଼ିକରେ ଜଡିତ ହେବା କାରଣରୁ ଶୁଦ୍ଧ ନୁହେଁ।

୪୧- ଯେଉଁଠାରେ ବାସନାର ଆଧିପତ୍ୟ ଅଛି, ସେଠାରେ ପ୍ରେମ ନାହିଁ, ଆସକ୍ତିମୂଳକ ମୋହ ଅଛି।

୪୨- ଲୌକିକ ପ୍ରେମର ଆଲମ୍ବନ କ୍ଷଣିକ ଏବଂ ନାଶବାନ୍, ଏଣୁ ତାହା ଭଗବତ୍‌ପ୍ରେମ ତୁଳନାରେ ହେୟ।

୪୩- ପରମେଶ୍ୱରଙ୍କୁ ପ୍ରେମ କରିବାର ହେତୁ କେବଳ ପରମେଶ୍ୱର ବା ତାଙ୍କରି ପ୍ରେମ ହେଉ । ପ୍ରେମପାଇଁ କେବଳ ପ୍ରେମ କରାଯାଉ, ଅନ୍ୟ କୌଣସି ହେତୁ ନ ରହୁ ।

୪୪- ଭଗବାନ୍‌ଙ୍କ ସଙ୍ଗରେ ଯେକୌଣସି ଭାବକୁ ନେଇ ପ୍ରେମ କରାଗଲେ ମଧ୍ୟ ତାହା ଆଦର୍ଶ ହୁଏ ।

୪୫- ଭଗବତ୍‌ପ୍ରାପ୍ତି ପାଇଁ ଯଦି କାହାରି ସହିତ ବି ପ୍ରେମ କରାଯାଏ, ତେବେ ତାହା ଭଗବାନ୍‌ଙ୍କପାଇଁ ବୋଲି ମନେ କରାଯିବ ।

୪୬- ଦୁଇ ଜଣ ପ୍ରେମୀ ପରସ୍ପରକୁ ଭେଟିବା ବେଳେ ଏକ ଅପୂର୍ବ ଆନନ୍ଦର ବନ୍ୟା ଆସିଯାଏ । ଏପରି ପ୍ରେମ ସମ୍ମେଳନକୁ ଦେଖି ପ୍ରଭୁ ମଧ୍ୟ ତାଙ୍କରି ହାତରେ ବିକି ହୋଇଯାନ୍ତି ।

୪୭- ସମସ୍ତଙ୍କୁ ସାକ୍ଷାତ୍ ଭଗବାନ୍‌ଙ୍କ ସ୍ୱରୂପ ବୁଝି ହିଁ ତାଙ୍କ ସହିତ ପ୍ରେମ କରିବା ହିଁ ପରମ ପବିତ୍ର ପ୍ରେମ ।

୪୮- ଅହଙ୍କାର, ଅଭିମାନ, ମମତା, ଆସକ୍ତି ଆଦି ଦୋଷ ନେଇ ଅଥବା ବ୍ୟକ୍ତିଗତ ସ୍ୱାର୍ଥବଶତଃ ଯେଉଁ ପ୍ରେମ କରାଯାଏ, ତାହା ଦୂଷିତ ପ୍ରେମ ।

୪୯- କ୍ଷଣଭଙ୍ଗୁର, ନାଶବାନ୍, ଦୃଶ୍ୟ ପଦାର୍ଥମାନଙ୍କୁ ସତ୍ୟ ବୋଲି ମାନି ତାହା ସମ୍ବନ୍ଧରେ ହେଉଥିବା ଭ୍ରମରୂପକ ସୁଖକୁ ସୁଖ ବୋଲି ମନେକରି ସେଥିରେ ପ୍ରେମ କରିବା ଅଜ୍ଞାନପୂର୍ଣ୍ଣ ପ୍ରେମ ଅଟେ ।

୫୦- ଭଗବାନ୍‌ଙ୍କଠାରେ ଯେତିକି ପ୍ରେମ ବଢି ବଢି ଯିବ, ଭଗବାନ୍‌ଙ୍କ ବିଷୟରେ ସେତିକି ସେତିକି ଜ୍ଞାନ ହେଉଥିବ, ସାଂସାରିକ ବିଷୟମାନଙ୍କରେ ସେତିକି ବୈରାଗ୍ୟ ହୋଇ ସେଥିରେ ସ୍ୱତଃ କମ୍ ଆନନ୍ଦ ପ୍ରତୀତ ହେବାକୁ ଲାଗିବ । ଧୀରେ ଧୀରେ ଭଗବାନ୍‌ଙ୍କ ପ୍ରେମର ଆନନ୍ଦ ବଢିବ ଏବଂ ପୁଣି ତାହା ତୁଳନାରେ ତ୍ରିଲୋକର ଆନନ୍ଦ ତୁଚ୍ଛ ବୋଲି ପ୍ରତୀତ ହେବ ।

୫୧- ଯେତିକି ଯେତିକି ଭଗବାନ୍‌ଙ୍କ ପ୍ରେମ ବଢିବ, ସେତିକି ସେତିକି ବିଷୟମାନଙ୍କରୁ ଆନନ୍ଦ କମ୍ ହୋଇଯିବ । ଏହାହିଁ ପ୍ରେମର ପରୀକ୍ଷା ।

୫୨- ଭଗବାନ୍‌ଙ୍କ ଆଡୁ ବିଷୟମାନଙ୍କରେ ପ୍ରଲୋଭନ ମିଳିଲେ ମନରେ ପଶ୍ଚାତ୍ତାପ ହୋଇ ଏହି ଭାବ ଉଦୟ ହେବା ଆବଶ୍ୟକ ଯେ "ଅବଶ୍ୟ ମୋ ପ୍ରେମରେ କୌଣସି ଦୋଷ ଅଛି; ମୋ ମନରେ ପ୍ରକୃତ ବିଶୁଦ୍ଧ ଭାବ ଥିଲେ ଏବଂ ଏହି ସ୍ୱାର୍ଥ କଥାକୁ ଶୁଣି ଯଥାର୍ଥରେ ମୋତେ କଷ୍ଟ ହେଉଥିଲେ ତ ଭଗବାନ୍ ଏସବୁ ପାଇଁ ମୋତେ ଲୋଭ ଦେଖାନ୍ତେ ନାହିଁ ।"

୫୩- ବିନୟ, ଅନୁରୋଧ ଏବଂ ଭୟ ଦେଖାଇବା ପରେ ମଧ୍ୟ ପରମାତ୍ମାଙ୍କ ପ୍ରେମ ବ୍ୟତୀତ କୌଣସି ବି ଅବସ୍ଥାରେ ଅନ୍ୟ ବସ୍ତୁ ସ୍ୱୀକାର କରିବ ନାହିଁ, ନିଜ ପ୍ରେମ-ଶକ୍ତି ଉପରେ ଅଟଳ ରହିବ। ଏପରି ବୁଝିବ ଯେ ଭଗବାନ୍ ଯେପର୍ଯ୍ୟନ୍ତ ନାନାପ୍ରକାର ବିଷୟ ପ୍ରଲୋଭନ ଦେଖାଇ ମୋତେ ପ୍ରଲୋଭିତ କରୁଛନ୍ତି ଏବଂ ମୋର ପରୀକ୍ଷା ନେଉଛନ୍ତି, ସେପର୍ଯ୍ୟନ୍ତ ମୋଠାରେ ଅବଶ୍ୟ ବିଷୟାସକ୍ତି ରହିଛି। ପ୍ରକୃତ ପ୍ରେମ ହେଲେ ତ ଏକ ପ୍ରେମାସ୍ପଦଙ୍କୁ ଛାଡି ଅନ୍ୟ କଥା ଶୁଣିବାକୁ ମିଳନ୍ତା ନାହିଁ।

୫୪- ବିଷୟମାନଙ୍କୁ ଦେଖୁଛି, ଶୁଣୁଛି ଏବଂ ସହନ କରୁଛି, ଏଥିରୁ ଏହା ସିଦ୍ଧ ହେଉଛି ଯେ ମୁଁ ପ୍ରକୃତ ପ୍ରେମର ଅଧିକାରୀ ନୁହେଁ। ତେଣୁ ତ ମୋତେ ଭଗବାନ୍ ଲୋଭ ଦେଖାଉଛନ୍ତି। ମୁଁ ବିଷୟମାନଙ୍କ ଚର୍ଚ୍ଚା ଶୁଣି ଯଦି ମୂର୍ଚ୍ଛିତ ହୋଇ ପଡିଯାଇଥାନ୍ତି, ତେବେ ତାହା ଉତ୍ତମ ହୋଇଥାନ୍ତା। ଏପରି ଅବସ୍ଥା ହୋଇ ନାହିଁ, ଏଣୁ ନିଃସନ୍ଦେହରେ ମୋ ହୃଦୟରେ କେଉଁଠି-ନା-କେଉଁଠି ବିଷୟ ବାସନା ଛପି ରହିଛି। ଏହା ହେଲା ବିଶୁଦ୍ଧ ପ୍ରେମର ଉଚ୍ଚ ସାଧନାର ସ୍ୱରୂପ।

୫୫- ସର୍ବସ୍ୱ ସମର୍ପଣ କରିବା ପରେ ଯେବେ ଗୋଟିଏ ରତି ମଧ୍ୟ ପ୍ରେମ ମିଳେ, ତେବେ ତ ସର୍ବସ୍ୱ ଦେଇ ଦେବା ଉଚିତ। ସଚ୍ଚା ପ୍ରେମୀ ହିଁ ଏପରି କରେ।

୫୬- ସଚ୍ଚା ପ୍ରେମୀ ମସ୍ତକକୁ ବାଜି ଲଗାଇ ହିଁ ପ୍ରଭୁଙ୍କ ପ୍ରେମ ପ୍ରାପ୍ତ କରନ୍ତି ।

୫୭- ସଂସାରରେ ଏପରି କୌଣସି ବସ୍ତୁ ନାହିଁ, ଯାହା ପ୍ରେମ ବଦଳରେ ଦିଆଯାଇ ନ ପାରେ। ଶରୀର, ମନ, ଧନ, ପ୍ରାଣ ସବୁ ଏହାପାଇଁ ସମର୍ପଣ କରାଯାଇ ପାରେ।

୫୮- ପ୍ରେମର ଉତ୍ପତ୍ତି ସେବାଦ୍ୱାରା ହୁଏ। ଭଗବତ୍‌ପ୍ରେମର ପ୍ରାପ୍ତି ମଧ୍ୟ ସେବା ଓ ଭକ୍ତିଦ୍ୱାରା ହୁଏ।

୫୯- ସେବାଠାରୁ ଭକ୍ତିର ସ୍ଥାନ ଉଚ୍ଚରେ। ସେବା ତ ବିଭିନ୍ନ ପ୍ରକାର ହୋଇପାରେ, କିନ୍ତୁ ଭକ୍ତି ବିଭିନ୍ନ ପ୍ରକାର ହୋଇପାରେ ନାହିଁ। ଭକ୍ତିରେ ସେବା ମଧ୍ୟ ରହେ, କିନ୍ତୁ ସଙ୍ଗରେ ଶ୍ରଦ୍ଧା ଏବଂ ପ୍ରେମର ମଧ୍ୟ ସମାବେଶ ରହେ, ପ୍ରେମର ମହତ୍ତ୍ୱ ଭକ୍ତିଠାରୁ ଅଧିକ।

୬୦- ପ୍ରେମ କିଣିବା ପାଇଁ ଭଗବାନ୍‌ଙ୍କ ନାମ ହିଁ ମୂଳପାଣ୍ଠି। ତେଣୁ ନିରନ୍ତର ନାମଜପର ଅଭ୍ୟାସ କରିବା ଉଚିତ।

୬୧- ଯେ ପ୍ରେମ ପ୍ରାପ୍ତ କରିବାକୁ ଚାହାନ୍ତି, ସେ ଦୁଇଟି କଥାକୁ ଭୁଲିଯିବା ଉଚିତ–ଅନ୍ୟ ପ୍ରତି କରାଯାଇଥିବା ଉପକାର ଏବଂ ଅନ୍ୟଦ୍ୱାରା କରାଯାଇଥିବା ନିଜର ଅପକାର। ଦୁଇଟି କଥା କେବେ ଭୁଲିବା ଉଚିତ ନୁହେଁ—

୧. ଆମ ପ୍ରତି କରାଯାଇଥିବା ଅନ୍ୟର ଉପକାର ଏବଂ

୨. ନିଜ ଦ୍ୱାରା କରାଯାଇଥିବା ଅନ୍ୟର ଅପକାର।

୬୨- ପ୍ରେମର ବୃଦ୍ଧିପାଇଁ ମନ, ବାଣୀ ଓ ବ୍ୟବହାରରେ ନିଷ୍କାମଭାବ ତଥା ଅହିଂସା ଏବଂ ନିରହଂକାରିତା ହେବା ବହୁତ ଆବଶ୍ୟକ। ଯେଉଁଠାରେ ସ୍ୱାର୍ଥ ଓ ଅହଙ୍କାର ଥାଏ, ସେଠାରେ ପ୍ରେମ ରହିପାରେ ନାହିଁ।

୬୩- ଯେତେବେଳେ ସତ୍‌ସଙ୍ଗ, ଭଜନ, ଚିନ୍ତନ, ନିର୍ମଳତା, ବୈରାଗ୍ୟ, ଉପରତି, ଉତ୍କଟ ଇଚ୍ଛା ଏବଂ ପରମେଶ୍ୱରଙ୍କ-ବିଷୟକ ବ୍ୟାକୁଳତା କ୍ରମଶଃ ହୁଏ, ତେବେ ଭଗବାନ୍‌ଙ୍କଠାରେ ପ୍ରକୃତ ବିଶୁଦ୍ଧ ପ୍ରେମ ହୁଏ।

୬୪- ଯାହା ଚାହିଁବାଦ୍ୱାରା ଭଗବାନ୍ ପ୍ରକଟ ହୋଇ ଯାଆନ୍ତି, ସେହି ଚାହିଁବାକୁ ପ୍ରକୃତ ଚାହିଁବା ବୁଝିବା ଉଚିତ। ଭଗବାନ୍ ନ ଆସିବା ପର୍ଯ୍ୟନ୍ତ ଏହି ଚାହିଁବାକୁ ବଢାଇବା ଉଚିତ। ମାଠିଆ ପୂର୍ଣ୍ଣ ହୋଇଗଲେ ପାଣି ଆପେ ଆପେ ବାହାରକୁ ବାହାରି ପଡିବ।

୬୫- ସେହି ଚାହିଁବା କିପରି ହେବା ଉଚିତ, ତାହା ପ୍ରଭୁ ହିଁ ଜାଣନ୍ତି।

୬୬- ପ୍ରଭୁଙ୍କଠାରୁ ଆମର ବିଚ୍ଛେଦ ଏଥିପାଇଁ ହେଉଛି ଯେ ତାଙ୍କର ବିୟୋଗରେ ଆମର ବ୍ୟାକୁଳତା ହେଉ ନାହିଁ। ଯେବେ ତାଙ୍କର ବିୟୋଗକୁ ସହିବାକୁ ଆମେ ପ୍ରସ୍ତୁତ ଏବଂ ତାଙ୍କ ବିୟୋଗରେ କେବେ ଆମ ମନରେ ବ୍ୟାକୁଳତା ଦୁଃଖ ହୁଏ ନାହିଁ, ତେବେ ପ୍ରଭୁଙ୍କର କ'ଣ ଗରଜ ପଡ଼ିଛି ?

୬୭- ଉପରୁ ଉପରୁ ଆମେ ଭଗବାନ୍‌ଙ୍କ ଦର୍ଶନପାଇଁ ଲାଳାୟିତ ପରି ଦେଖାଯାଉ, କିନ୍ତୁ ଭିତରେ ଭିତରେ ତାଙ୍କୁ ପାଇବା ପାଇଁ ଲାଳସା କାହିଁ ? ମୁହଁରେ ଆମେ ଅବଶ୍ୟ କହୁଁ ନାହୁଁ ଯେ ଏବେ ଦର୍ଶନ ନ ଦିଅନ୍ତୁ, ପରନ୍ତୁ ଆମର କ୍ରିୟାରୁ ଏହା ସିଦ୍ଧ ହୋଇଯାଉଛି । ପ୍ରଭୁଙ୍କୁ ପ୍ରକଟ ହେବାରେ ବିଳମ୍ବ ସହିବା ହିଁ ତାଙ୍କୁ ଅଟକେଇବା।

୬୮- ଖୁସୀରେ ଆମେ ତାଙ୍କ ବିନା ବଞ୍ଚି ରହିଛୁ। ଏ ପରିପ୍ରେକ୍ଷୀରେ ସେ ଯଦି ନ ଆସିବେ, ତେବେ ଏଥିରେ ତାଙ୍କର କ'ଣ ଦୋଷ? ପ୍ରକଟ ହେବା ପାଇଁ ସେ ପ୍ରସ୍ତୁତ, କିନ୍ତୁ ଯେପର୍ଯ୍ୟନ୍ତ ଆମ ଭିତରେ ଉତ୍ସୁକତା ହୋଇନାହିଁ, ତେବେ ସେ କିପରି ଆସିବେ? ତାଙ୍କ ଦର୍ଶନ ପାଇବା ପାଇଁ ଆବଶ୍ୟକ ପ୍ରବଳ ଉତ୍କଣ୍ଠା।

୬୯- ତାଙ୍କୁ ଏପରି ବ୍ୟାକୁଳ କରିଦେବା ଉଚିତ ଯେ ଆମ ବିନା ସେ କ୍ଷଣେ ରହି ପାରିବେ ନାହିଁ। ପୁଣି ତାଙ୍କୁ ହାର ମାନିବାକୁ ପଡିବ, ଆସିବାପାଇଁ ବାଧ୍ୟ ହେବାକୁ ପଡିବ। ଆମେ ଏପରି ବ୍ୟବସ୍ଥା କରିଦେବା ଉଚିତ, ପ୍ରେମରେ ତାଙ୍କୁ ମୋହିତ କରିଦେବା ଉଚିତ। ପୁଣି ତ ଧକ୍କା ଦେଲେ ମଧ୍ୟ ସେ ଯିବେ ନାହିଁ।

୭୦- ପ୍ରେମୀଙ୍କ ବିରହରେ ଯେଉଁଠି ପ୍ରାଣ ବ୍ୟାକୁଳ ହୋଇ ଉଠେ, ସେଠାରେ ପ୍ରେମର ପରାକାଷ୍ଠା ବୋଲି ବୁଝିବା ଉଚିତ। ଜଳ ବିହୁନେ ମାଛ ଛଟପଟ ହୁଏ, ଏହି ଛଟପଟ ହେବା ଉଚ୍ଚ ଶ୍ରେଣୀର ପ୍ରେମ।

୭୧- ଯଦି ଆମ ଭିତରେ ତୀବ୍ର ବ୍ୟାକୁଳତା ଥାଆନ୍ତା ଏବଂ ସେଥିରେ ମଧ୍ୟ ସେ ନ ଆସିଥାନ୍ତେ, ତେବେ ଆମକୁ କହିବାପାଇଁ ସୁଯୋଗ ଥାଆନ୍ତା।

୭୨- ଯିଏ ହରିଙ୍କପାଇଁ ଯେତିକି ଲାଳାୟିତ, ହରି ମଧ୍ୟ ତା ପାଇଁ ସେତିକି ଲାଳାୟିତ।

୭୩- ପ୍ରଭୁ ତ ଏହି କଥା ପାଇଁ ସର୍ବଦା ଉତ୍ସୁକ ରହନ୍ତି ଯେ କୌଣସି ରାସ୍ତା ମିଳିଲେ ମୁଁ ପ୍ରକଟ ହୋଇଯିବି। କିନ୍ତୁ ଆମେ ତାଙ୍କୁ ପ୍ରକଟ ହେବାରେ ପ୍ରତିବନ୍ଧକ ଅଟୁଁ।

୭୪- ଭଗବାନ୍‌ଙ୍କ ପ୍ରକଟ ହେବାରେ ଯେଉଁ ବିଳମ୍ବ ହେଉଛି, ତାହାର ମୁଖ୍ୟ କାରଣ ଆମର ନିଷ୍ଠାର ଅଭାବ। ପ୍ରଭୁ ତ ପ୍ରେମ ଓ ଦୟାର ମୂର୍ତ୍ତି। ପୁଣି ସେ ଆସିବାରେ ବିଳମ୍ବ କାହିଁକି କରିବେ?

୭୫- ସୀତାଙ୍କର ଯେପରି ଉତ୍କଟ ପ୍ରେମ ରାମଚନ୍ଦ୍ରଙ୍କଠାରେ ଥିଲା, ସେପରି ପ୍ରେମ ଯଦି ଆମର ପ୍ରଭୁଙ୍କ ପ୍ରତି ହୋଇଯାଏ, ତେବେ ପ୍ରଭୁ ଆମ ପାଇଁ ମଧ୍ୟ ପ୍ରସ୍ତୁତ।

୭୬- ମହାତ୍ମାମାନଙ୍କର ଆଜ୍ଞାରେ ତତ୍ପର ହୋଇଥିବା ରାଜା ମୟୂରଧ୍ୱଜଙ୍କ ପରି ଉପଯୁକ୍ତ ଅବସର ହେଲେ ନିଜ ପୁତ୍ରର ମସ୍ତକ ଚିରିଦେବାରେ ବିଚଳିତ ହେଉ ନ ଥିବା ପ୍ରେମୀ ଭକ୍ତକୁ ଭଗବାନ୍ ପ୍ରତ୍ୟକ୍ଷ ଦର୍ଶନ ଦେଇ ପାରନ୍ତି।

୭୭- ଋଷିକୁମାର ସୁତୀକ୍ଷ୍ଣପରି ପ୍ରେମୋନ୍ମତ୍ତ ହୋଇ ବିଚରଣ କଲେ ଭଗବାନ୍ ମିଳି ପାରନ୍ତି।

୭୮- କୁମାର ଭରତଙ୍କ ପରି ଶ୍ରୀରାମ-ଦର୍ଶନପାଇଁ ପ୍ରେମରେ ବିହ୍ୱଳ ହେଲେ ଭଗବାନ୍ ପ୍ରତ୍ୟକ୍ଷ ମିଳି ପାରନ୍ତି।

୭୯- ଗୋପୀମାନଙ୍କର ପ୍ରେମକୁ ଦେଖି ଜ୍ଞାନ ଓ ଯୋଗ ଅଭିମାନକୁ

ତ୍ୟାଗ କରୁଥିବା ଉଦ୍ଧବଙ୍କ ପରି ପ୍ରେମରେ ବିହ୍ୱଳ ହେଲେ ଭଗବାନ୍ ମିଳିପାରିବେ ।

୮୦- ଯେତେବେଳେ ପ୍ରେମ ହୋଇଯାଏ, ସେତେବେଳେ ଭଗବାନ୍ ମୂର୍ତ୍ତିମାନ୍ ହୋଇ ପ୍ରକଟ ହୁଅନ୍ତି ।

୮୧- ପ୍ରେମମୂର୍ତ୍ତି ପରମେଶ୍ୱର ସବୁ କାଳରେ ତଥା ସବୁ ଦେଶରେ ଏବଂ ସବୁ ମନୁଷ୍ୟଙ୍କଠାରେ ଭକ୍ତିବଶ ହୋଇ ପ୍ରତ୍ୟକ୍ଷ ଦର୍ଶନ ଦିଅନ୍ତି ।

୮୨- ଯିଏ ପ୍ରେମରେ ତାହାଙ୍କୁ ଉପାସନା କରେ, ସେହି ଭାଗ୍ୟବାନ୍ ବହୁତ ଶୀଘ୍ର ସେହି ପ୍ରେମମୟଙ୍କ ପ୍ରେମପୂର୍ଣ୍ଣ ବଦନାରବିନ୍ଦକୁ ଦର୍ଶନ କରି କୃତାର୍ଥ ହୁଏ ।

୮୩- ଭଗବାନ୍‌ଙ୍କଠାରେ ବାସ୍ତବପ୍ରେମ ହେବାରେ ତଥା ଦୁଇ ମିତ୍ରଙ୍କର ମିଳନ ପରି ଭଗବାନ୍‌ଙ୍କର ମନମୋହିନୀ ମୂର୍ତ୍ତିର ପ୍ରତ୍ୟକ୍ଷ ଦର୍ଶନ ମିଳିବାରେ ବିଶ୍ୱାସ ହିଁ ମୂଳ କାରଣ ।

୮୪- ପ୍ରେମ ହିଁ ତାଙ୍କର ମହିମାମୟ ମୂର୍ତ୍ତି । ଏଣୁ ପ୍ରେମୀ ପୁରୁଷ ହିଁ ତାଙ୍କୁ ଚିହ୍ନି ପାରେ ।

୮୫- ସେହି ପ୍ରେମତତ୍ତ୍ୱଜ୍ଞ ପ୍ରିୟତମ ସ୍ୱୟଂ ନ ମିଳି ରହିପାରିବେ ନାହିଁ । ତାଙ୍କର ଆବଶ୍ୟକତା ହେଲେ ସେ ସ୍ୱୟଂ ଆସିବେ । ଭକ୍ତ କାହିଁକି ମିଶିବାକୁ ବ୍ୟସ୍ତ ହେବ?

୮୬- ପ୍ରଭୁ ତ ପ୍ରେମର ଲୋଭୀ । ପ୍ରେମ ହେଲେ ଆପଣାଛାଏଁ ଦୌଡ଼ି ଆସିବେ, ନ ହେଲେ ଡାକିଲେ ମଧ୍ୟ ଆସିବେ ନାହିଁ । ଏଣୁ ନିଷ୍କାମପ୍ରେମୀ କେବେ ଭଗବାନ୍‌ଙ୍କୁ ଡାକନ୍ତି ନାହିଁ ।

୮୭- ପ୍ରେମ ବିନା ଭଗବାନ୍‌ଙ୍କ କାମ ଚଳେ ନାହିଁ, ତାଙ୍କର ସବୁ କଳ-କାରଖାନା ବନ୍ଦ ହୋଇଯାଏ ।

୮୮- ବାସ୍ତବରେ ଭଗବାନ୍‌ଙ୍କୁ ଦର୍ଶନ ଦେବା ପାଇଁ ଡାକିବାକୁ ପଡେ ନାହିଁ କି ବାଧା ଦେବାକୁ ପଡେ ନାହିଁ । କୌଣସି କାମନା ବା ହେତୁ ବ୍ୟତୀତ ଭଗବାନ୍‌ଙ୍କଠାରେ ପ୍ରେମ ବଢାଇବା ଆବଶ୍ୟକ ।

୮୯- ଅହଙ୍କାରଠାରୁ ଦୂରରେ ରହି ସଂଯୋଗ-ବିଯୋଗ ଚିନ୍ତାରେ ଅଟଳ ରହି ଉତ୍ତରୋତ୍ତର ପ୍ରେମ ବଢାଇବା ଉଚିତ—ଏଥିପାଇଁ ସାରା ପ୍ରଯତ୍ନ, ସମ୍ପୂର୍ଣ୍ଣ ଚେଷ୍ଟା ହେବା ଉଚିତ ।

୯୦- ଭଗବତ୍‌ପ୍ରେମୀଙ୍କ ଅବସ୍ଥା ବିଲକ୍ଷଣ ହୋଇଥାଏ । ଭଗବାନ୍‌ଙ୍କ

ପ୍ରସଙ୍ଗ ଚାଲୁଅଛି, ତାହାର ମଧୁର ଚର୍ଚ୍ଚା ହେଉଅଛି, ସେ ସମୟରେ ଯଦି ସ୍ୱୟଂ ଭଗବାନ୍ ଆସିଯାଆନ୍ତି, ତେବେ ମଧ୍ୟ ପ୍ରସଙ୍ଗ ଭଙ୍ଗ ହେବାକୁ ଦିଅ ନାହିଁ।

୯୧- ପ୍ରିୟତମଙ୍କ ଚର୍ଚ୍ଚାରେ ଗୋଟିଏ ଅଦ୍‌ଭୁତ ଆନନ୍ଦ ହୁଏ, ଯାହାର ସ୍ୱାଦ ଥରେ ଲାଗିଗଲେ ଆଉ କିଛି ଭଲ ଲାଗେ ନାହିଁ।

୯୨- ପ୍ରୀତିର ରୀତି ବିଲକ୍ଷଣ। ପ୍ରଭୁଙ୍କ ପ୍ରୀତିର ରସ ଯିଏ ପାଇ ଯାଇଛି, ତାର ଆଉ କ'ଣ ପାଇବାକୁ ବାକି ରହିଲା? ପ୍ରଭୁ ତ କେବଳ ପ୍ରେମ ଦେଖନ୍ତି । ସ୍ୱୟଂ ପ୍ରଭୁଙ୍କଠାରୁ ବଳି ପ୍ରଭୁଙ୍କର ପ୍ରେମ ଅଟେ।

୯୩- ପ୍ରଭୁଙ୍କ ସହିତ ଆମର ବ୍ୟବହାର ଏପରି ହେବା ଉଚିତ ଯେପରି ସ୍ତ୍ରୀର ନିଜ ପତିଙ୍କ ସହିତ। ଯେପରି ସ୍ତ୍ରୀ ତାର ପ୍ରେମ ବ୍ୟବହାର ଓ ହାବଭାବରେ ପତିଙ୍କୁ ମୋହିତ କରିଦିଏ, ସେପରି ଆମେ ଭଗବାନ୍‌ଙ୍କୁ ନିଜର ପ୍ରେମ ଓ ଆଚରଣରେ ମୋହିତ କରିଦେବା ଉଚିତ। ତାଙ୍କୁ ନିଜଠାରେ ଆସକ୍ତ କରିଦିଅ, ତୋଷାମଦ କରିବା ଆବଶ୍ୟକ ହେବ ନାହିଁ। ତା'ପରେ ଦେଖିବ, କ୍ଷଣକ ପାଇଁ ମଧ୍ୟ ସେ ଆମ ଦୁଆର ଛାଡିବେ ନାହିଁ। ଯିବେ କୁଆଡେ?

୯୪- ପ୍ରଭୁଙ୍କୁ ବଶୀଭୂତ କରିବାର ଢଙ୍ଗ ସ୍ତ୍ରୀଠାରୁ ଶିଖିବା ଉଚିତ। ଏହି ପ୍ରକାର ସମ୍ବନ୍ଧ ତାଙ୍କ ସହିତ ଯୋଡିବା ଉଚିତ। ଏହା ମାଧୁର୍ଯ୍ୟ ଭାବ ଅଟେ। ବାହାର ବେଶ ବଦଳାଇବା ଆବଶ୍ୟକ ନାହିଁ, କିନ୍ତୁ ଭିତରେ ପ୍ରେମର ପ୍ରଗାଢତା ତାଙ୍କ ପ୍ରତି ହେବା ଆବଶ୍ୟକ। ଏହା ହିଁ ତାଙ୍କୁ ପ୍ରାପ୍ତ କରିବାର ସର୍ବଶ୍ରେଷ୍ଠ ଉପାୟ।

୯୫- ପତି ପତ୍ନୀଙ୍କ ପ୍ରେମକୁ ଅସ୍ୱୀକାର କିପରି କରିପାରିବ? ଏପରି ହୋଇଗଲେ ସେ ଆମ ବିନା କିପରି ରହିବେ? ସେ ତ ସର୍ବଦା ପ୍ରେମର ଅଧୀନ। ଥରେ ପ୍ରଭୁଙ୍କୁ ନିଜ ପ୍ରେମ ପାଶରେ ବାନ୍ଧି ଦିଅ, ପୁଣି ସେ ନିରନ୍ତର ବାନ୍ଧି ହୋଇଯିବେ।

୯୬- ଦୁଇ ପ୍ରେମୀଙ୍କର କଥା ନ ହେବାର ନିୟମ ଯଦି ହୋଇଯାଏ, ତେବେ ଅଧିକ ପ୍ରେମବାଲା ହାରିଯିବ। ପତି-ପତ୍ନୀଙ୍କ ମଧ୍ୟରେ କଥାବାର୍ତ୍ତା ନ ହେବାର ନିୟମ ହୋଇଗଲେ, ଯାହାଙ୍କଠାରେ ଅଧିକ ସ୍ନେହ, ସେ ହାରେ। ଏହିପ୍ରକାର ଭକ୍ତ ଓ ଭଗବାନ୍‌ଙ୍କ ମଧ୍ୟରେ ଯଦି ନିୟମ ହୁଏ, ତେବେ ଭଗବାନ୍‌ଙ୍କୁ ହାରିବାକୁ ପଡିବ, କାରଣ ପ୍ରଭୁଙ୍କଠାରୁ ଅଧିକ ପ୍ରେମୀ ଆଉ କେହି ନାହିଁ।

୯୭- ଯେପରି ଛୋଟ ଛୁଆକୁ ଛାଡ଼ି ଗାଈ ବଣକୁ ଚରିବାକୁ ଯାଏ, ସେଠାରେ ଘାସ ଚରେ, ସେଠାରେ ଗାଈର ପ୍ରେମ ଘାସରେ ଗୌଣ,

ବାଛୁରୀଠାରେ ମୁଖ୍ୟ ଏବଂ ନିଜର ଜୀବନ ଅନନ୍ୟ। ବାଛୁରୀପାଇଁ ଘାସ ତ୍ୟାଗ କରିଦେଇ ପାରେ ଏବଂ ଜୀବନପାଇଁ ବାଛୁରୀକୁ ତ୍ୟାଗ କରି ଦେଇପାରେ। ଏହି ପ୍ରକାର ଉତ୍ତମ ସାଧକ ସାଂସାରିକ କାର୍ଯ୍ୟ କରି ମଧ୍ୟ ଅନନ୍ୟଭାବରେ ପରମାତ୍ମାଙ୍କର ଚିନ୍ତନ କରୁଥାଏ।

୯୮- ଅନନ୍ୟ ପ୍ରେମର ସାଧାରଣ ସ୍ୱରୂପ ହେଲା—ଏକ ଭଗବାନ୍ ବ୍ୟତୀତ ଅନ୍ୟ କୌଣସିଥିରେ କୌଣସି ସମୟରେ ଆସକ୍ତି ନ ହେଉ। ପ୍ରେମର ଭଗ୍ନତାରେ ଭଗବାନ୍‌ଙ୍କ ବ୍ୟତୀତ ଅନ୍ୟ କାହାରି ଜ୍ଞାନ ହିଁ ନ ରହୁ। ଯେଉଁ ଯେଉଁ ଆଡକୁ ମନ ଯାଉଛି, ସେଠାରେ ଭଗବାନ୍ ଦୃଷ୍ଟିଗୋଚର ହୁଅନ୍ତୁ। ଏପରି ହେଉ ହେଉ ଅଭ୍ୟାସ ବଢିଗଲେ ନିଜେ ନିଜକୁ ବିସ୍ମୃତ କରି କେବଳ ଏକ ଭଗବାନ୍ ରହିଯିବେ। ଏହା ହିଁ ବିଶୁଦ୍ଧ ପ୍ରେମ।

୯୯- ସାଧାରଣ ଭଗବଦ୍-ପ୍ରେମୀ ସାଧକ ନିଜର ମନ ପରମାତ୍ମାଙ୍କଠାରେ ଲଗାଇବାକୁ ଚେଷ୍ଟା କରେ। ପରନ୍ତୁ ଅଭ୍ୟାସ ଓ ଆସକ୍ତି ହେତୁ ଭଜନ-ଧ୍ୟାନ କରିବା ସମୟରେ ମଧ୍ୟ ତାହାର ମନ ବିଷୟ ଆଡକୁ ଗ୍ଲିଯାଏ। ଯାହାଙ୍କର ଭଗବାନ୍‌ଙ୍କଠାରେ ମୁଖ୍ୟ ପ୍ରେମ ରହିଛି, ସେ ସବୁ ସମୟରେ ଭଗବାନ୍‌ଙ୍କୁ ସ୍ମରଣ କରି ସମସ୍ତ କାର୍ଯ୍ୟ କରନ୍ତି ଏବଂ ଯାହାଙ୍କର ଭଗବାନ୍‌ଙ୍କଠାରେ ଅନନ୍ୟ ପ୍ରେମ ରହିଛି, ତାଙ୍କୁ ସମସ୍ତ ଚରାଚର ବିଶ୍ୱ ଏକ ବାସୁଦେବମୟ ବୋଲି ପ୍ରତୀତ ହୁଏ। ଏପରି ମହାତ୍ମା ବଡ଼ ଦୁର୍ଲଭ। (ଗୀତା ୭।୧୯)।

୧୦୦- ଅନନ୍ୟ ପ୍ରେମୀ ଭକ୍ତ ପ୍ରେମରେ ଏତେ ଗଭୀରକୁ ବୁଡି ଯାଏ ଯେ ଲୋକଦୃଷ୍ଟିରେ ପାଗଳ ପରି ଦେଖାଯାଏ। କେହି କେହି ବାଳକ ପରି ଚେଷ୍ଟା କରିବାର ଦେଖାଯାଏ। ତାହାର ସାଂସାରିକ କାର୍ଯ୍ୟ ତୁଟି ଯାଏ। କେହି କେହି ଏପରି ଯେ ଅନନ୍ୟ ପ୍ରେମରେ ନିମଗ୍ନ ରହିଲେ ମଧ୍ୟ ମହାନ୍ ଭାଗବତ ଶ୍ରୀଭରତଙ୍କ ପରି ବା ଭକ୍ତରାଜ ହନୁମାନଙ୍କ ପରି ସର୍ବଦା ହିଁ 'ରାମକାର୍ଯ୍ୟ' କରିବାକୁ ପ୍ରସ୍ତୁତ ରହନ୍ତି। ଏପରି ଭକ୍ତଙ୍କର ସବୁ କାର୍ଯ୍ୟ ଲୋକହିତାର୍ଥ ହୁଏ। ସେହି ମହାତ୍ମା କ୍ଷଣକ ପାଇଁ ମଧ୍ୟ ପରମାତ୍ମାଙ୍କୁ ଭୁଲନ୍ତି ନାହିଁ କି ଭଗବାନ୍ ମଧ୍ୟ ତାଙ୍କୁ ଭୁଲନ୍ତି ନାହିଁ।

୧୦୧- ସ୍ୱାମୀଙ୍କଠାରେ ଅନନ୍ୟ ପ୍ରେମ, ନିତ୍ୟ ସଂଯୋଗ ଏବଂ ତାଙ୍କ ପ୍ରସନ୍ନତାପାଇଁ ଭକ୍ତଙ୍କର ସମସ୍ତ ଚେଷ୍ଟା ହୁଏ। ନିଜର ପ୍ରେମାସ୍ପଦ ସଗୁଣ ବ୍ରହ୍ମ ଉପରେ ଶରୀର, ମନ, ଧନ ଏବଂ ନିଜେ-ନିଜକୁ ଉତ୍ସର୍ଗ କରି ସେ ପ୍ରେମ ଓ ଆନନ୍ଦରେ ମୁଗ୍ଧ ହୋଇଯାଏ। କେବଳ ଏକମାତ୍ର ଭଗବାନ୍ ହିଁ ତାଙ୍କର ପରମ

ଆଶ୍ରୟ, ଜୀବନ, ପ୍ରାଣ, ଧନ ଓ ଆତ୍ମା ଅଟେ। ଏଣୁ ସେ ତାଙ୍କରି ବିୟୋଗରେ ଏକ କ୍ଷଣ ମଧ୍ୟ ରହି ପାରନ୍ତି ନାହିଁ। ସେହି ପ୍ରିୟ ପ୍ରେମୀଙ୍କର ନାମ, ରୂପ, ଗୁଣ, ପ୍ରେମ, ପ୍ରଭାବ, ରହସ୍ୟ ଓ ଚରିତ୍ରଗୁଡ଼ିକୁ ଶ୍ରବଣ, ମନନ ଓ କୀର୍ତ୍ତନ କରି ନିତ୍ୟ ନିରନ୍ତର ସେଥିରେ ରମଣ କରନ୍ତି।

୧୦୨- ଯେପରି କାମିନୀର ନୂପୁର ଝଙ୍କାର ଶୁଣି କାମୀ ପୁରୁଷର ହୃଦୟରେ କାମ ଜାଗ୍ରତ ହୋଇ ଉଠେ, ସେପରି ପ୍ରେମୀଙ୍କ କାନରେ ଭଗବତ୍ ନାମ କୀର୍ତ୍ତନ ଧ୍ୱନି ପଡିଗଲେ ସେ ପ୍ରେମରେ ବିଭୋର ହୋଇଯାନ୍ତି। ସେ ଯଦି କୌଣସି ଭଗବଦ୍‌ରସିକ ମହାପୁରୁଷଙ୍କୁ ଦର୍ଶନ କରି ନିଅନ୍ତି, ତେବେ ତାଙ୍କ ନେତ୍ର ଗୋଲାପ ଫୁଲ ପରି ଫୁଟି ଉଠେ ଏବଂ ସେଥିରୁ ଝର ଝର ହୋଇ ଅଶ୍ରୁପାତ ହୁଏ।

୧୦୩- ପ୍ରେମୀ ତ ପ୍ରେମକୁ ଦେଖନ୍ତି, ପ୍ରେମକୁ ଶୁଣନ୍ତି, ପ୍ରେମକୁ ବର୍ଣ୍ଣନ ତଥା ଚିନ୍ତନ କରନ୍ତି। ତାଙ୍କର ମନ, ପ୍ରାଣ ଓ ଆତ୍ମା ପ୍ରେମର ଗଙ୍ଗାରେ ଅନବରତ ଅବଗାହନ କରୁଥାଏ।

୧୦୪- ପ୍ରେମୀ ସର୍ବତ୍ର ପ୍ରେମମୟ ଭଗବାନ୍‌ଙ୍କୁ ହିଁ ଦେଖନ୍ତି, ସବୁ କିଛି ଭଗବାନ୍‌ଙ୍କଠାରେ ହିଁ ଦେଖନ୍ତି। ଏପରି ଦୃଷ୍ଟି ରଖୁଥିବା ଲୋକର ଦୃଷ୍ଟିରୁ ଭଗବାନ୍ ଅଲଗା ହୋଇ ପାରନ୍ତି ନାହିଁ। ସେ ମଧ୍ୟ ଭଗବାନ୍‌ଙ୍କଠାରୁ ଅଲଗା ହୋଇପାରେ ନାହିଁ।

୧୦୫- ଭଗବାନ୍ ଏପରି ଭକ୍ତର ଲୋକୋତ୍ତର ଅନୁରାଗ ଦେଖି ନିଜର ମହେଶ୍ୱରତା ଭୁଲି ଯାଆନ୍ତି ଏବଂ ମୁଗ୍ଧ ହୋଇ ନିଜର ପ୍ରାଣପ୍ରିୟ ଭକ୍ତ ଅପେକ୍ଷାରେ ରହନ୍ତି, ତାହାରି ସହିତ ତାହାରି ଅନୁରୂପ ହୋଇ ତାହାରି ଇଚ୍ଛାର ଅନୁକୂଳ ବିଗ୍ରହ ଧାରଣ କରି ଖେଳନ୍ତି, ନୃତ୍ୟ କରନ୍ତି, ଗାଆନ୍ତି, ବଜାନ୍ତି ଓ ଆନନ୍ଦିତ ହୋଇ ରହନ୍ତି।

୧୦୬- ପ୍ରେମୀ ଭକ୍ତ ମିଳନ ଓ ବିରହ ଚିନ୍ତାର ଉର୍ଦ୍ଧ୍ୱରେ ସ୍ଥିତ । ସେ କେବଳ ପ୍ରେମ କରେ ଏବଂ ତାହା ମଧ୍ୟ ପ୍ରେମପାଇଁ।

୧୦୭- ପ୍ରେମୀ ତ ସବୁ କିଛି ପ୍ରିୟତମଙ୍କ ପାଇଁ କରେ। ତାହାକୁ ଯଦି ମିଳନରେ ସୁଖ ମିଳେ ତ ସ୍ୱୟଂ ଆସି ମିଳନ୍ତି। ବିରହରେ ଦୁଃଖ ହେଲେ ଦୂରକୁ ଯାଆନ୍ତି ନାହିଁ।

୧୦୮- ଭଗବତ୍‌ପ୍ରେମୀର ପୂଜନ, ଭୋଜନ, ପାନ, କ୍ରନ୍ଦନ, ଗାନ ଆଦି ସବୁ ଭଗବଦ୍‌ପ୍ରୀତ୍ୟର୍ଥେ ହେବା ଉଚିତ। ପ୍ରେମୀର ପ୍ରେମମୟ ଭଗବାନ୍‌ଙ୍କ ବ୍ୟତୀତ ଅନ୍ୟ କିଛି ଲକ୍ଷ୍ୟ ନ ଥାଏ।

୧୦୯- ପ୍ରେମୀ ସେହି ଦିବ୍ୟ ପ୍ରେମର ସାକ୍ଷାତ୍ ସ୍ୱରୂପ ହୁଏ। ତାହାର ବାଣୀ ପ୍ରେମରେ ଓତପ୍ରୋତ ତଥା ଶରୀର ପ୍ରେମରସରେ ଉବୁଟୁବୁ ହେଉଥାଏ। ତାହାର ପ୍ରତ୍ୟେକ ଲୋମ ପ୍ରେମାନନ୍ଦରେ ନୃତ୍ୟ କରୁଥିବାର ଦେଖାଯାଏ। ତାହା ସହିତ ସମ୍ଭାଷଣ, ତାହାର ଚିନ୍ତନ ତଥା ନିକଟକୁ ଗମନ କଲେ ନିଜ ମଧ୍ୟକୁ ପ୍ରେମର ପରମାଣୁ ଆସିଯାଏ। ବଡ ବଡ ନାସ୍ତିକ ମଧ୍ୟ ତାଙ୍କର ସମ୍ପର୍କରେ ଆସି ସବୁକିଛି ଭୁଲି ପ୍ରେମପାତ୍ର ହୋଇଯାନ୍ତି। ତାଙ୍କର ଅନନ୍ୟ ଅନୁରାଗ ବା ଅଲୌକିକ ଭାବୋଦ୍ରେକକୁ ସଠିକ୍ ଭାବେ ହୃଦୟଙ୍ଗମ କରିବାପାଇଁ ଉପଯୁକ୍ତ ଶବ୍ଦ ନାହିଁ। ବୁଝାଇବାପାଇଁ ତାଙ୍କର ଭାବକୁ ଯେପରି ରୂପ ଦେଇ ପାରିଲେ ମଧ୍ୟ ତାହା ସବୁଭାବର ଉପରକୁ ଉଠିଯାଏ।

୧୧୦- ସେହି ଅନନ୍ୟ ପ୍ରେମୀ ଭକ୍ତ ପୂର୍ଣ୍ଣ ପ୍ରେମରେ ବୁଡି ରହେ। ସେ ଭଗବାନ୍‌ଙ୍କଠାରୁ ଭିନ୍ନ ନୁହେଁ କି ଭଗବାନ୍ ତାଠାରୁ ଭିନ୍ନ ନୁହଁନ୍ତି। ଏହି ଅବସ୍ଥାରେ ଭୟ, ସଙ୍କୋଚ, ମାନ, ଆଦର ଏବଂ ସତ୍କାରର କିଛି ଜ୍ଞାନ ରହେ ନାହିଁ, ବଡ ଛୋଟର କିଛି ଧ୍ୟାନ କରାଯାଏ ନାହିଁ। ସେହି ଭକ୍ତ ଓ ଭଗବାନ୍‌ଙ୍କ ମଧ୍ୟରେ କେହି ଉତ୍ତମ ନୁହଁନ୍ତି କି ମଧ୍ୟମ ନୁହଁନ୍ତି। ଦୁହେଁ ସମାନ।

୧୧୧- ଅନନ୍ୟ ପ୍ରେମୀଙ୍କ ଦୃଷ୍ଟିରେ ସର୍ବତ୍ର ଓ ସର୍ବଦା ଦିବ୍ୟ ପ୍ରେମର ଅଖଣ୍ଡ ଜ୍ୟୋତି ଝଲକୁ ଥାଏ। ସେ ସମ୍ପୂର୍ଣ୍ଣ ଜଗତ ଉପରେ ସମାନରୂପରେ ପ୍ରେମାମୃତ ବର୍ଷା କରନ୍ତି। ତାଙ୍କ ଦୃଷ୍ଟିରେ କେହି ଘୃଣା କି ଦ୍ୱେଷର ପାତ୍ର ନୁହଁନ୍ତି। ତାଙ୍କପାଇଁ ସର୍ବତ୍ର ପ୍ରେମର ସାଗର ପ୍ରବାହିତ ହେଉଥାଏ।

୧୧୨- ଭଗବାନ୍‌ଙ୍କଠାରୁ ସାଥୀ ପ୍ରେମୀର ଏକ କ୍ଷଣ ବି କେବେ ବିୟୋଗ ହୁଏ ନାହିଁ। ଭଗବାନ୍ ତାଙ୍କରି ଅଧୀନ ହୋଇଥାନ୍ତି। ତାଙ୍କର ହାତରେ ବିକି ହୋଇଯାଆନ୍ତି। ତାଙ୍କ ସଙ୍ଗ ଛାଡି କୁଆଡେ ଯାଆନ୍ତି ନାହିଁ।

୧୧୩- ପ୍ରେମୀକୁ ପ୍ରଭୁ ତ୍ୟାଗ କରି ପାରନ୍ତି ନାହିଁ।

୧୧୪- ଗଙ୍ଗା ଓ ସମୁଦ୍ର ମିଳି ଏକ ହୋଇଯାଆନ୍ତି, କିନ୍ତୁ ଭଗବାନ୍ ଓ ଅନନ୍ୟ ପ୍ରେମୀ ଭକ୍ତଙ୍କ ଦିବ୍ୟ ମିଳନ ତାହାଠାରୁ ମଧ୍ୟ ବିଲକ୍ଷଣ ଏବଂ ଉତ୍କୃଷ୍ଟ। ଏହା ଅଲୌକିକ ଏବଂ ଅନିର୍ବଚନୀୟ ଅବସ୍ଥା। ଭେଦ-ଅଭେଦର ଉର୍ଦ୍ଧ୍ୱରେ ଫଳରୂପା ସ୍ଥିତି ଅଟେ। ଏହି ମିଳନ ନିତ୍ୟ।

୧୧୫- ଭଗବାନ୍ ମିଳିବାପରେ ଭଗବାନ୍ ଭକ୍ତକୁ ହୃଦୟରେ ଲଗାଇବା ବେଳେ ବସ୍ତ୍ରାଦିର ବ୍ୟବଧାନ ମଧ୍ୟ ଭକ୍ତକୁ ବିଘ୍ନ ପରି ପ୍ରତୀତ ହେବାକୁ ଲାଗେ। ସେ ଅବ୍ୟବଧାନରୂପରେ ନିତ୍ୟ-ନିରନ୍ତର ମିଳିବା ହିଁ ପସନ୍ଦ କରେ ଏବଂ ଏକ କ୍ଷଣ ମଧ୍ୟ ଭଗବାନ୍‌ଙ୍କଠାରୁ ଅଲଗା ହେବାକୁ ଚାହେଁ ନାହିଁ ।

୧୧୬- ଅନନ୍ୟ ପ୍ରେମୀ ଭକ୍ତର ଉପର ବ୍ୟବହାର ଯାହା ହେଉ ନା କାହିଁକି, ଭିତରେ ସେ ଏକନିଷ୍ଠ ଓ ଭଗବନ୍ମୟ। ଏଣୁ ଭଗବାନ୍‌ଙ୍କଠାରେ ନିତ୍ୟ ସ୍ଥିତ ଅଟେ।

୧୧୭- ଆହା ! ନିଜର ପ୍ରିୟଙ୍କ ସ୍ମରଣରେ କେତେ ଆନନ୍ଦ।

୧୧୮- ପ୍ରେମାସ୍ପଦ ପ୍ରେମୀକୁ ଯେତେ ନିରାଦର କରନ୍ତି, ସେ ସେତିକି ଆନନ୍ଦିତ ହୁଏ। ପ୍ରେମୀକୁ ଯେତେ ଖରାପ କଥା ଶୁଣାଇ ଦିଆଯାଉ ନା କାହିଁକି, ଯେତେ ତିରସ୍କୃତ କରାଯାଉ ନା କାହିଁକି, ତଥାପି ପ୍ରେମାସ୍ପଦଙ୍କ ପ୍ରତି ତାହାର ମନରେ ଅଧିକାଧିକ ପ୍ରେମ ବଢିବାକୁ ଲାଗେ।

୧୧୯- ଯାହାକୁ ଆମେ ବିନା ଦ୍ୱିଧାରେ ଗାଳି ଦେଇପାରୁ, ନିଃସଙ୍କୋଚରେ କଡାକଡା କଥା ଶୁଣାଇପାରୁ, ସେ ହିଁ ପ୍ରକୃତ ପ୍ରେମୀ।

୧୨୦- ଯଦି ପ୍ରେମାସ୍ପଦ ପ୍ରେମୀଙ୍କ ଜିନିଷକୁ ତାଙ୍କର ବିନା ସମ୍ମତିରେ ଅନ୍ୟକୁ ଦେଇ ଦିଅନ୍ତି, ତେବେ ପ୍ରେମୀଙ୍କ ଚିତ୍ତରେ ଆନନ୍ଦ ହୁଏ।

୧୨୧- ପ୍ରେମୀଙ୍କୁ କଠିନ-ରୁ-ଅତି କଠିନ କାମରେ ଯଦି ପ୍ରେମାସ୍ପଦ ନିଯୁକ୍ତ କରିଦିଅନ୍ତି, ଏପରିକି ତାଙ୍କରି ସମ୍ମତି ବିନା ବଳିଦାନ ମଧ୍ୟ କରି ଦିଅନ୍ତି, ତେବେ ବି ପ୍ରେମୀ ପ୍ରସନ୍ନ ରହନ୍ତି, ତାଙ୍କ ଚିତ୍ତରେ ଏତେ ଉଲ୍ଲାସ ହୁଏ ସତେ ଯେପରି ସାକ୍ଷାତ୍ ଈଶ୍ୱରଙ୍କ ଦର୍ଶନ ହୋଇଗଲା।

୧୨୨- ଯିଏ ଥରେ ମାତ୍ର ପ୍ରେମରେ ଆକ୍ରାନ୍ତ ହୋଇଯାଏ, ତାହା ଉପରେ କୌଣସି ଔଷଧ କାମ କରେ ନାହିଁ।



## ଦୟା

୧- ସେହି କୃପାଳୁଙ୍କର କୃପା ତ ନିରନ୍ତର ସବୁଠାରେ ପୂର୍ଣ୍ଣ। ମନୁଷ୍ୟ କି କୃପା କରି ପାରିବ ?

୨- ଭଗବାନ୍‌ଙ୍କର କୃପା ନିରନ୍ତର ଅନୁଭବ ହେଉଥିଲେ ଏବଂ ନିଜକୁ ତାଙ୍କରି କୃପାପାତ୍ର ମାନି ନେବାପରେ ତ ଭାବନା-ଚିନ୍ତା ରହିବା ଅସମ୍ଭବ । ଏହାପରେ ଯଦି ଚିନ୍ତା ରହିଯାଏ, ତେବେ ତାହା ପ୍ରଭୁଙ୍କୁ ଲଜ୍ଜିତ କରିଥାଏ।

୩- ମନୁଷ୍ୟର ନଜର କେଉଁ କାମକୁ ଆସିବ? ନଜର କେବଳ ଭଗବାନ୍‌ଙ୍କର ଆବଶ୍ୟକ ଏବଂ ତାହା ସମସ୍ତଙ୍କ ଉପରେ ଉତ୍ତମ ରୂପେ ଅଛି ମଧ୍ୟ। ପରନ୍ତୁ କେହି ତାଙ୍କ ଉପରେ ଯଥାଯଥ ବିଶ୍ୱାସ କଲେ ସିନା !

୪- ପୂର୍ବକାଳରେ ହଜାର ହଜାର ବର୍ଷ ଅନବରତ ଚେଷ୍ଟା କରିବା ପରେ ଭଗବାନ୍‌ଙ୍କ ଦର୍ଶନ ହୋଇ ପାରୁଥିଲା, କିନ୍ତୁ ଏବେ ତ ବହୁତ ଶୀଘ୍ର ହୋଇପାରୁଛି।

୫- ସଦାସର୍ବଦା ଭଗବାନ୍‌ଙ୍କ ପୂର୍ଣ୍ଣ କୃପା ରହିଛି, ଏହି ସମୟରେ ବିଶେଷ କୃପା ଅଛି, ସାଧନର ଚେଷ୍ଟା ନ କରିବା ବଡ଼ ମୂର୍ଖତା। ନିଜ ଆଡୁ ତ୍ରୁଟି ଅଛି।

୬- ଭଗବାନ୍‌ଙ୍କ ଦୟା ସବୁଠାରେ ପରିପୂର୍ଣ୍ଣ ଭାବି ସବୁ ସମୟରେ ପ୍ରସନ୍ନ ରହିବା ଉଚିତ। ସାଂସାରିକ ବସ୍ତୁମାନଙ୍କର ହାନି ଲାଭରେ ଭଗବାନ୍‌ଙ୍କର ଲୀଳା ଦେଖ, ବହୁତ ଖୁସୀ ହୋଇ ପଦେ ପଦେ ଭଗବାନ୍‌ଙ୍କ ଦୟା ଦେଖ।

୭- ଭଗବାନ୍‌ଙ୍କର କୃପା, ଦୟା ଆମ ସମସ୍ତଙ୍କ ଉପରେ ପୂର୍ଣ୍ଣ ହୋଇ ଅଛି । ଏହି କଥାକୁ ଯିଏ ଜାଣିନେବ, ସେ ଭଗବାନ୍‌ଙ୍କୁ କେବେ ଭୁଲି ପାରିବ ନାହିଁ।

୮- ସ୍ନେହମୟୀ ମା' ଯେପରି ପିଲାକୁ ଦୁଷ୍ଟ ଆଚରଣରୁ ଦୂରେଇ ଦେବାପାଇଁ ମାରେ, ସେହିପ୍ରକାର ଭଗବାନ୍ ମଧ୍ୟ ଜୀବମାନଙ୍କ ସହିତ ଦୟାପୂର୍ଣ୍ଣ କଠୋର ବ୍ୟବହାର କରନ୍ତି।

୯- କଳିଯୁଗରେ ଅଳ୍ପ ସମୟରେ ଭଗବାନ୍ ମିଳି ପାରନ୍ତି। ଭଗବଦ୍-ବିଷୟକ ଧନ ଲୁଟି ହେଉଛି। କିନ୍ତୁ ଲୁଟି ନେବା ଲୋକ ବହୁତ ଜୋର-ଶୋର୍‌ରେ ସ୍ୱାର୍ଥ ଏବଂ ମନ୍ଦ କାମମାନଙ୍କରେ ମଗ୍ନ ରହୁଛନ୍ତି। ପରମାର୍ଥରେ କମ୍ ସମୟ ଦେଉଛନ୍ତି।

୧୦- ଭଗବାନ୍‌ଙ୍କ ବ୍ୟବହାର ଦେଖି ଚିତ୍ତରେ ଗଦ୍‌ଗଦ ଭାବ ତଥା ଅଶ୍ରୁପାତ ହେବା ଉଚିତ। ବିଷର କୀଟ ଯେପରି ବିଷରେ ଆନନ୍ଦରେ ରହେ, ସେପରି ସଂସାରର ଲୋକ ସଂସାରରେ ଖୁସି ହୋଇ ରହନ୍ତି। ମଇଳା କୀଟ ମଇଳାରେ ପ୍ରସନ୍ନ ଥାଆନ୍ତି, ପରନ୍ତୁ ବାସ୍ତବରେ ତାହାର ଦୁଃଖ ଦେଖି ମଧ୍ୟ ମହାତ୍ମା ଲୋକ ତାକୁ ମଇଳାରୁ ଉଠାଇ ମାରିବାକୁ ଇଚ୍ଛା କରନ୍ତି ନାହିଁ। ସେହି ପ୍ରକାର ସାଂସାରିକ ଲୋକ ସଂସାରରେ ବୁଡି ରହିଲେ ସେମାନଙ୍କୁ ଭଗବାନ୍ ବଳପୂର୍ବକ କିପରି ବାହାର କରିବେ ?

୧୧- ଶ୍ରୀପରମାତ୍ମଦେବଙ୍କର ସମସ୍ତଙ୍କ ଉପରେ ପୂର୍ଣ୍ଣକୃପା ରହିଛି। ଏପରି ନିଶ୍ଚୟ ଯାହାକୁ ହୋଇଯାଏ, ସେ ଭଗବାନ୍‌ଙ୍କ କୃପାପାତ୍ର ହୋଇଯାଏ।

୧୨- ପୁଣି ଭଗବାନ୍ ତାକୁ ଶୀଘ୍ର ମିଳି ଯାଆନ୍ତି, କାରଣ ତାହା ସହିତ ନ ମିଳି ଭଗବାନ୍ ଶାନ୍ତ ରହି ପାରନ୍ତି ନାହିଁ।

୧୩- ଭଗବାନ୍‌ଙ୍କ ପୂର୍ଣ୍ଣରୂପରେ କୃପା ତ ଅଛି, ପରନ୍ତୁ ତାହା ଯୋଗ୍ୟ ପାତ୍ରରେ ପ୍ରତ୍ୟକ୍ଷ ଦେଖାଯାଏ।

୧୪- ସୂର୍ଯ୍ୟଙ୍କର ପ୍ରକାଶ ସବୁ ସ୍ଥାନରେ ପରିପୂର୍ଣ୍ଣ ହେଲେ ମଧ୍ୟ ଦର୍ପଣ ଉପରେ ପ୍ରତ୍ୟକ୍ଷ ପରି ଦେଖାଯାଏ। ଭଗବାନ୍‌ଙ୍କ କୃପାର ଅଳ୍ପ ପ୍ରଭାବ ଜାଣିଗଲା ପରେ ସାଧକ ଯାହା କିଛି ହୁଏ, ତାହା ଭଗବାନ୍‌ଙ୍କର କୃପା ବୋଲି ବୁଝେ। ତେଣୁ ସେ ନିଜ ଇଚ୍ଛାକୁ ଛାଡି ଦେଇ ସାକ୍ଷୀ ହୋଇ ଆନନ୍ଦରେ ମଗ୍ନ ରହେ।

୧୫- ଭଗବତ୍‌କୃପାଦ୍ୱାରା ଭଗବତ୍‌ଚର୍ଚ୍ଚା ହୁଏ।

୧୬- ଭଜନ, ଧ୍ୟାନ ଓ ସତ୍‌ସଙ୍ଗାଦି ସବୁକିଛି ଭଗବତ୍‌କୃପାରେ ହୁଏ।

୧୭- ନିରନ୍ତର ଭଗବାନ୍‌ଙ୍କ ପୂର୍ଣ୍ଣ କୃପା ମାନି ରହିବା ବିଧେୟ।

୧୮- ଭଗବାନ୍‌ଙ୍କ କୃପାଦ୍ୱାରା ଭଗବାନ୍ ମିଳନ୍ତି ଏବଂ ଜୀବର ଉଦ୍ଧାର ହୁଏ। ଏହିସବୁ କଥା ଭଲଭାବରେ ବୁଝିବା ଆବଶ୍ୟକ।

୧୯- ଦୟାସାଗର ଭଗବାନ୍‌ଙ୍କ ଜୀବମାନଙ୍କ ଉପରେ ଏତେ ଦୟା ଯେ ତାହାର କିଛି ସୀମା ନାହିଁ।

୨୦- ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କୁ ଦୟାର ସାଗର କହିଲେ ମଧ୍ୟ ତାଙ୍କରି ଅପରିମିତ ଦୟାର ତିରସ୍କାର ହୁଏ। ଜୀବମାନଙ୍କ ଉପରେ ତାଙ୍କର ଯାହା ଦୟା ରହିଛି, ତାହା କଳ୍ପନାତୀତ ଅଟେ।

୨୧- ଭଗବାନ୍‌ଙ୍କୁ ଦୟାର ସାଗର କହିଲେ ତାଙ୍କ ସ୍ତୁତି ଛଳରେ ନିନ୍ଦା ମଧ୍ୟ ହୁଏ । କାରଣ ସାଗର ସୀମା ଲଙ୍ଘନ କରେ ନାହିଁ। କିନ୍ତୁ ଭଗବାନ୍‌ଙ୍କ ଦୟାର କୌଣସି ସୀମା ନ ଥାଏ ।

୨୨- ଦୟାମୟ ପରମେଶ୍ୱରଙ୍କ ସବୁ ଜୀବଙ୍କ ଉପରେ ଏତେ ଦୟା ଯେ ସମ୍ପୂର୍ଣ୍ଣରୂପରେ ମନୁଷ୍ୟ ତାହା ବୁଝିପାରେ ନାହିଁ। ମନୁଷ୍ୟ ନିଜ ବୁଦ୍ଧିରେ ନିଜ ଉପରେ ଯେତେ ଅଧିକ-ରୁ-ଅଧିକ ଦୟା ବୁଝେ, ସେତିକି ବୁଝିବା ହିଁ ତା ପକ୍ଷରେ ବହୁତ। ମନୁଷ୍ୟ ଈଶ୍ୱର-କୃପାକୁ ଯଥାର୍ଥ ରୂପରେ କଳ୍ପନା କରି ପାରେ ନାହିଁ।

୨୩- ମନୁଷ୍ୟ ନିଜକୁ ଉଚ୍ଚ-ରୁ-ଉଚ୍ଚ କଳ୍ପନାଦ୍ୱାରା ତାଙ୍କର ଦୟାର ଯେତିକି ଅନୁମାନ ଲଗାଏ, ଭଗବାନ୍‌ଙ୍କ ଦୟା ତାହାଠାରୁ କେବଳ ଅନନ୍ତଗୁଣ ଅଧିକ ନୁହେଁ, ଅସୀମ ଓ ଅତ୍ୟନ୍ତ ବିଲକ୍ଷଣ ମଧ୍ୟ। ଭଗବାନ୍ ବସ୍ତୁତଃ ଦୟାମୟ ହିଁ ଅଟନ୍ତି।

**"ହୈ ତୁଲସିହି ପରତୀତି ଏକ ପ୍ରଭୁ ମୂରତି କୃପାମୟୀ ହୈ।"**

୨୪- ପରମାତ୍ମାଙ୍କ ପ୍ରାପ୍ତି ପରମାତ୍ମାଙ୍କ ଦୟାଦ୍ୱାରା ହୁଏ। ଦୟା ହିଁ ଏକମାତ୍ର କାରଣ। ପରନ୍ତୁ ଏହି ଦୟା ମନୁଷ୍ୟକୁ ଅକର୍ମଣ୍ୟ କରିଦିଏ ନାହିଁ। ପରମାତ୍ମାଙ୍କ

ଦୟାରେ ଏପରି ପରମ ପୁରୁଷାର୍ଥ ହୁଏ । ଜୀବର ନିଜର କିଛି ପୁରୁଷାର୍ଥ ନାହିଁ, ସେ ତ ନିମିତ୍ତମାତ୍ର ଅଟେ ।

୨୫- ଦୟା ଓ ପ୍ରେମର ବିଶାଳ ସମୁଦ୍ର ଉଛୁଳି ପଡୁଛି । ସେଥିରେ ନିଜକୁ ବୁଡାଇ ଦିଅ । ଚାରିଆଡେ ବାହାରେ ଭିତରେ, ତଳେ-ଉପରେ ଈଶ୍ୱରଙ୍କ ଦୟା ଓ ପ୍ରେମର ସମୁଦ୍ର ପରିପୂର୍ଣ୍ଣ ।

୨୬- ଈଶ୍ୱର ଦୟାଳୁ ଓ ପ୍ରେମୀ ଅଟନ୍ତି । ତାଙ୍କ ଦୟା ଓ ପ୍ରେମ ସର୍ବତ୍ର ପରିପୂର୍ଣ୍ଣ ହେଉଅଛି । ଅଣୁ-ଅଣୁରେ ତାଙ୍କରି ଦୟା ଓ ପ୍ରେମ ଦେଖି ଦେଖି ଆମେ ମୁଗ୍ଧ ହେବା ଉଚିତ । ସବୁ ସମୟରେ ପ୍ରସନ୍ନ ରହିବା ଉଚିତ । ଏହାକୁ ସାଧନ କରିନେବା ଉଚିତ ।

୨୭- ସୂର୍ଯ୍ୟଙ୍କ କିରଣରେ ଆମେ ବସିବାବେଳେ ଆମ ଚାରିଆଡରେ କିରଣ-ହିଁ-କିରଣ ପୂର୍ଣ୍ଣ ଥାଏ । ସେହି ପ୍ରକାର ପରମାତ୍ମାଙ୍କ ଦୟା ଓ ପ୍ରେମ ସବୁ ସ୍ଥାନରେ ପରିପୂର୍ଣ୍ଣ ହୋଇ ରହିଛି ।

୨୮- କୌଣସି ସ୍ଥାନ ତାଙ୍କ ଦୟା ଓ ପ୍ରେମରହିତ ନୁହେଁ ।

୨୯- **'ସୁହୃଦଂ ସର୍ବଭୂତାନାଂ ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି ।'** (ଗୀତା ୫ । ୨୯) ଈଶ୍ୱର ପରମ ସୁହୃଦ୍ । ସୁହୃଦ୍‌ର ଅର୍ଥ କ'ଣ? ଦୟା ଓ ପ୍ରେମ ଯାହାଙ୍କଠାରେ ଥାଏ, ସେ ସୁହୃଦ୍ । ତାଙ୍କରି ପ୍ରେମ ଓ ଦୟା ଅନନ୍ତ, ଅପାର । ଅଣୁ-ଅଣୁରେ ପରମାଣୁ-ପରମାଣୁରେ ବ୍ୟାପ୍ତ ହୋଇ ରହିଛି ।

୩୦- ସେହି ପରମ ଦୟାଳୁ, ସମସ୍ତଙ୍କ ସୁହୃଦ୍, ସର୍ବଶକ୍ତିମାନ୍ ପରମେଶ୍ୱରଙ୍କ ଅପାର ଦୟା ଆମ ଉପରେ ସ୍ୱାଭାବିକ ଅଛି । ପ୍ରତିକ୍ଷଣରେ ତାଙ୍କରି ଦୟାର ସ୍ୱାଭାବିକ ଲାଭ ଆମକୁ ମିଳୁଛି । ସେ ସ୍ୱୟଂ ଅବତାର ନେଇ ନିଜ ଦୟାର ପ୍ରତ୍ୟକ୍ଷ ଦର୍ଶନ କରାଇଛନ୍ତି, ଏଣୁ ସେହି ଆଡକୁ ଲକ୍ଷ୍ୟ କରି ଭଗବାନ୍‌ଙ୍କ ଦୟାର ରହସ୍ୟ, ପ୍ରଭାବ ଏବଂ ତତ୍ତ୍ୱକୁ ବୁଝିବାପାଇଁ ଆମେ ତତ୍ପର ହେବା ଉଚିତ ।

୩୧- ଭଗବାନ୍‌ଙ୍କ ଦୟାର ମହତ୍ତ୍ୱ ଅପାର । ସେଥିରେ ଯେଉଁ ଲୋକ ଯେତିକି ଲାଭ ଉଠାଇବାକୁ ଚାହିଁବ ଉଠାଇ ପାରିବ । ଭଗବାନ୍‌ଙ୍କ ଦୟା ଏବଂ ଏହାର ରହସ୍ୟ ନ ବୁଝି ମଧ୍ୟ ସେହି ଦୟା ସମାନଭାବରେ ସାଧାରଣ ଫଳ ଦେଉଛି । ତାହାକୁ ଯେ ଯେତିକି ଅଧିକ ବୁଝି ପାରିବ, ତାହାକୁ ସେତିକି ଅଧିକ ଫଳ ଦେଇ ପାରିବ ଏବଂ ବୁଝି ସେହି ପ୍ରକାର କ୍ରିୟା କଲେ ଅତ୍ୟଧିକ ଫଳ ପ୍ରାପ୍ତ ହେବ ।

୩୨- ସୂର୍ଯ୍ୟଙ୍କର କିରଣ ସମଭାବରେ ସର୍ବତ୍ର ପଡ଼ିଥିଲେ ମଧ୍ୟ ଉଜ୍ଜ୍ୱଳ କାଚ ହେଉଛି ତାହାର ବିଶେଷ ପାତ୍ର, କାରଣ ତାହା ସୂର୍ଯ୍ୟଙ୍କ ପ୍ରତିବିମ୍ବକୁ ଗ୍ରହଣ କରିନିଏ ଏବଂ କାଚ ମଧ୍ୟରେ ସୂର୍ଯ୍ୟମୁଖୀ କାଚ ସୂର୍ଯ୍ୟଙ୍କ ଶକ୍ତିକୁ ନେଇ ବସ୍ତ୍ରାଦି ପଦାର୍ଥକୁ ଜଳାଇ ଦିଏ। ଏହିପ୍ରକାର ସବୁ ଜୀବଙ୍କ ଉପରେ ଭଗବାନ୍‌ଙ୍କ ଦୟା ସମାନ ଭାବରେ ଥିଲେ ମଧ୍ୟ ଯେଉଁ ମନୁଷ୍ୟ ଦୟାର ତତ୍ତ୍ୱ ଓ ରହସ୍ୟକୁ ବିଶେଷରୂପରେ ଜାଣେ, ତାହାର ସେହି ଦୟା ଦ୍ୱାରା ସମସ୍ତ ପାପ-ତାପ ସହଜରେ ଭସ୍ମ ହୋଇଯାଏ।

୩୩- ପ୍ରଭୁ ଅସମ୍ଭବକୁ ସମ୍ଭବ କରି ଦିଅନ୍ତି, ସେ ନିଜର ଦାସଙ୍କର ଦୋଷଗୁଡ଼ିକୁ ଦେଖନ୍ତି ନାହିଁ। ସେ ଦାସମାନଙ୍କ ଉପରେ ଅହେତୁକ ଦୟା କରନ୍ତି। ତାଙ୍କର ସ୍ୱଭାବ ଏହିପରି ଅଟେ।

୩୪- ଭଗବାନ୍ ଆମ ସହିତ କ୍ରୀଡା କରିବାପାଇଁ ଆମରି ପରି ହୋଇ ଆମର ଏହି ଭୂମଣ୍ଡଳକୁ ଓହ୍ଲାଇ ଆସନ୍ତି, ଏହାଠାରୁ ବଳି ଜୀବମାନଙ୍କ ଉପରେ ଆଉ କେତେ କୃପା ହେବ ?

୩୫- ଭଗବାନ୍ ତ କୃପାର ଭଣ୍ଡାର। କୃପା କରିବା ତାଙ୍କର ସ୍ୱଭାବ। କୃପା ନ କରି ସେ ରହି ପାରିବେ ନାହିଁ।

୩୬- ତାଙ୍କରି ଦୟା, ପ୍ରେମ ସର୍ବତ୍ର ପରିପୂର୍ଣ୍ଣ ହୋଇରହିଛି। ସେ ଦର୍ଶନ ଦେବାପାଇଁ ପ୍ରସ୍ତୁତ। ସେ ସବୁ ପ୍ରାଣୀଙ୍କ ସୁହୃଦ୍।

୩୭- ଏହି ମନୁଷ୍ୟଶରୀର ଭଗବାନ୍‌ଙ୍କ ଅହେତୁକୀ ଦୟାରୁ ପ୍ରାପ୍ତ ହୋଇଛି। ଏଥିରେ ଜୀବ ଭଗବାନ୍‌ଙ୍କ ଦୟାକୁ ବୁଝି ତାଙ୍କର ପରମ ପ୍ରେମପାତ୍ର ହୋଇ ପାରିବ।

୩୮- ଭଗବାନ୍‌ଙ୍କ ଦୟାର ଏପରି ପ୍ରଭାବ ଯେ ତାହାର ରହସ୍ୟ ଓ ତତ୍ତ୍ୱକୁ ଜାଣିଥିବା ଲୋକ ଉପରେ ସେ ପରଶ ମଣିପରି ସ୍ୱୟଂ କ୍ରିୟା କରାଇ ଦିଅନ୍ତି।

୩୯- କାହାରି ଘରେ ପରଶମଣି ପଡି ରହିଛି, କିନ୍ତୁ ସେ ତାର ଗୁଣ, ପ୍ରଭାବ ଓ ରହସ୍ୟକୁ ଜାଣି ନ ଥିବା କାରଣରୁ ଦରିଦ୍ରତା ଦୁଃଖକୁ ଭୋଗୁଛନ୍ତି । ସେହିପ୍ରକାର ଆମେ ଭଗବାନ୍ ଓ ଭଗବାନ୍‌ଙ୍କ ଦୟାର ରହସ୍ୟ, ପ୍ରଭାବ, ତତ୍ତ୍ୱ ଏବଂ ଗୁଣକୁ ନ ଜାଣିବା କାରଣରୁ ଦୁଃଖୀ ହେଉଛନ୍ତି।

୪୦- ଈଶ୍ୱରଙ୍କ ବିଧାନରେ ଯାହା କିଛି ହେଉଛି, ସେଥିରେ ହିତ ଭରି ରହିଛି। କୌଣସିଠାରେ ଅହିତ ନାହିଁ, କେବଳ ଆମର ବୁଝିବାରେ ଅଭାବ ହୁଏ।

୪୧- ଅଣୁ-ଅଣୁରେ ସବୁ ସମୟରେ, ସବୁ ଦେଶରେ ଏବଂ ସବୁ ବସ୍ତୁରେ ନିଜର ହିତକୁ ଦେଖ, ଏହାକୁ ଦେଖିବା ହିଁ ଭଗବାନ୍‌ଙ୍କ ଦୟାଳୁତା ଦେଖିବା । ବିଶ୍ୱାସପୂର୍ବକ ମାନି ନିଅ । ସବୁକାମ ଠିକ୍ ହୋଇଯିବ ।

୪୨- ଯଦି ଆମେ ଏହି ଦୃଢ଼ ବିଶ୍ୱାସ କରି ନେବା ଯେ ସେ ବଡ଼ ଦୟାଳୁ, ସେ ନ ମିଳିବାର କାରଣ ଆମର ଅବୁଝା ପଣିଆ । ସେ ଆମକୁ ମିଳିବେ, ନିଶ୍ଚୟ ମିଳିବେ, ଆଜି ହିଁ ମିଳିବେ—ଏପରି ଦୃଢ ନିଶ୍ଚୟ କରି ନେଲେ ସେ ଆଜି ମିଳିବେ । ଏଥିରେ ଟିକିଏ ହେଲେ ଶଙ୍କା ନାହିଁ ।

୪୩- କେବଳ ମାନି ନେବା ହିଁ ସାଧନ । ଜପ ବା ଧ୍ୟାନ କିଛି କରିବା କଥା କୁହାଯାଇ ନାହିଁ । କେବଳ ମାନି ନିଅ । ବାସ୍, ଏତିକି ହିଁ କରିବା କଥା । ସେ ଆମର ପରମ ସୁହୃଦ୍ । ତାଙ୍କଠାରେ ଅପାର ଦୟା, ଅହେତୁକ ପ୍ରେମ ଅଛି । ଭଗବାନ୍‌ଙ୍କ ଦୟା ଅପାର । ସେ ଆମକୁ ଦୟା ଦୃଷ୍ଟିରେ ଦେଖୁଛନ୍ତି, ପୁଣି ଆଉ କେଉଁଥିପାଇଁ ଚିନ୍ତା ?

୪୪- ସବୁ ସମୟରେ ଏହି ଭାବ ଜାଗ୍ରତ ରହିବା ଉଚିତ । ଆହା ! ଈଶ୍ୱରଙ୍କ ଆମ ଉପରେ କେତେ ଦୟା ! ଈଶ୍ୱରଙ୍କର ଆମ ଉପରେ କେତେ ପ୍ରେମ !ସମସ୍ତଙ୍କ ଉପରେ ସମାନ ଭାବରେ ଅପାର ଦୟା ଅଛି । ଯଦି ଏତେ ଦୟା ଅଛି, ତେବେ ଆମକୁ ଭୟ, ଚିନ୍ତା, ଶୋକ କରିବାର ଆବଶ୍ୟକତା କ'ଣ ? ଆମେ ଚିନ୍ତା-ଭୟ କରିବାଟା ଆମର ମୂର୍ଖତା । ଭୟ କାହାକୁ? ଏଠାରେ ଭୟ ନାହିଁ, ଚିନ୍ତା ନାହିଁ, ମୋହ ନାହିଁ । ସବୁ ଆମରି ଅବୁଝା ପଣିଆ । ଆମେ ଜାଣି ନ ଥିଲେ ଯେ ପ୍ରଭୁ ଏତେ ଦୟାଳୁ । ଜାଣିବା ପରେ ଭୟ ନାହିଁ, ଚିନ୍ତା ନାହିଁ କି ଶୋକ ମଧ୍ୟ ନାହିଁ ।

୪୫- ଈଶ୍ୱରଙ୍କ ଦୟା ସର୍ବତ୍ର ଅଛି । ସର୍ବତ୍ର ତାଙ୍କର ପ୍ରେମର ଛଟା ଛାଇ ହୋଇ ରହିଛି । ପୁଣି ଆମେ ଭୟ କରିବା କାହିଁକି ? ସେ ପ୍ରେମର ମହାନ୍ ସମୁଦ୍ର, ସେଥିରେ ଆମେ ବୁଡ଼ି ରହିଛୁଁ, ପ୍ରେମଜଳରେ ସିକ୍ତ ରହିଛୁଁ, ମଗ୍ନ ହୋଇ ରହିଛୁଁ । ଏହି ଭାବ ଯଦି ଦୃଢ ହୋଇଯିବ, ତେବେ ଶାନ୍ତି ଓ ଆନନ୍ଦର ବନ୍ୟା ପ୍ରତ୍ୟକ୍ଷ ଦେଖିବାକୁ ମିଳିବ । ପୁଣି ପ୍ରେମ ଆନନ୍ଦ ରୂପରେ ପରିଣତ ହୋଇଯିବ । ତାହା ହିଁ ପରମାତ୍ମାଙ୍କ ସ୍ୱରୂପ ।

୪୬- ଜଣେ ବାଦଶାହଙ୍କ ଦୟା ହୋଇଗଲେ ଆନନ୍ଦର ସୀମା ରହେ ନାହିଁ । ଜଣେ ମହାପୁରୁଷଙ୍କର ଦୟା ହୋଇଗଲେ ତ ଆନନ୍ଦର ସୀମା ନ ଥାଏ । ପୁଣି ଈଶ୍ୱରଙ୍କ ଦୟା ତ ଅପାର । ସେହି ବିଷୟରେ ଆଉ କଥା କ'ଣ ଅଛି ?

୪୭- ଆମେ ନିର୍ବୋଧତା ହେତୁ ଦୁଃଖୀ ହେଉଛୁଁ। ଈଶ୍ୱରଙ୍କ ଦୟା ଓ ପ୍ରେମ ସବୁ ସ୍ଥାନରେ ପୂର୍ଣ୍ଣ ହୋଇ ରହିଛି। ସ୍ୱୀକାର ନ କରିବା କାରଣରୁ ଆମେ ଦୁଃଖ ପାଉଛୁ।

୪୮- ଭଗବାନ୍‌ଙ୍କର ଦୟାର ପ୍ରବାହ ରାତିଦିନ ଗଙ୍ଗାର ପ୍ରବାହଠାରୁ ବଳି ସର୍ବତ୍ର ବହି ଯାଉଛି। ମନୁଷ୍ୟ ତାହାର ପ୍ରଭାବ ନ ଜାଣିବା କାରଣରୁ ଏବଂ ଶ୍ରଦ୍ଧା ଓ ଭକ୍ତିର ଅଭାବ ହେବାରୁ ଭଗବାନ୍‌ଙ୍କ ଶରଣ ନେଇ ତାଙ୍କରି ଦୟାରୁ ବିଶେଷ ଲାଭ ଉଠାଇ ପାରୁ ନାହୁଁ।

୪୯- ଭଗବାନ୍‌ଙ୍କ ଦୟା ସଦା ସମସ୍ତଙ୍କ ଉପରେ ସମାନଭାବରେ ଅଛି। ପରନ୍ତୁ ତାଙ୍କର ଅପାର ଦୟାକୁ ଚିହ୍ନି ପାରୁ ନ ଥିବାରୁ ତାହାକୁ ଦୟାରୁ ବିଶେଷ ଲାଭ ହେଉ ନାହିଁ।

୫୦- ପ୍ରଭୁଙ୍କ ଦୟା ସମସ୍ତଙ୍କ ଉପରେ ଅପାର, କିନ୍ତୁ ଅଜ୍ଞାନ କାରଣରୁ ଆମେ ଏ କଥା ବୁଝି ପାରୁ ନାହୁଁ। ବିଷୟ-ସୁଖରେ ମଜ୍ଜି ରହୁଛୁ। ଏଣୁ ଦୟାରୁ ପୂରା ଲାଭ ଉଠାଇ ପାରୁ ନାହୁଁ।

୫୧- କେବଳ ତାଙ୍କରି ଦୟା ଉପରେ ନିର୍ଭର କରିବା ଉଚିତ।

୫୨- ଭଗବାନ୍‌ଙ୍କ ଦୟା ଓ ପ୍ରେମର ସ୍ମରଣ କରି ସବୁ ସମୟରେ ଭଗବତ୍-ପ୍ରେମରେ ମୁଗ୍ଧ ଓ ନିର୍ଭୟ ରହିବା ବିଧେୟ। ଭଗବତ୍‌ଚିନ୍ତନରେ ଖୁବ୍ ଶ୍ରଦ୍ଧା ଓ ପ୍ରେମ ବୃଦ୍ଧି କରିବାକୁ ହେବ। ଏହା ଅତ୍ୟନ୍ତ ମୂଲ୍ୟବାନ୍।

୫୩- ଯଦି କହିବେ ଯେ କେଉଁ କଥାକୁ ନେଇ ଆମେ ଖୁସି ରହିବା, ତେବେ ତାହାର ଉତ୍ତର ହେଉଛି ଭଗବାନ୍‌ଙ୍କ ଦୟାକୁ ଦେଖି ଦେଖି । ଦେଖ, ଭଗବାନ୍‌ଙ୍କର ତୁମ ଉପରେ କେତେ ଦୟା। ଅପାର ଦୟା ବୁଝି ଆନନ୍ଦରେ ମୁଗ୍ଧ ରହ। ବାରମ୍ବାର ପ୍ରସନ୍ନ ରହ। ଆହା ! ପ୍ରଭୁଙ୍କର କେତେ ଦୟା। ଏହା ସବୁଠାରୁ ଶ୍ରେଷ୍ଠ ସାଧନ ଏବଂ ଏହା ହିଁ ଭକ୍ତି ଏବଂ ଏହାରି ନାମ ଶରଣ।

୫୪- ଭଗବାନ୍‌ଙ୍କ ଦୟା ଦୁଇ ରୂପରେ ଆମପାଖକୁ ଆସେ। କେଉଁଠାରେ ପ୍ରେମ ରୂପରେ ଦର୍ଶନ ଦିଏ ତ ପୁଣି କେଉଁଠି ଦଣ୍ଡ ରୂପରେ।

୫୫- ଯେଉଁ ପ୍ରକାର ପିଲାକୁ ସ୍ନେହ କଲେ ଏବଂ ଦଣ୍ଡ ଦେଲେ, ଉଭୟରେ ମା'ର ଦୟା ରହେ, ସେହିପ୍ରକାର ଜୀବମାନଙ୍କର ଗୁଣ-ଦୋଷ ନିୟନ୍ତ୍ରଣ କରୁଥିବା ଭଗବାନ୍‌ଙ୍କର ସବୁ ପ୍ରକାରେ ସେମାନଙ୍କ ଉପରେ କୃପା ଥାଏ।

୫୬- ତାଙ୍କର ପ୍ରତ୍ୟେକ କ୍ରିୟାରେ ଜଗତର ହିତ ଭରି ରହିଛି । ଭଗବାନ୍ ଯାହାକୁ ମାରନ୍ତି ଓ ଦଣ୍ଡ ଦିଅନ୍ତି, ତାଙ୍କ ଉପରେ ଦୟା ମଧ୍ୟ କରନ୍ତି, ତାଙ୍କର

କୌଣସି ବିଧାନ ଦୟା ଓ ପ୍ରେମରହିତ ନୁହେଁ। ଏଥିପାଇଁ ଭଗବାନ୍ ସବୁ ଭୂତଙ୍କର ସୁହୃଦ୍ ।

୫୭- ସୁଖ-ଦୁଃଖ ଯାହା ବି ପ୍ରାପ୍ତ କରୁଛ, ସେଥିରେ ତାଙ୍କର ଦୟା ଦେଖ। ନିଜଦ୍ୱାରା କରାଯାଉଥିବା କ୍ରିୟାରେ ମଧ୍ୟ ଏହା ଦେଖ ଯେ ଭଗବାନ୍‌ଙ୍କ 'ରୁଚି' କ'ଣ ? ଯାହାର ଭଗବାନ୍‌ଙ୍କ ରୁଚି ଓ ଦୟା ଆଡକୁ ସ୍ମରଣ ରହିବ, ସେହି ପୁରୁଷକୁ ଭଗବାନ୍‌ଙ୍କ ସ୍ୱରୂପ ସ୍ମରଣ ତ ଦୁଇ ପ୍ରକାରରେ ସଙ୍ଗେ ସଙ୍ଗେ ହେଉଥାଏ।

୫୮- ହାନି-ଲାଭ, ଜୟ-ପରାଜୟ ଏବଂ ସୁଖ-ଦୁଃଖ ଆଦିରେ ସମାନରୂପରେ ଈଶ୍ୱରଙ୍କ ଦୟା ଦର୍ଶନ କର।

୫୯- ଶରୀରକୁ ସମର୍ପଣ କରି ଦେବା ପରେ ତତ୍-ସମ୍ବନ୍ଧୀୟ ସୁଖ-ଦୁଃଖରେ ସାଧକକୁ ଭଗବାନ୍‌ଙ୍କ ଦୟା ସ୍ପଷ୍ଟ ରୂପରେ ଦେଖିବାକୁ ମିଳେ।

୬୦- ଦୟାଳୁ ଡାକ୍ତର ଯେପରି ପାଚି ଯାଇଥିବା ବଥକୁ ଚିରି ଦେଇ ପୂଯରକ୍ତ ବାହାର କରି ଦେଇ ତାକୁ ରୋଗମୁକ୍ତ କରି ଦିଅନ୍ତି, ସେହିପ୍ରକାର ଭଗବାନ୍ ଭକ୍ତଙ୍କ ହିତପାଇଁ କେବେ କେବେ କଷ୍ଟରୂପୀ କଟାକଟି କରି ତାହାକୁ ନିରୋଗ କରି ଦିଅନ୍ତି। ସେଥିରେ ଭଗବାନ୍‌ଙ୍କର ଦୟା ଭରି ରହିଥାଏ।

୬୧- ମା' ସ୍ନେହରେ ଯଦି ପିଲାକୁ ଧରି ତାହାର ବଥକୁ ଚିରି ଦିଅନ୍ତି, ତେବେ ଚିନ୍ତା କରିବା ଅନୁଚିତ। ମା' ଦେଖିଥାନ୍ତି ଯେ ପିଲା ଯଦି କାନ୍ଦେ ତେବେ ତାହା ତା'ର ବାଳକ ପଣିଆ। ବୁଝିବା ପିଲା କେବେ କାନ୍ଦିବ ନାହିଁ। ଆମ ଉପରେ କୌଣସି ଦୁଃଖ ଆସିଲେ ବୁଝିବା ଉଚିତ—ଆମରି ମା' ଭଗବାନ ଆମକୁ ସୁଖୀ କରାଇବା ଉଦ୍ଦେଶ୍ୟରେ, ପବିତ୍ର କରିବା ଉଦ୍ଦେଶ୍ୟରେ କୋଳକୁ ନେଇ ବଥକୁ ଚିରି ଦେଉଛନ୍ତି।

୬୨- ତାଡ଼ନାରେ ମଧ୍ୟ ମା'ର ଦୟା ପୂରି ରହିଥାଏ। ମା'ର ଦୟା ଉପରେ ବିଶ୍ୱାସ କରୁଥିବା ପିଲାପରି ଯେ ଭଗବାନ୍‌ଙ୍କର ଦୟା ତତ୍ତ୍ୱକୁ ଜାଣି ନିଏ ଏବଂ ଭଗବାନ୍‌ଙ୍କଦ୍ୱାରା ମାଡ ବେଳେ ଭଗବାନ୍‌ଙ୍କୁ ହିଁ ଡାକେ, ଭଗବାନ୍ ତାହାକୁ ନିଜ ହୃଦୟରେ ଲଗାଇ ଦିଅନ୍ତି। ପୁଣି ଯିଏ ଭଗବାନ୍‌ଙ୍କ କୃପାକୁ ବିଶେଷରୂପରେ ଜାଣେ, ତା କଥା ଆଉ କ'ଣ ?

୬୩- ସମସ୍ତ ମାତାଙ୍କ ହୃଦୟରେ ନିଜର ପିଲାମାନଙ୍କ ପାଇଁ ଯେତିକି ଦୟା ଓ ସ୍ନେହ ଅଛି, ସେ ସବୁ ମିଶି ମଧ୍ୟ ସେହି ଦୟାସାଗରଙ୍କ ଦୟାର ଏକ ବିନ୍ଦୁ ସଙ୍ଗେ ସମାନ ହେବ ନାହିଁ।

୬୪- ଶ୍ରଦ୍ଧାଭକ୍ତି ପୂର୍ବକ ବିଗ୍ଚର କଲେ କ୍ଷଣ-କ୍ଷଣରେ, ପଦେ-ପଦେ,

ପ୍ରତ୍ୟେକ ଅବସ୍ଥାରେ ମନୁଷ୍ୟକୁ ଭଗବାନ୍‌ଙ୍କର ଦୟାର ଦର୍ଶନ ହେବାକୁ ଲାଗେ। ସବୁ ଜୀବଙ୍କୁ ଜଳ, ବାୟୁ, ଆଲୋକ ଆଦି ତତ୍ତ୍ୱଦ୍ୱାରା ସୁଖ ମିଳେ। ଏଣୁ ଜୀବମାନଙ୍କର ନିର୍ବାହ ହେଉଅଛି, ଖାଇବା ପିଇବା ଚଳୁଛି, ଏହି ସବୁରେ ଭଗବାନ୍‌ଙ୍କର ସମାନ ଦୟା ବ୍ୟାପ୍ତ।

୬୫- ମନୁଷ୍ୟକୁ ଶୁଭ ଓ ଅଶୁଭ କର୍ମ ଅନୁସାରେ ଫଳଭୋଗର ବ୍ୟବସ୍ଥା କରିଦେବା ହିଁ ଭଗବାନ୍‌ଙ୍କ ଦୟାର ହାତ।

୬୬- ଟିକିଏ ଜପ, ଧ୍ୟାନ ଓ ସତ୍‌ସଙ୍ଗ କଲେ ମନୁଷ୍ୟର ଜନ୍ମ ଜନ୍ମାନ୍ତର ପାପ ନାଶ ହୋଇ ଯିବାର ଯେଉଁ ନିୟମ ହୋଇଛି, ସେଥିରେ ଭଗବାନ୍‌ଙ୍କର ଅସୀମ ଦୟା ପୂରି ରହିଛି।

୬୭- ସ୍ତ୍ରୀ, ପୁତ୍ର, ଧନ ଓ ଗୃହ ଆଦି ସାଂସାରିକ ପଦାର୍ଥର ପ୍ରାପ୍ତି ଓ ତାହାର ବିନାଶ ହେବାରେ, ଶରୀରର ସ୍ୱାସ୍ଥ୍ୟ ଠିକ୍ ରହିବା ବା ନ ରହିବାରେ, ରୋଗ ଓ ସଙ୍କଟାଦିର ପ୍ରାପ୍ତି ଓ ବିନାଶରେ ତଥା ସୁଖ-ସମ୍ପତ୍ତି ଓ ଦୁଃଖର ପ୍ରାପ୍ତି ଆଦି ପ୍ରତ୍ୟେକ ଅବସ୍ଥାରେ ମନୁଷ୍ୟକୁ ଭଗବାନ୍‌ଙ୍କ ଦୟାର ଦର୍ଶନ ଅଭ୍ୟାସ କରିବା ଉଚିତ।

୬୮- ଯିଏ ସାଂସାରିକ ଭୋଗ-ପଦାର୍ଥମାନଙ୍କର ବିୟୋଗରେ ମଧ୍ୟ ଭଗବାନ୍‌ଙ୍କ ଦୟାକୁ ଦର୍ଶନ କରି ସଦା ପ୍ରସନ୍ନ ରହେ, ସେ ତାଙ୍କର ଦୟାର ରହସ୍ୟକୁ ଠିକ୍ ଜାଣେ।

୬୯- ସୁଖୀ ଓ ଦୁଃଖୀ, ମହାତ୍ମା ଓ ପାପୀ ଜୀବମାନଙ୍କ ସହ ମିଳନ ଓ ବିଚ୍ଛେଦ ହେବା ସମୟରେ ଏବଂ ସେମାନଙ୍କ ସହିତ କୌଣସି ପ୍ରକାର ସମ୍ବନ୍ଧ ହେବା ସମୟରେ, ସର୍ବଦା ଭଗବାନ୍‌ଙ୍କ ଦୟାର ଦର୍ଶନ କରିବା ଉଚିତ।

୭୦- ଦୈବୀ ସମ୍ପଦଗୁଡ଼ିକର ପ୍ରାପ୍ତି ଓ ଆସୁରୀ ସମ୍ପଦଗୁଡ଼ିକର ନାଶରେ ଭଗବାନ୍‌ଙ୍କ ଦୟା ହିଁ ପ୍ରଧାନ କାରଣ।

୭୧- ଭଗବାନ୍‌ଙ୍କୁ ସର୍ବଦା ସ୍ମରଣ ରଖିବା ଉଚିତ। ସ୍ତ୍ରୀ-ପୁତ୍ର ଆଦି ପ୍ରାପ୍ତ ହେଲେ ଏପରି ବୁଝ ଯେ ଭଗବତ୍ ପ୍ରାପ୍ତିରେ ସହାୟତା ପାଇଁ ଏଗୁଡ଼ିକ ମିଳିଛି ଏବଂ ସେଗୁଡ଼ିକ ନାଶ ହେବା ବେଳେ ଏହା ବୁଝ ଯେ ମୁଁ ଆସକ୍ତିରେ ପଡିଯାଇଥିଲି ଏଣୁ ଭଗବାନ୍ ଦୟା କରି ଏଗୁଡ଼ିକ ହଟାଇ ଦେଲେ। ଏହିପ୍ରକାର ଅନ୍ୟ ଜିନିଷମାନଙ୍କର ପ୍ରାପ୍ତି ଓ ବିନାଶରେ ମଧ୍ୟ ବୁଝିବା ଉଚିତ।

୭୨- ଭଜନ, ଧ୍ୟାନ, ସେବା, ସତ୍‌ସଙ୍ଗ, ସଦ୍‌ଗୁଣ ଓ ସଦାଚାର ଆଦିରେ ଯେଉଁ ସ୍ଫୁର୍ତ୍ତି, ଇଚ୍ଛା ଓ ପ୍ରାପ୍ତି ହୁଏ—ତାହା ଭଗବାନ୍‌ଙ୍କ ବିଶେଷ ଦୟା।

୭୩- ଆମ ଉପରେ ପ୍ରଭୁଙ୍କର ଅପାର ଦୟା ଅଛି। ସେ ଦେଖନ୍ତି ଯେ

ଟିକିଏ ସୁଯୋଗ ହେଲେ ମୁଁ ପ୍ରକଟ ହୋଇ ଯିବି, ଟିକିଏ ସୁବିଧା ମିଳିଗଲେ ଭକ୍ତକୁ ଦର୍ଶନ ଦେଇ ଦେବି।

୭୪- ଭଗବାନ୍‌ଙ୍କ ଦୟାର ପ୍ରଭାବକୁ ଜାଣିଥିବା ପୁରୁଷମାନଙ୍କ ସଙ୍ଗରେ ମନୁଷ୍ୟକୁ ଭଗବାନ୍‌ଙ୍କ ନିତ୍ୟ ଦୟାର ଜ୍ଞାନ ହୋଇଯାଏ, ଦୟାର ଜ୍ଞାନଦ୍ୱାରା ଭଜନର ମର୍ମ ବୁଝି ହୁଏ, ପୁଣି ତାର ଭଜନରେ ପ୍ରବୃତ୍ତି ହୋଇଯାଏ ଏବଂ ଭଜନର ନିତ୍ୟ-ନିରନ୍ତର ଅଭ୍ୟାସଦ୍ୱାରା ତାହାର ସମସ୍ତ ସଞ୍ଚିତ ପାପ ନଷ୍ଟ ହୋଇଯାଏ ଏବଂ ତାକୁ ପରମାତ୍ମାଙ୍କ ପ୍ରାପ୍ତିରୂପକ ପୂର୍ଣ୍ଣ ଲାଭ ମିଳେ।

୭୫- ଯେତିକି ଯେତିକି ଭଗବାନ୍‌ଙ୍କର ଦୟାର ତତ୍ତ୍ୱ ଓ ପ୍ରଭାବକୁ ମନୁଷ୍ୟ ଅଧିକ-ରୁ-ଅଧିକ ଜାଣିବାକୁ ସମର୍ଥ ହୁଏ, ସେତିକି ସେତିକି ତାହାର ଦୁଃଖ, ଦୁର୍ଗୁଣ ଓ ପାପଗୁଡ଼ିକର ନାଶ ହେଉଥାଏ ଏବଂ ଫଳତଃ ସେ ନିର୍ଭୟ ଓ ନିଶ୍ଚିନ୍ତ ହୋଇ ପରମ ଶାନ୍ତି ଓ ପରମ ଆନନ୍ଦ ପ୍ରାପ୍ତ ହୁଏ।

୭୬- ଦୟାସାଗର ଭଗବାନ୍‌ଙ୍କ ଦୟାର ତତ୍ତ୍ୱ ଓ ରହସ୍ୟକୁ ଯଥାର୍ଥ ଜାଣିଥିବା ପୁରୁଷ ମଧ୍ୟ ଦୟାର ସମୁଦ୍ର ଓ ସମସ୍ତ ଭୂତଙ୍କର ସୁହୃଦ୍ ହୋଇଯାଏ।

୭୭- ଯେଉଁ ପୁରୁଷ ଭଗବତ୍ କୃପାର ରହସ୍ୟକୁ ବୁଝି ଯାଏ, ତାଙ୍କଠାରେ ଦୟା, ଗମ୍ଭୀରତା, ଶାନ୍ତି ଓ ସରଳତା ଆଦି ସଦ୍‌ଗୁଣ ସ୍ୱୟଂ ହିଁ ଆସିଯାଏ। ତାଙ୍କ ହୃଦୟରେ ଆନନ୍ଦର ସମୁଦ୍ର ଉଚ୍ଛୁଳି ପଡ଼େ ତଥା ଦୃଷ୍ଟିରେ ସର୍ବତ୍ର ସମତାର ସାମ୍ରାଜ୍ୟ ଛାଇ ଯାଏ।

୭୮- ଯେଉଁ ପରମେଶ୍ୱର ମହାପାମର ଦୀନ-ଦୁଃଖୀ ଅନାଥର ପ୍ରାର୍ଥନାରେ ତାହାର ଦୁର୍ଗୁଣ ଓ ଦୁରାଗ୍ରହକୁ ସ୍ମରଣ ନ ରଖି ପିଲାକୁ ମା' ପରି ଗଳାରେ ଲଗାଇ ଦିଅନ୍ତି, ଏପରି ସେହି ପରମ ଦୟାଳୁ ସତ୍ ହିତୈଷୀ ପରମ ପୁରୁଷଙ୍କର ଏହି ଦୟାର ତତ୍ତ୍ୱକୁ ଜାଣିଥିବା ପୁରୁଷ ତାଙ୍କ ପ୍ରାପ୍ତିରୁ କିପରି ବଞ୍ଚିତ ରହି ପାରିବେ।



# ଭକ୍ତି

୧- ଧର୍ମ, ଅର୍ଥ, କାମ ଏବଂ ମୋକ୍ଷ—ଚାରିଟି ପଦାର୍ଥ ମିଳିବାର ସରଳ ଉପାୟ ହେଲା ଶ୍ରୀହରିଙ୍କ ସେବା।

୨- ଭକ୍ତି ଏକ ଏପରି ସାଧନ ଯାହାକୁ ସମସ୍ତେ ସହଜରେ କରି ପାରିବେ ଏବଂ ଯେଉଁଥିରେ ସବୁ ମନୁଷ୍ୟଙ୍କର ଅଧିକାର ଅଛି।

୩- ଏହି କଳିକାଳରେ ତ ଭକ୍ତି ପରି ଆତ୍ମୋଦ୍ଧାର ନିମନ୍ତେ କୌଣସି ଅନ୍ୟ ସୁଗମ ଉପାୟ ନାହିଁ, କାରଣ ଜ୍ଞାନ, ଯୋଗ, ତପ, ଯଜ୍ଞ ଆଦି ଏହି ସମୟରେ ସିଦ୍ଧ ହେବା କଠିନ କଥା।

୪- ଅନିର୍ବଚନୀୟ ବ୍ରହ୍ମାନନ୍ଦ ପ୍ରାପ୍ତିପାଇଁ ଭଗବଦ୍‌ଭକ୍ତି ସଦୃଶ କୌଣସି ଯୁଗରେ ଅନ୍ୟ କୌଣସି ବି ସୁଗମ ଉପାୟ ନାହିଁ। କଳିଯୁଗରେ ତ ଅନ୍ୟ କିଛି ନାହିଁ।

୫- ମନୁଷ୍ୟମାତ୍ରକେ ଭଗବଦ୍‌ଭକ୍ତିରେ ସମାନ ଅଧିକାର ଅଛି। କେହି ଯେ କୌଣସି ବର୍ଣ୍ଣର, ଯେ କୌଣସି ଜାତିର, ଯେ କୌଣସି ସମାଜର ଏବଂ ଯେ କୌଣସି ଅବସ୍ଥାର ହେଉ ନା କାହିଁକି, ଭଗବାନ୍‌ଙ୍କୁ ଭକ୍ତି କରିବାରେ ପ୍ରତିବନ୍ଧକ କିଛି ନାହିଁ।

୬- ଭକ୍ତି ପାଇଁ ବିଦ୍ୟା ଓ ବୁଦ୍ଧିର ଆବଶ୍ୟକତା କିଛି ନାହିଁ । ମୂର୍ଖ-ରୁ-ବଳି ମୂର୍ଖ ଏବଂ ପାପୀ-ରୁ-ବଳି ପାପୀ ମଧ୍ୟ ଭଗବାନ୍‌ଙ୍କୁ ଭକ୍ତି କରିବାଦ୍ୱାରା ପରମ ପବିତ୍ର ହୋଇ ତାଙ୍କରି କୃପା ପ୍ରାପ୍ତ କରିପାରେ। ସେହି କୃପାବଳରେ ସେ ଶୀଘ୍ର ପରମାତ୍ମାଙ୍କୁ ଲାଭ କରିପାରେ।

୭- ଈଶ୍ୱରଙ୍କ ଭକ୍ତିରେ ବୟସ ବା ରୂପର କିଛି ମୂଲ୍ୟ ନାହିଁ। ବିଦ୍ୟା, ଧନ, ଜାତି ଓ ବଳ—ଏହା ମଧ୍ୟ ମୁଖ୍ୟ ନୁହେଁ ଏବଂ ସଦ୍‌ଗୁଣ ଓ ସଦାଚାର ପ୍ରତି ମଧ୍ୟ ଭଗବାନ୍ ଏତେ ଦୃଷ୍ଟି ଦିଅନ୍ତି ନାହିଁ, ସେ କେବଳ ପ୍ରେମକୁ ଦେଖନ୍ତି।

୮- ବର୍ତ୍ତମାନ ସମୟରେ କଲ୍ୟାଣ ପ୍ରାପ୍ତି ପାଇଁ ସବୁଠାରୁ ସୁଗମ ଓ ଉତ୍ତମ ଉପାୟ ଭକ୍ତି ସହିତ ନିଷ୍କାମ କର୍ମଯୋଗ ଅଟେ। ଏହାର ବଡ ସୁନ୍ଦର ଉପଦେଶ ଗୀତାର ଅଷ୍ଟାଦଶ ଅଧ୍ୟାୟର ୫୬ ଠାରୁ ୬୬ ପର୍ଯ୍ୟନ୍ତ ଏଗାରଟି ଶ୍ଳୋକରେ ଅଛି।

୯- ଭଗବାନ୍‌ଙ୍କ ଭକ୍ତି ମଧ୍ୟ ତାଙ୍କ ତତ୍ତ୍ୱଜ୍ଞାନ କରାଇବାର ସର୍ବଶ୍ରେଷ୍ଠ ସାଧନ। ଅତଏବ ମନୁଷ୍ୟ ଶ୍ରଦ୍ଧା ଓ ପ୍ରେମପୂର୍ବକ ଭଗବଦ୍‌ଭକ୍ତିର ଅଭ୍ୟାସ କରିବା ବିଧେୟ।

୧୦- ଭଗବାନ୍‌ଙ୍କ ସ୍ୱରୂପର ଯଥାର୍ଥ ଜ୍ଞାନ ତାଙ୍କୁ ଭକ୍ତି କରିବାରୁ ହୁଏ।

୧୧- ଭକ୍ତିତତ୍ତ୍ୱକୁ ବୁଝିବା ବଡ କଠିନ।

୧୨- ଭକ୍ତିର ପରମ ତତ୍ତ୍ୱ ଭଗବାନ୍‌ଙ୍କ ଶରଣ ହେଲେ ଜଣାଯାଇପାରେ।

୧୩- ପରମାତ୍ମାଙ୍କଠାରେ ଅନନ୍ୟ ବିଶୁଦ୍ଧ ପ୍ରେମ ହେବାକୁ ଭକ୍ତି କୁହାଯାଏ ।

୧୪- ଭକ୍ତିର ଦୁଇଟି ପ୍ରଧାନ ଭେଦ ଅଛି। ଗୋଟିଏ ସାଧନରୂପ, ଯାହାକୁ

ବୈଧ ଏବଂ ନବଧା ନାମରେ ମଧ୍ୟ କୁହାଯାଏ ଏବଂ ଅନ୍ୟଟି ସାଧ୍ୟରୂପ ଯାହାକୁ ପ୍ରେମା-ପ୍ରେମଲକ୍ଷଣା ଆଦି ନାମରେ କୁହାଯାଏ। ଏଥିମଧ୍ୟରୁ ନବଧା ସାଧନରୂପ ଏବଂ ପ୍ରେମ ସାଧ୍ୟ ଅଟେ।

୧୫- ସ୍ୱାମୀ ଯେପରି ସନ୍ତୁଷ୍ଟ ହେବେ, ସେହି ପ୍ରକାର ଭାବରେ ଭାବିତ ହୋଇ ତାଙ୍କ ଆଜ୍ଞାନୁସାରେ ଆଚରଣ କରିବାର ନାମ ବୈଧ ଭକ୍ତି।

**ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍।**
**ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍॥**

(ଶ୍ରୀମଦ୍‌ଭାଗବତ ୭।୫।୨୩)

୧୬- ଭଗବାନ୍ ବିଷ୍ଣୁଙ୍କର ନାମ, ଗୁଣ, ରୂପ, ପ୍ରଭାବାଦିର ଶ୍ରବଣ, କୀର୍ତ୍ତନ ଏବଂ ସ୍ମରଣ ତଥା ଭଗବାନ୍‌ଙ୍କ ଚରଣ ସେବା, ପୂଜା ଓ ବନ୍ଦନା ଏବଂ ଭଗବାନ୍‌ଙ୍କଠାରେ ଦାସ୍ୟଭାବ, ସଖାଭାବ ଏବଂ ନିଜକୁ ସମର୍ପଣ କରିଦେବା— ଏହା ହେଲା ନଅ ପ୍ରକାରର ଭକ୍ତି।

୧୭- ଭଗବାନ୍‌ଙ୍କ ପ୍ରେମୀ ଭକ୍ତମାନଙ୍କଦ୍ୱାରା କଥିତ ଭଗବାନ୍‌ଙ୍କ ନାମ, ରୂପ, ଗୁଣ, ପ୍ରଭାବ, ଲୀଳା, ତତ୍ତ୍ୱ ଏବଂ ରହସ୍ୟର ଅମୃତମୟୀ କଥାମାନଙ୍କୁ ଶ୍ରଦ୍ଧା ଓ ପ୍ରେମପୂର୍ବକ ଶ୍ରବଣ କରିବା ଏବଂ ସେହି ଅମୃତମୟୀ କଥାମାନ ଶ୍ରବଣ କରି ବୀଣା ଶୁଣି ହରିଣ ଯେପରି ମୁଗ୍ଧ ହୋଇଯାଏ, ସେପରି ମୁଗ୍ଧ ହୋଇଯିବା ହିଁ ଶ୍ରବଣଭକ୍ତିର ସ୍ୱରୂପ।

୧୮- କେବଳ ଶ୍ରବଣ ଭକ୍ତିଦ୍ୱାରା ଭଗବାନ୍‌ଙ୍କ ପ୍ରାପ୍ତି ହୋଇପାରେ।

୧୯- ଧୁନ୍ଧୁକାରୀ ପରି ପାପୀ କେବଳ ଭଗବାନ୍‌ଙ୍କ ଗୁଣାନୁବାଦମାନଙ୍କୁ ଶୁଣିବା ପ୍ରଭାବରେ ତରି ଗଲା।

୨୦- ସତ୍‌ସଙ୍ଗ ହିଁ ଶ୍ରବଣଭକ୍ତିର ହେତୁ।

୨୧- ଭଗବାନ୍‌ଙ୍କର ନାମ, ରୂପ, ଗୁଣ, ପ୍ରଭାବ, ଚରିତ୍ର ଓ ରହସ୍ୟକୁ ଶ୍ରଦ୍ଧା ଓ ପ୍ରେମପୂର୍ବକ ଆଚରଣ କରିବା ସହିତ ଶରୀରରେ ରୋମାଞ୍ଚ, କଣ୍ଠାବରୋଧ, ଅଶ୍ରୁପାତ, ହୃଦୟରେ ପ୍ରଫୁଲ୍ଲତା, ମୁଗ୍ଧତା ଆଦି ହେବା କୀର୍ତ୍ତନ-ଭକ୍ତିର ସ୍ୱରୂପ।

୨୨- କେବଳ କୀର୍ତ୍ତନ ଭକ୍ତିଦ୍ୱାରା ମଧ୍ୟ ମନୁଷ୍ୟ ପରମାତ୍ମାଙ୍କ ଦୟାରେ ଅନନ୍ୟ ପ୍ରେମ କରି ତାଙ୍କୁ ପ୍ରାପ୍ତ କରିପାରେ।

୨୩- ପ୍ରଭୁଙ୍କ ନାମ, ଗୁଣ, ରୂପ, ପ୍ରଭାବ, ଲୀଳା, ତତ୍ତ୍ୱ  ରହସ୍ୟର ଅମୃତମୟୀ କଥାମାନଙ୍କୁ ଯେଉଁ ଶ୍ରଦ୍ଧା ଓ ପ୍ରେମପୂର୍ବକ ଶ୍ରବଣ ତଥା ପଠନ

କରାଯାଏ, ସେଗୁଡ଼ିକୁ ମନନ କରିବା ଏବଂ ଏହି ପ୍ରକାର ମନନ କରି ଦେହଜ୍ଞାନ ଭୁଲି ଭଗବାନ୍‌ଙ୍କ ସ୍ୱରୂପରେ ଧ୍ରୁବଙ୍କ ପରି ତଲ୍ଲୀନ ହୋଇଯିବା ସ୍ମରଣ ଭକ୍ତିର ସ୍ୱରୂପ ।

୨୪- ଏକାନ୍ତ ପବିତ୍ର ସ୍ଥାନରେ ସୁଖପୂର୍ବକ ସ୍ଥିର, ସରଳ ଆସନରେ ବସି ଇନ୍ଦ୍ରିୟମାନଙ୍କୁ ବିଷୟମାନଙ୍କରୁ ରହିତ କରି କାମନା ଓ ସଂକଳ୍ପକୁ ତ୍ୟାଗ କରି ପ୍ରଶାନ୍ତ ଓ ବୈରାଗ୍ୟଯୁକ୍ତ ଚିତ୍ତରେ ଅଥବା ଚ୍ଳଲିବା-ବୁଲିବା, ଖାଇବା-ପିଇବା, ଶୋଇବା-ଉଠିବା-ଚେଇଁବା ଆଦି ସବୁକାମ କରି ସ୍ୱାଭାବିକ, ଶୁଦ୍ଧ ଓ ସରଳଭାବରେ ଭଗବାନ୍‌ଙ୍କ ସଗୁଣ, ନିର୍ଗୁଣ, ସାକାର, ନିରାକାର ତତ୍ତ୍ୱକୁ ଜାଣି ଗୁଣ ଓ ପ୍ରଭାବ ସହିତ ଭଗବାନ୍‌ଙ୍କ ସ୍ୱରୂପକୁ ଚିନ୍ତନ କରିବା, ଭଗବାନ୍‌ଙ୍କ ନାମକୁ ମନରେ ସ୍ମରଣ କରିବା, ଭଗବାନ୍‌ଙ୍କ ଲୀଳାକୁ ସ୍ମରଣ କରି ମୁଗ୍ଧ ହେବା, ଭଗବାନ୍‌ଙ୍କ ତତ୍ତ୍ୱ ଓ ରହସ୍ୟକୁ ଜାଣିବା ପାଇଁ ତାଙ୍କ ଗୁଣ ଓ ପ୍ରଭାବକୁ ଚିନ୍ତନ କରିବା ତଥା ଦିବ୍ୟ ସ୍ତୋତ୍ର ଓ ପଦମାନଙ୍କରେ ମନଦ୍ୱାରା ସ୍ତୁତି ଓ ପ୍ରାର୍ଥନା କରିବା, ଏହିପ୍ରକାର ସ୍ମରଣର ବହୁତ ପ୍ରକାର ଶାସ୍ତ୍ରମାନଙ୍କରେ କୁହାଯାଇଛି ।

୨୫- ପ୍ରେମୀ ଭକ୍ତମାନଙ୍କଦ୍ୱାରା ନାମ, ରୂପ, ଗୁଣ, ପ୍ରଭାବ ଆଦିର ଅମୃତମୟୀ କଥାମାନଙ୍କୁ ଶ୍ରଦ୍ଧା ଓ ପ୍ରେମପୂର୍ବକ ସ୍ମରଣ କରିବା, ଭଗବଦ୍‌ବିଷୟକ ଧାର୍ମିକ ପୁସ୍ତକମାନଙ୍କର ପଠନ-ପାଠନ କରିବା, ଭଗବାନ୍‌ଙ୍କ ନାମର ଜପ ଓ କୀର୍ତ୍ତନ କରିବା, ଭଗବାନ୍‌ଙ୍କୁ ପଦ ଏବଂ ସ୍ତୋତ୍ରମାନଙ୍କଦ୍ୱାରା ଅଥବା କୌଣସି ବି ପ୍ରକାରରେ ଧ୍ୟାନ ପାଇଁ କରୁଣାଭାବରେ ସ୍ତୁତି ପ୍ରାର୍ଥନା କରିବା ତଥା ଭଗବାନ୍ ଓ ମହାପୁରୁଷମାନଙ୍କର ଆଜ୍ଞା ପାଳନ କରିବା ଆଦି ଉପର୍ଯ୍ୟୁକ୍ତ ସ୍ମରଣଭକ୍ତିକୁ ପ୍ରାପ୍ତ କରିବାର ଉପାୟ ଅଟେ ।

୨୬- କେବଳ ସ୍ମରଣ ଭକ୍ତିରେ ସମସ୍ତ ପାପ, ବିଘ୍ନ, ଅବଗୁଣ ଓ ଦୁଃଖର ଅତ୍ୟନ୍ତ ଅଭାବ ହୋଇଯାଏ । ଭଗବତ୍‌ସ୍ମରଣଦ୍ୱାରା ମନୁଷ୍ୟ ଯାହା କିଛି ଚ୍ଛହିଁଲେ ପ୍ରାପ୍ତ କରି ପାରେ । ଭଗବତ୍‌ପ୍ରାପ୍ତିରୂପକ ପରମଶାନ୍ତିର ପ୍ରାପ୍ତି ମଧ୍ୟ ଏହାଦ୍ୱାରା ଅତି ଶୀଘ୍ର ଏବଂ ସହଜରେ ହୋଇଯାଏ ।

୨୭- ଶ୍ରୁତି-ସ୍ମୃତି, ଇତିହାସ-ପୁରାଣ, ସନ୍ଥ-ମହାତ୍ମା ସମସ୍ତେ ଏକ ସ୍ୱରରେ ଭଗବଦ୍‌ସ୍ମରଣ (ଧ୍ୟାନ)ର ବଡ ମହିମା ଗାଇଛନ୍ତି ।

୨୮- ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଚରଣକମଳରେ ସ୍ମୃତି ସବୁ ପାପକୁ ନାଶ କରି ଦିଏ ତଥା ଅନ୍ତଃକରଣର ଶୁଦ୍ଧି, ପରମାତ୍ମାଙ୍କଠାରେ ଭକ୍ତି, ବିଜ୍ଞାନ-ବୈରାଗ୍ୟ ସହ ଜ୍ଞାନ ଏବଂ ଶାନ୍ତିର ବିସ୍ତାର କରେ ।

୨୯- ଭଗବତ୍‌ପ୍ରାପ୍ତିର ଇଚ୍ଛୁକ ସାଧକ ସବୁ କାର୍ଯ୍ୟ କରି ମଧ୍ୟ କଚ୍ଛପ ଅଣ୍ଡାକୁ, ଗାଈ ବାଛୁରୀକୁ, କାମୀ ସ୍ତ୍ରୀକୁ, ଲୋଭୀ ଧନକୁ, ନଟୀ ନିଜର ଚରଣକୁ, ଡ୍ରାଇଭର ସଡକକୁ ଧ୍ୟାନ ରଖିବାପରି ପରମାତ୍ମାଙ୍କୁ ଧ୍ୟାନ ରଖିବା ଆବଶ୍ୟକ।

୩୦- ବାରମ୍ବାର ଅତୃପ୍ତ ନୟନରେ ଭଗବାନ୍‌ଙ୍କ ଚରଣାରବିନ୍ଦକୁ ଦର୍ଶନ କରିବା, ହାତଦ୍ୱାରା ଭଗବତ୍‌ଚରଣର ପୂଜା କରିବା ଓ ସେବନ କରିବା ତଥା ଚରଣୋଦକ ନେବା, ମନଦ୍ୱାରା ଭଗବତ୍‌ଚରଣର ଚିନ୍ତନ, ପୂଜନ ଓ ସେବନ କରିବା, ଭଗବାନ୍‌ଙ୍କର ଚରଣପାଦୁକାକୁ ହାତଦ୍ୱାରା ପୂଜନ ଓ ମନରେ ଚିନ୍ତନ, ପୂଜନ ଓ ସେବନ କରିବା, ଭଗବାନ୍‌ଙ୍କର ଚରଣରଜକୁ ମନଦ୍ୱାରା ମସ୍ତକରେ ଧାରଣ କରିବା, ହୃଦୟରେ ଲଗାଇବା, ଭଗବାନ୍‌ଙ୍କ ଚରଣ ସ୍ପର୍ଶ କରାଯାଇଥିବା ଶଯ୍ୟାସନ ଆଦିକୁ ତୀର୍ଥରୁ ବଳି ସମାଦର କରିବା, ଅଯୋଧ୍ୟା, ଚିତ୍ରକୂଟ, ବୃନ୍ଦାବନ, ମଥୁରା ଆଦି ସ୍ଥାନକୁ ଯେଉଁଠାରେ ଭଗବାନ୍‌ଙ୍କ ଅବତାର ପ୍ରାକଟ୍ୟ ହୋଇଛି ବା ଯେଉଁଠି ଭଗବାନ୍‌ଙ୍କ ଚରଣ ଚିହ୍ନ ରହିଛି, ପରମ ତୀର୍ଥ ମନେକରି ସେଠାକାର ଧୂଳିକୁ ଭଗବାନ୍‌ଙ୍କ ଚରଣ ଧୂଳି ଭାବି ମସ୍ତକରେ ଧାରଣ କରିବା, ଯେଉଁ ବସ୍ତୁଗୁଡ଼ିକ ଭଗବାନ୍‌ଙ୍କ ଚରଣ ସ୍ପର୍ଶ ପ୍ରାପ୍ତ କରିଛି, ସେହି ବସ୍ତୁକୁ ହୃଦୟରେ ଆଦର କରିବା ଏବଂ ତାହାକୁ ମସ୍ତକରେ ଧାରଣ କରିବା ତଥା ଗଙ୍ଗାଦେବୀଙ୍କ ଜଳକୁ ଭଗବାନ୍‌ଙ୍କ ଚରଣୋଦକ ବୁଝି ପ୍ରଣାମ, ପୂଜନ, ଧ୍ୟାନ, ପାନାଦିଦ୍ୱାରା ତାହାର ସେବନ କରିବା ଆଦି ସମସ୍ତ 'ପାଦସେବନ' ଭକ୍ତିର ବିଭିନ୍ନ ପ୍ରକାର ଅଟେ।

୩୧- ମମତା ଅହଙ୍କାର ଓ ଅଭିମାନ ଆଦିର ନାଶ ହୋଇ ପ୍ରଭୁଙ୍କ ଚରଣରେ ଅନନ୍ୟ ପ୍ରେମ ପ୍ରାପ୍ତି ହେବା ଉଦ୍ଦେଶ୍ୟରେ ପାଦ-ସେବନ ଭକ୍ତି କରାଯାଏ।

୩୨- ଭଗବାନ୍‌ଙ୍କ ଅନନ୍ୟ ଭକ୍ତଙ୍କର ସଙ୍ଗ କଲେ ଭଗବାନ୍‌ଙ୍କ ଚରଣ ସେବାର ତତ୍ତ୍ୱ ରହସ୍ୟ ଓ ପ୍ରଭାବ ଶୁଣିବାକୁ ମିଳେ। ଏହାଦ୍ୱାରା ଶ୍ରଦ୍ଧା ହୋଇ ଏହି ଭକ୍ତି ପ୍ରାପ୍ତ ହୁଏ।

୩୩- କେବଳ ପାଦସେବନ ଭକ୍ତିଦ୍ୱାରା ମନୁଷ୍ୟର ସମସ୍ତ ଦୁର୍ଗୁଣ-ଦୁରାଗ୍ରହ ଓ ଦୁଃଖ ସର୍ବଥା ନଷ୍ଟ ହୋଇଯାଏ ଏବଂ ଭଗବାନ୍‌ଙ୍କଠାରେ ଅତିଶୟ ଶ୍ରଦ୍ଧା ଓ ପ୍ରେମ ହୋଇ ତାଙ୍କୁ ଆତ୍ୟନ୍ତିକୀ ପରମା ଶାନ୍ତି ପ୍ରାପ୍ତି ହୁଏ। ତାଙ୍କ ପାଇଁ ଦୁର୍ଲଭ କିଛି ରହେ ନାହିଁ।

୩୪- ଭଗବାନ୍ ବିଶ୍ୱେଶ୍ୱରଙ୍କ ଚରଣକମଳରୂପ ଜାହାଜ ହିଁ ଏକମାତ୍ର ଆଶ୍ରୟ।

୩୫- ନିତ୍ୟ-ନିରନ୍ତର ପ୍ରଭୁଙ୍କ ଚରଣକୁ ଦର୍ଶନ ଓ ସେବନ କରି ପ୍ରତିକ୍ଷଣରେ କେଉଁପ୍ରକାର ଆନନ୍ଦିତ ହେବା ଉଚିତ, ଏହାର ଆଦର୍ଶ ସୀତାଦେବୀ।

୩୬- ଭଗବାନ୍‌ଙ୍କର ଚରଣୋଦକ ପାନ କଲେ ଏବଂ ତାହାକୁ ମସ୍ତକ ଉପରେ ଧାରଣ କଲେ କଲ୍ୟାଣ ହୁଏ।

୩୭- ଭଗବାନ୍‌ଙ୍କ ଚରଣରେ ଆଶ୍ରୟ ନେଲେ ମନୁଷ୍ୟର ସବୁ ଦୋଷ ନାଶ ହୋଇଯାଏ, ତା'ର ସମସ୍ତ ବିପତ୍ତି ଗ୍ଳିଯାଏ ଏବଂ ସେ ଗୋଷ୍ପଦ ପରି ସଂସାରସାଗରରୁ ତରି ଯାଏ।

୩୮- ଭଗବାନ୍‌ଙ୍କ ପବିତ୍ର ଚରଣରେ ଶ୍ରଦ୍ଧାପୂର୍ବକ ମନ ଲଗାଇ ତାହାର ନିତ୍ୟ ସେବନ କରିବା ଉଚିତ।

୩୯- ଭଗବାନ୍‌ଙ୍କ ଭକ୍ତଙ୍କଠାରୁ ଶୁଣିଥିବା, ଶାସ୍ତ୍ରମାନଙ୍କରୁ ଶୁଣିଥିବା, ଧାତୁ ଆଦିରେ ତିଆରି ମୂର୍ତ୍ତି ବା ଚିତ୍ରପଟ ରୂପରେ ଦେଖିଥିବା, ନିଜର ମନକୁ ରୁଚୁଥିବା କୌଣସି ବି ଭଗବାନ୍‌ଙ୍କର ସ୍ୱରୂପକୁ ବାହ୍ୟ ସାମଗ୍ରୀମାନଙ୍କରେ, ଭଗବାନ୍‌ଙ୍କ କୌଣସି ବି ନିଜର ଅଭିଳଷିତ ସ୍ୱରୂପର ମାନସିକ ମୂର୍ତ୍ତି ଗଢ଼ି ମାନସିକ ସାମଗ୍ରୀମାନଦ୍ୱାରା ଅଥବା ସକଳ ଭୂତମାନଙ୍କରେ ପରମାତ୍ମାଙ୍କୁ ସ୍ଥିତ ବୋଲି ବୁଝି ସମସ୍ତଙ୍କର ଆଦର ସତ୍କାର କରି ଯଥାଯୋଗ୍ୟ ନାନାବିଧ ଉପଗ୍ଚାରମାନଦ୍ୱାରା ଶ୍ରଦ୍ଧା-ଭକ୍ତି-ପୂର୍ବକ ତାହାର ସେବନ-ପୂଜନ କରିବା ଏବଂ ତାହାର ତତ୍ତ୍ୱ, ରହସ୍ୟ ତଥା ପ୍ରଭାବ ବୁଝା-ବୁଝି କରି ପ୍ରେମରେ ମୁଗ୍ଧ ହେବା ଅର୍ଚ୍ଚନ-ଭକ୍ତି ଅଟେ।

୪୦- ପତ୍ର, ପୁଷ୍ପ, ଚନ୍ଦନ ଆଦି ସାତ୍ତ୍ୱିକ, ପବିତ୍ର ଓ ନ୍ୟାୟୋପାର୍ଜିତ ଦ୍ରବ୍ୟମାନଦ୍ୱାରା ପ୍ରତିମାର ଶ୍ରଦ୍ଧାପୂର୍ବକ ପୂଜନ କରିବା, ଭଗବାନ୍‌ଙ୍କ ପ୍ରୀତିପାଇଁ ଶାସ୍ତ୍ରୋକ୍ତ ଯଜ୍ଞ କରିବା, ସବୁକୁ ଭଗବାନ୍‌ଙ୍କ ସ୍ୱରୂପ ବୁଝି ନିଜର ବର୍ଣ୍ଣାଶ୍ରମ ଅନୁସାରେ ତାହାର ଯଥାଯୋଗ୍ୟ ସେବା କରିବା ତଥା ସତ୍କାର, ମାନ, ପୂଜା ଆଦିରେ ସନ୍ତୁଷ୍ଟ କରିବା ଏବଂ ଦୁଃଖୀ, ଅନାଥ, ଅଙ୍ଗହୀନ, ପୀଡିତ ପ୍ରାଣୀମାନଙ୍କ ମଧ୍ୟରେ ଭୋକିଲାକୁ ଅନ୍ନ ଦ୍ୱାରା, ତୃଷାର୍ତ୍ତକୁ ଜଳଦ୍ୱାରା, ବସ୍ତ୍ରହୀନକୁ ବସ୍ତ୍ରାଦିଦ୍ୱାରା, ରୋଗୀମାନଙ୍କୁ ଔଷଧଦ୍ୱାରା, ଅନାଥମାନଙ୍କୁ ଆଶ୍ରୟଦାନଦ୍ୱାରା ଯଥାବଶ୍ୟକ, ଯଥାଶକ୍ତି ଶ୍ରଦ୍ଧା ଓ ସତ୍କାରପୂର୍ବକ ସମସ୍ତଙ୍କୁ ଭଗବତ୍‌ସ୍ୱରୂପ ବୁଝି ଭଗବତ୍-ପ୍ରୀତିପାଇଁ ସେବା କରିବା ଆଦି ସବୁ ଭଗବାନ୍‌ଙ୍କ ବାହ୍ୟ ପୂଜାର ପ୍ରକାର ଅଟେ।

୪୧- ନିଜର ଚିତ୍ତକୁ ଅନାୟାସ ହିଁ ଆକର୍ଷିତ କରୁଥିବା ଭଗବାନଙ୍କର

କୌଣସି ବି ଅଲୌକିକ ରୂପ-ଲାବଣ୍ୟଯୁକ୍ତ, ଅନନ୍ତ, ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟମୟ ପରମ ତେଜୋମଣ୍ଡିତ ସ୍ୱରୂପର ପ୍ରତ୍ୟେକ ଅବୟବ, ବସ୍ତ୍ରାଭୂଷଣ, ଆୟୁଧାଦିରେ ଯୁକ୍ତ ଏବଂ ହସ୍ତପଦାଦିର ମଙ୍ଗଳ ଚିହ୍ନମାନଙ୍କ ସହିତ ମନଦ୍ୱାରା ଚିନ୍ତନ କରି ଆହ୍ଲାଦପୂର୍ବକ ମନରେ ତାହାର ଆବାହନ, ସ୍ଥାପନ ଓ ନାନାବିଧ ମାନସିକ ସାମଗ୍ରୀମାନଙ୍କ ଦ୍ୱାରା ଅତ୍ୟନ୍ତ ଶ୍ରଦ୍ଧା ଓ ପ୍ରେମର ସହିତ ପୂଜନ କରିବା ମାନସ-ପୂଜାର ପ୍ରକାର ଅଟେ ।

୪୨- ଯେଉଁ ଲୋକ ଏହି ସଂସାରରେ ଶ୍ରୀଭଗବାନ୍‌ଙ୍କୁ ପୂଜା-ଅର୍ଚ୍ଚନା କରେ, ସେ ଭଗବାନଙ୍କର ଅବିନାଶୀ ଆନନ୍ଦସ୍ୱରୂପ ପରମପଦକୁ ପାଏ ।

୪୩- ଭଗବାନ୍‌ଙ୍କୁ ପୂଜା କଲେ ମନୁଷ୍ୟ ଯାହା କିଛି ଚ୍ରହେଁ, ତାହା ତାକୁ ମିଳେ ଏବଂ ସହଜରେ ତାହାକୁ ଭଗବାନ୍‌ଙ୍କ ପ୍ରାପ୍ତି ହୋଇଯାଏ ।

୪୪- ଭଗବାନ୍‌ଙ୍କ ପ୍ରେମରେ ବିହ୍ୱଳ ହୋଇ ଶ୍ରଦ୍ଧାପୂର୍ବକ ନିଜ-ନିଜ ରୁଚି ଓ ଭାବନା ଅନୁସାରେ ଭଗବାନ୍‌ଙ୍କ ପୂଜା କରିବା ଉଚିତ ।

୪୫- ଭଗବାନ୍‌ଙ୍କର ଶାସ୍ତ୍ରବର୍ଣ୍ଣିତ ସ୍ୱରୂପ, ଭଗବାନ୍‌ଙ୍କର ନାମ, ଭଗବାନଙ୍କର ଧାତୁ ଆଦିର ମୂର୍ତ୍ତି, ଚିତ୍ର ଅଥବା ମାନସିକ ମୂର୍ତ୍ତିକୁ ଶରୀର ଅଥବା ମନଦ୍ୱାରା ଶ୍ରଦ୍ଧାସହିତ ସାଷ୍ଟାଙ୍ଗ ପ୍ରଣାମ କରିବା ବା ସମସ୍ତ ଚରାଚର ଭୂତମାନଙ୍କୁ ପରମାତ୍ମାଙ୍କ ସ୍ୱରୂପ ବୁଝି ଶ୍ରଦ୍ଧାପୂର୍ବକ ଶରୀର ବା ମନଦ୍ୱାରା ପ୍ରଣାମ କରିବା ଏବଂ ଏପରି କରି ଭଗବତ୍‌ପ୍ରେମରେ ମୁଗ୍ଧ ହୋଇଯିବା ବନ୍ଦନ ଭକ୍ତି ଅଟେ ।

୪୬- ଭଗବାନ୍‌ଙ୍କର ଅନନ୍ୟଭକ୍ତ ଯାବନ୍ମାତ୍ର ଜଗତକୁ ଭଗବଦ୍-ଭାବରେ ପ୍ରଣାମ କରେ ।

୪୭- ଭଗବାନ୍‌ଙ୍କ ମନ୍ଦିରକୁ ଯାଇ ଶ୍ରଦ୍ଧାଭକ୍ତିପୂର୍ବକ ଭଗବାନ୍‌ଙ୍କ ମୂର୍ତ୍ତିକୁ ସାଷ୍ଟାଙ୍ଗ ପ୍ରଣାମ କରିବା, ନିଜ-ନିଜ ଘରେ ଭଗବାନ୍‌ଙ୍କ ପ୍ରତିମା ବା ଚିତ୍ରପଟକୁ, ଭଗବାନ୍‌ଙ୍କ ନାମକୁ, ଭଗବାନ୍‌ଙ୍କ ଚରଣ ଏବଂ ଚରଣପାଦୁକାମାନଙ୍କୁ, ଭଗବାନ୍‌ଙ୍କ ତତ୍ତ୍ୱ, ରହସ୍ୟ, ପ୍ରେମ, ପ୍ରଭାବ ଏବଂ ଭଗବାନ୍‌ଙ୍କ ମଧୁର ଲୀଳାମାନଙ୍କର ବର୍ଣ୍ଣନା ଯେଉଁଥିରେ ଥାଏ, ଏପରି ସତ୍‌ଶାସ୍ତ୍ରମାନଙ୍କୁ ଏବଂ ସକଳ ଚରାଚର ଜୀବମାନଙ୍କୁ ଭଗବାନ୍‌ଙ୍କ ସ୍ୱରୂପ ବୁଝି ବା ସେମାନଙ୍କ ହୃଦୟରେ ଭଗବାନ୍‌ଙ୍କ ସ୍ଥିତି ବୁଝି ନିୟମପୂର୍ବକ ଶ୍ରଦ୍ଧାଭକ୍ତି-ସହିତ ଗଦ୍‌ଗଦଭାବରେ ପ୍ରଣାମ କରିବା ବନ୍ଦନ ଭକ୍ତିର ପ୍ରକାର ଅଟେ ।

୪୮- ଭଗବାନ୍‌ଙ୍କଠାରେ ଅନନ୍ୟ ପ୍ରେମ ହୋଇ ଭଗବାନ୍‌ଙ୍କୁ ପ୍ରାପ୍ତ କରିବା ଏହି ପ୍ରେମର ଉଦ୍ଦେଶ୍ୟ ।

୪୯- ଭଗବାନ୍‌ଙ୍କ ପ୍ରିୟ ପ୍ରେମୀଭକ୍ତମାନଙ୍କର ସଙ୍ଗ ଏବଂ ସେବନଦ୍ୱାରା ଭଗବାନ୍‌ଙ୍କ ବନ୍ଦନ-ଭକ୍ତିର ରହସ୍ୟ, ପ୍ରଭାବ ଓ ତତ୍ତ୍ୱ ବୁଝିଲେ ବନ୍ଦନ-ଭକ୍ତିର ପ୍ରାପ୍ତି ହୁଏ।

୫୦- ଭଗବାନ୍‌ଙ୍କ ରହସ୍ୟକୁ ବୁଝି ତାଙ୍କୁ ପ୍ରଣାମ କରୁଥିବା ଲୋକର ସବୁ ଦୁଃଖ ଚାଲିଯାଏ।

୫୧- ଶ୍ରଦ୍ଧାପୂର୍ବକ ଭଗବାନ୍‌ଙ୍କୁ ପ୍ରଣାମ କରୁଥିବା ଲୋକ କଥା କ'ଣ କହିବା? ଯେ କୌଣସି ଅବସ୍ଥାରେ ଭଗବାନ୍‌ଙ୍କୁ ପ୍ରଣାମ କଲେ ସବୁ ପାପ ନାଶ ହୋଇଯାଏ।

୫୨- ଭଗବାନ୍‌ଙ୍କ ଗୁଣ, ତତ୍ତ୍ୱ, ରହସ୍ୟ ଓ ପ୍ରଭାବକୁ ଜାଣି ଶ୍ରଦ୍ଧାପ୍ରେମପୂର୍ବକ ତାଙ୍କ ସେବା କରିବା ଓ ତାଙ୍କରି ଆଜ୍ଞାକୁ ପାଳନ କରିବା ଦାସ୍ୟଭକ୍ତି ଅଟେ ।

୫୩- ମନ୍ଦିରମାନଙ୍କରେ ଭଗବାନ୍‌ଙ୍କ ବିଗ୍ରହମାନଙ୍କୁ ସେବା କରିବା, ମନ୍ଦିରାଦି ମାର୍ଜନ କରିବା, ମନଦ୍ୱାରା ପ୍ରଭୁଙ୍କ ସ୍ୱରୂପକୁ ଧ୍ୟାନ କରି ତାହାର ସେବା କରିବା, ସମସ୍ତ ଚରାଚରକୁ ପ୍ରଭୁଙ୍କ ସ୍ୱରୂପ ମନେକରି ସମସ୍ତଙ୍କୁ ଯଥାଶକ୍ତି ଓ ଯଥାଯୋଗ୍ୟ ସେବା କରିବା, ଗୀତା ଆଦି ଶାସ୍ତ୍ରମାନଙ୍କୁ ଭଗବାନ୍‌ଙ୍କର ଆଜ୍ଞା ମାନି ତାହା ଅନୁସାରେ ଆଚରଣ କରିବା ଏବଂ ଯେଉଁ କର୍ମ ଭଗବାନ୍‌ଙ୍କ ରୁଚି, ପ୍ରସନ୍ନତା ଏବଂ ଇଚ୍ଛାର ଅନୁକୂଳ ହେବ ସେହି କର୍ମକୁ କରିବା—ଏ ସବୁ ଦାସ୍ୟଭକ୍ତିର ପ୍ରକାର ଅଟେ।

୫୪- କେବଳ ଦାସ୍ୟ-ଭକ୍ତିଦ୍ୱାରା ମଧ୍ୟ ମନୁଷ୍ୟକୁ ସହଜରେ ଭଗବାନ୍‌ଙ୍କ ପ୍ରାପ୍ତି ହୋଇଯାଏ।

୫୫- ଭଗବାନ୍‌ଙ୍କ ରହସ୍ୟକୁ ଜାଣିଥିବା ପ୍ରେମୀ ଭକ୍ତମାନଙ୍କର ସଙ୍ଗ ଓ ସେବନରେ ଦାସ୍ୟ ଭକ୍ତିର ପ୍ରାପ୍ତି ହୁଏ।

୫୬- ଭଗବାନ୍‌ଙ୍କ ପ୍ରଭାବ, ତତ୍ତ୍ୱ, ରହସ୍ୟ ଓ ମହିମାକୁ ବୁଝି ପରମବିଶ୍ୱାସ-ପୂର୍ବକ ମିତ୍ରଭାବରେ ତାଙ୍କ ରୁଚି ଅନୁସାରେ ହୋଇଯିବା, ତାଙ୍କଠାରେ ଅନନ୍ୟ ପ୍ରେମ କରିବା ଏବଂ ତାଙ୍କ ଗୁଣ, ରୂପ ଓ ଲୀଳାରେ ମୁଗ୍ଧ ହୋଇ ନିତ୍ୟ ନିରନ୍ତର ପ୍ରସନ୍ନ ରହିବା ସଖ୍ୟ ଭକ୍ତି ଅଟେ।

୫୭- ପ୍ରିୟ ପ୍ରେମୀଙ୍କୁ ପରମ ସୁଖୀ ହେଉ, ତାଙ୍କଠାରେ ନିଜର ସଖ୍ୟ-ପ୍ରେମ ପୂର୍ଣ୍ଣରୂପରେ ବଢି ଯାଉ ଏବଂ ତାଙ୍କଠାରୁ କେବେ ମଧ୍ୟ ବିୟୋଗ ନ ହେଉ, ଏହି ଉଦ୍ଦେଶ୍ୟରେ ସଖ୍ୟ-ପ୍ରେମ କରାଯାଏ।

୫୮- ନିଜର ଅତ୍ୟନ୍ତ ଆବଶ୍ୟକ କାମକୁ ଛାଡି ପ୍ରିୟ ପ୍ରେମୀଙ୍କ କାମକୁ

ଆଦରପୂର୍ବକ କରିବା, ପ୍ରିୟ ପ୍ରେମୀଙ୍କର କାମ ଆଗରେ ନିଜର କାମକୁ ତୁଚ୍ଛ ବୁଝି ସେଥିରୁ ଉପରତ ହୋଇଯିବା, ପ୍ରିୟ ପ୍ରେମୀଙ୍କପାଇଁ ମହାନ୍ ପରିଶ୍ରମ କରିବା ପରେ ତାକୁ ଅଳ୍ପ ବୋଲି ମଣିବା, ପ୍ରିୟ ଯେଉଁ କଥାରେ ପ୍ରସନ୍ନ ହେବେ ସେହି କଥାକୁ ଲକ୍ଷ୍ୟରେ ରଖି ସବୁ ସମୟରେ ସେଥିପାଇଁ ପ୍ରାଣ ପର୍ଯ୍ୟନ୍ତ ଚେଷ୍ଟା କରିବା, ସେ ଯାହା କିଛି କଲେ ସେଥିରେ ସନ୍ତୁଷ୍ଟ ରହିବା, ନିଜର କୌଣସି ବସ୍ତୁ କୌଣସି ବି ପ୍ରକାରରେ ପ୍ରେମୀଙ୍କ କାମରେ ଆସିଗଲେ ପରମ ପ୍ରସନ୍ନ ହେବା, ନିଜ ଶରୀର ଉପରେ ଏବଂ ନିଜର ବସ୍ତୁ ଉପରେ ଯେପରି ନିଜର ଆତ୍ମୀୟତା ଓ ଅଧିକାର ଅଛି ସେପରି ପ୍ରିୟ ପ୍ରେମୀଙ୍କୁ ବୁଝିବା ଏବଂ ଏହି ପ୍ରକାର ତାଙ୍କର ବସ୍ତୁ ଓ ଶରୀର ଉପରେ ନିଜର ଅଧିକାର ଓ ଆତ୍ମୀୟତା ମାନିବା, ନିଜର ଧନ, ଜୀବନ ଓ ଦେହାଦି ପ୍ରିୟ ପ୍ରେମୀଙ୍କ କାମରେ ଲାଗି ପାରିଲେ ତାହାକୁ ସଫଳ ବୁଝିବା, ତାଙ୍କ ସହିତ ରହିବାପାଇଁ ନିରନ୍ତର ଇଚ୍ଛା ରଖିବା, ତାଙ୍କ ଦର୍ଶନ, ଭାଷଣ, ଚିନ୍ତନ ଓ ସ୍ପର୍ଶଦ୍ୱାରା ପ୍ରେମରେ ନିମଗ୍ନ ହୋଇଯିବା, ତାଙ୍କ ନାମ, ରୂପ, ଗୁଣ ଓ ଚରିତ୍ରମାନଙ୍କୁ ଶୁଣି, କହି, ପଢି ଏବଂ ସ୍ମରଣ କରି ଅତ୍ୟନ୍ତ ପ୍ରସନ୍ନ ହେବା, କାହାରି ଦ୍ୱାରା ମିତ୍ରଙ୍କ ସନ୍ଦେଶ ପାଇଲେ ପରମ ପ୍ରସନ୍ନ ହେବା ଏବଂ ତାହାର ବିୟୋଗରେ ବ୍ୟାକୁଳିତ ହେବା ତଥା ପ୍ରତିକ୍ଷଣ ତାଙ୍କ ସହିତ ମିଳିବାକୁ ଆଶା ଓ ପ୍ରତୀକ୍ଷା କରି ରହିବା ଆଦି ସଖାଭାବର ପ୍ରକାର ଅଟେ ।

୫୯- ସଖ୍ୟ-ଭକ୍ତିର ପ୍ରାପ୍ତି ପାଇଁ ଭଗବାନ୍‌ଙ୍କ ପ୍ରେମୀ ସଖାମାନଙ୍କ ସଙ୍ଗ, ସେବନ, ସେମାନଙ୍କ ଜୀବନ-ଚରିତ୍ରର ଅଧ୍ୟୟନ ଏବଂ ସେମାନଙ୍କ ଓ ଭଗବାନ୍‌ଙ୍କ ଗୁଣ ଲୀଳା ଏବଂ ପ୍ରଭାବକୁ ତାଙ୍କ ପ୍ରେମୀ ଭକ୍ତମାନଙ୍କ ଦ୍ୱାରା ଶ୍ରବଣ କରିବା ଉଚିତ ।

୬୦- କେବଳ ସଖ୍ୟ-ଭକ୍ତିଦ୍ୱାରା ମଧ୍ୟ ମନୁଷ୍ୟର ଦୁଃଖ-ଦୋଷମାନ ଅତ୍ୟନ୍ତ ଅଭାବ ହୋଇ ଭଗବାନ୍‌ଙ୍କ ପ୍ରାପ୍ତି ଓ ଭଗବାନ୍‌ଙ୍କଠାରେ ପ୍ରେମ ହୋଇଯାଏ । ଏପରିକି ଭଗବାନ୍ ସେହି ପ୍ରେମୀ ଭକ୍ତର ଅଧୀନ ହୋଇଯାଆନ୍ତି ଏବଂ ପୁଣି ତା'ର ଆନନ୍ଦ ଓ ଶାନ୍ତିର ସୀମା ରହେ ନାହିଁ ।

୬୧- ପରମାତ୍ମାଙ୍କ ତତ୍ତ୍ୱ, ରହସ୍ୟ, ପ୍ରଭାବ ଓ ମହିମାକୁ ବୁଝି ମମତା ଓ ଅହଙ୍କାର ରହିତ ହୋଇ ନିଜର ଶରୀର-ମନ-ଧନ-ଜନ ସହିତ ନିଜେ-ନିଜକୁ ଓ ସମ୍ପୂର୍ଣ୍ଣ କର୍ମକୁ ଶ୍ରଦ୍ଧା ଓ ପରମ ପ୍ରେମପୂର୍ବକ ପରମାତ୍ମାଙ୍କୁ ସମର୍ପଣ କରିଦେବା ଆତ୍ମ ନିବେଦନ ଭକ୍ତି ଅଟେ ।

୬୨- ଭଗବାନ୍‌ଙ୍କ ଶରଣାଗତ ପ୍ରେମୀ ଭକ୍ତମାନଙ୍କର ସଙ୍ଗ-ସେବନ କରିବା ଦ୍ୱାରା ଏବଂ ସେମାନଙ୍କଦ୍ୱାରା ଭଗବାନ୍‌ଙ୍କ ନାମ, ରୂପ, ଗୁଣ, ପ୍ରଭାବ, ତତ୍ତ୍ୱ, ମହିମା, ଆଦିର ଶ୍ରବଣ ଓ ମନନ କଲେ ଆତ୍ମ-ନିବେଦନ ଭକ୍ତି ପ୍ରାପ୍ତ ହୁଏ ।

୬୩- ଲାଭ-ହାନି, ଜୟ-ପରାଜୟ, ଯଶ-ଅପଯଶ, ମାନ-ଅପମାନ, ସୁଖ-ଦୁଃଖ ଆଦିର ପ୍ରାପ୍ତିରେ, ସେଗୁଡ଼ିକୁ ଭଗବାନ୍‌ଙ୍କ ଦ୍ୱାରା ପ୍ରେରିତ ପୁରସ୍କାର ବୁଝି ପ୍ରସନ୍ନ ରହିବା, ଶରୀର, ଧନ, ସ୍ତ୍ରୀ-ପୁତ୍ର ଆଦି ସବୁରେ ମମତା ଓ ଅହଙ୍କାରର ଅଭାବ ହୋଇଯିବା, ଭଗବାନ୍ ଯନ୍ତ୍ରୀ ଏବଂ ମୁଁ ତାଙ୍କ ହାତରେ ଯନ୍ତ୍ର—ଏପରି ନିଶ୍ଚୟ କରି କାଠକଣ୍ଢେଇ ପରି ଭଗବାନ୍‌ଙ୍କ ଇଚ୍ଛାନୁକୂଳ ହିଁ ସବୁ କିଛି କରିବା, ଭଗବାନ୍‌ଙ୍କ ରହସ୍ୟ ଓ ପ୍ରଭାବକୁ ଜାଣିବା ପାଇଁ ତାଙ୍କର ନାମ, ରୂପ, ଗୁଣ, ଲୀଳାର ଶ୍ରବଣ, ମନନ, କଥନ, ଅଧ୍ୟୟନ ଓ ଚିନ୍ତନାଦିରେ ଶ୍ରଦ୍ଧା-ଭକ୍ତିପୂର୍ବକ ଶରୀର-ମନ ଆଦି ଲଗାଇ ଦେବା, ଇନ୍ଦ୍ରିୟ, ମନ, ବୁଦ୍ଧି ଆଦି ସମସ୍ତ ଉପରେ ଏକମାତ୍ର ଭଗବାନ୍‌ଙ୍କ ଅଧିକାର ବୁଝିବା, ଭଗବାନ୍‌ଙ୍କ ବସ୍ତୁ ଭଗବାନ୍‌ଙ୍କୁ ଅର୍ପଣ କରାଯାଇଛି, ଏପରି ଭାବ ହେବା, ଯେ କୌଣସି ପ୍ରକାରରେ ଭଗବାନ୍‌ଙ୍କ ସେବା ଚାଲୁ ରହିଲେ ସେଥିରେ ଆନନ୍ଦ ମଣିବା, ସବୁ କିଛି ପ୍ରଭୁଙ୍କୁ ଅର୍ପଣ କରି ସ୍ୱାଦ, ସଉକ, ବିଳାସ, ଆରାମ, ଭୋଗ ଆଦି ଇଚ୍ଛାର ସର୍ବଥା ଅଭାବ ହୋଇଯିବା, ସର୍ବତ୍ର, ସର୍ବଦା ଏବଂ ସର୍ବଥା ଏକ ଭଗବାନ୍‌ଙ୍କୁ ଅନୁଭବ କରିବା, ଭଗବାନ୍‌ଙ୍କ ଇଚ୍ଛାର ଅତିରିକ୍ତ ସ୍ୱତନ୍ତ୍ର କୌଣସି ଇଚ୍ଛା ନ କରିବା, ଭଗବାନ୍‌ଙ୍କ ଭକ୍ତିକୁ ଛାଡି ମୁକ୍ତିକୁ ମଧ୍ୟ ଇଚ୍ଛା ନ କରିବା ଆଦି ସବୁ ଏହି ଆତ୍ମ-ନିବେଦନ-ଭକ୍ତିରେ ଅନ୍ତର୍ଗତ ।

୬୪- ଯେଉଁ ପୁରୁଷ ଭଗବାନ୍‌ଙ୍କ ପ୍ରତି ଆତ୍ମ-ନିବେଦନ କରିଦିଏ, ତା'ର ସମ୍ପୂର୍ଣ୍ଣ ଅବଗୁଣ, ପାପ ଓ ଦୁଃଖମାନଙ୍କର ସମୂଳେ ନାଶ ହୋଇଯାଏ ଏବଂ ତା'ଠାରେ ଶ୍ରବଣ-କୀର୍ତ୍ତନାଦି ସବୁ ଭକ୍ତିମାନଙ୍କର ବିକାଶ ହୋଇଯାଏ । ତା'ର ଆନନ୍ଦ ଓ ଶାନ୍ତିର ସୀମା ରହେ ନାହିଁ ।

୬୫- ଭଗବାନ୍ ଶରଣାଗତ ଭକ୍ତଠାରୁ କେବେ ଅଲଗା ହୋଇ ପାରନ୍ତି ନାହିଁ । ଭଗବାନ୍‌ଙ୍କ ସର୍ବସ୍ୱ ତାର ହୋଇଯାଏ । ସେ ପରମ ପବିତ୍ର ହୋଇଯାଏ । ତାହାର ଦର୍ଶନ, ଭାଷଣ ଓ ଚିନ୍ତନରେ ପାପାତ୍ମା ଲୋକ ପବିତ୍ର ହୋଇଯାନ୍ତି । ସେ ତୀର୍ଥମାନଙ୍କ ପାଇଁ ତୀର୍ଥରୂପ ହୋଇଯାଏ ।

୬୬- ନବଧା ଭକ୍ତିର ତତ୍ତ୍ୱ-ରହସ୍ୟ ମହାପୁରୁଷମାନଙ୍କଠାରୁ ବୁଝି ଶ୍ରଦ୍ଧା ଓ ପ୍ରେମପୂର୍ବକ ତତ୍ପରତାର ସହିତ ଭକ୍ତିକୁ ସାଧନ କରିବା ଉଚିତ ।

୬୭- ନବଧା ଭକ୍ତିକୁ ଅଭ୍ୟାସ ନ କରି ସେହି ସାଧକ ପ୍ରେମଲକ୍ଷଣା ଭକ୍ତିର ସତ୍ ପାତ୍ର ହୋଇ ପାରିବ ନାହିଁ।

୬୮- ପ୍ରେମଲକ୍ଷଣା ଭକ୍ତିର ରହସ୍ୟ ଭଗବତ୍‌ପ୍ରାପ୍ତ ପୁରୁଷ ବତାଇପାରନ୍ତି ।

୬୯- ପ୍ରେମଲକ୍ଷଣା ଭକ୍ତିର ଜିଜ୍ଞାସୁମାନଙ୍କୁ ସେହି ମହାପୁରୁଷଙ୍କର ସଙ୍ଗ ଓ ସେବାଦ୍ୱାରା ତାହାର ତତ୍ତ୍ୱ ଓ ରହସ୍ୟ ବୁଝି ତାହାର ସାଧନ କରିବା ଉଚିତ।

୭୦- ଭଗବାନ୍‌ଙ୍କ ରାସର ବିଷୟ ତ ଅତ୍ୟନ୍ତ ଗହନ। ଭଗବାନ୍ ଓ ଭଗବାନ୍‌ଙ୍କ କ୍ରୀଡା ଦିବ୍ୟ, ଅଲୌକିକ, ପବିତ୍ର, ପ୍ରେମମୟ ଓ ମଧୁର। ଯେଉଁମାନେ ମାଧୁର୍ଯ୍ୟରସର ରହସ୍ୟକୁ ଜାଣନ୍ତି, ସେ ଏଥିରୁ ଲାଭ ଉଠାଇ ପାରିବେ।

୭୧- ମନକୁ ବଶ କରି ମନଦ୍ୱାରା ହରିଙ୍କୁ ଚିନ୍ତନ କରିବା, ଶାନ୍ତ ସ୍ୱଭାବରେ ରହିବା, ବଣର ଫଳ-ମୂଳ ଆଦିରୁ କିଛି ଆହାର କରିବା, ଭଗବାନ୍‌ଙ୍କ ଚରିତ୍ରକୁ ହୃଦୟରେ ଧ୍ୟାନ କରି ରହିବା ଏବଂ ଇନ୍ଦ୍ରିୟମାନଙ୍କୁ ବିଷୟଭୋଗରୁ ନିବୃତ୍ତ କରି ଭକ୍ତିଯୋଗଦ୍ୱାରା ଅନନ୍ୟଭାବରେ ଭଗବାନ୍ ବାସୁଦେବଙ୍କୁ ଭଜନ କରିବା ଉଚିତ।

୭୨- ପରମେଶ୍ୱରଙ୍କ ସବୁ ପ୍ରକାରରେ ଶରଣ ନେଇ ଇନ୍ଦ୍ରିୟ ଓ ଶରୀରଦ୍ୱାରା ତାଙ୍କ ସେବା କରିବା, ମନଦ୍ୱାରା ତାଙ୍କୁ ସ୍ମରଣ କରିବା, ଶ୍ୱାସଦ୍ୱାରା ତାଙ୍କର ନାମୋଚ୍ଚାରଣ କରିବା, କାନଦ୍ୱାରା ତାଙ୍କର ପ୍ରଭାବ ଶୁଣିବା ଏବଂ ଶରୀରଦ୍ୱାରା ତାଙ୍କ ଇଚ୍ଛାନୁସାରେ ଚାଲିବା—ଏହା ହିଁ ତାଙ୍କରି ସେବା, ଏହା ଅସଲ ଭକ୍ତି ଏବଂ ଏହାଦ୍ୱାରା ଆତ୍ମାର ଶୀଘ୍ର କଲ୍ୟାଣ ହୋଇପାରେ।

୭୩- ଈଶ୍ୱରଙ୍କ ସ୍ମୃତି ନିରନ୍ତର ରହିବା ଉଚିତ।

୭୪- କେହି ଯେତେ ପାପୀ ଓ ଯେତେ ମୂର୍ଖ ହେଉ ନା କାହିଁକି, ଭଗବାନ୍‌ଙ୍କ ସ୍ମରଣ ଅଭ୍ୟାସଦ୍ୱାରା ସେ ଏକ କ୍ଷଣ ମଧ୍ୟରେ ଉଦ୍ଧାର ହୋଇପାରେ।

୭୫- ପ୍ରିୟ ମନମୋହନଙ୍କୁ କେବେ ପାସୋରିବା ଉଚିତ ନୁହେଁ, ହୃଦୟରେ ସଦା-ସର୍ବଦା ତାଙ୍କରି ସ୍ମରଣ କରିବା ଉଚିତ। ପ୍ରାଣ ଚାଲିଯାଉ ପଛକେ କିନ୍ତୁ ପ୍ରାଣପ୍ରିୟଙ୍କର ସ୍ମୃତି କ୍ଷଣକ ପାଇଁ ହୃଦୟରୁ ଚାଲିଯିବା ଅନୁଚିତ। ନେତ୍ର ତାଙ୍କୁ ଦେଖିବ, କାନ ତାଙ୍କରି ଚର୍ଚ୍ଚା ଶୁଣିବ, ମୁଖ ତାଙ୍କରି ଗୁଣ କୀର୍ତ୍ତନ କରିବ ଓ ନାମ ଜପ କରିବ, ଶରୀର ତାଙ୍କୁ ପ୍ରଣାମ କରିବ ଏବଂ ହାତ ତାଙ୍କରି ସେବାପୂଜାରେ ଲାଗି ରହିବ। ଅର୍ଥାତ୍ ଶରୀର ଓ ମନ ସହିତ ସମସ୍ତ ଇନ୍ଦ୍ରିୟ ଭଗବାନ୍‌ଙ୍କ କାମରେ ଲାଗିଯିବ, ଏପରି ଚେଷ୍ଟା କରିବା ଆବଶ୍ୟକ। ଏହା ହିଁ ପ୍ରକୃତ ପୌରୁଷ।

୭୬- ମରଣ କାଳରେ ଯେଉଁ ଚିନ୍ତା କରି ମନୁଷ୍ୟ ଦେହତ୍ୟାଗ କରିବ,

ଆଗରେ ଯାଇ ସେ ତାହା ପ୍ରାପ୍ତ ହେବ ଅର୍ଥାତ୍ ଯିଏ ଭଗବାନ୍‌ଙ୍କୁ ଚିନ୍ତନ କରି ମୃତ୍ୟୁ ଲାଭ କରିବ, ସେ ଭଗବାନ୍‌ଙ୍କୁ ପ୍ରାପ୍ତ ହେବ। ଯିଏ ସଂସାରକୁ ଚିନ୍ତନ କରି ମରିବ, ସେ ସଂସାରକୁ ପ୍ରାପ୍ତ ହେବ।

୭୭- ଭୋଗବିଳାସ, ଆରାମ, ପାପ, ଆଳସ୍ୟ ଓ ପ୍ରମାଦ ଇତ୍ୟାଦିକୁ ମୃତ୍ୟୁତୁଲ୍ୟ ଭାବି ଜୀବନର ପ୍ରତ୍ୟେକ କ୍ଷଣକୁ ଉତ୍ତମୋତ୍ତମ କାର୍ଯ୍ୟରେ ହିଁ ବିନିଯୋଗ କରିବା ଆବଶ୍ୟକ। ଭଗବାନଙ୍କ ନାମ ଜପିବା ସଙ୍ଗେ ସଙ୍ଗେ ତାଙ୍କ ଗୁଣ, ପ୍ରଭାବ ଓ ସ୍ୱରୂପର ଧ୍ୟାନ ଜାଗ୍ରତ ରଖି ତାଙ୍କ ଆଜ୍ଞାନୁସାରେ ତତ୍ପରତାପୂର୍ବକ କାର୍ଯ୍ୟ କରିବା ଉଚିତ।

୭୮- ଯେତେବେଳେ ଭଗବତ୍‌ସ୍ମୃତିରେ ରହି ଯୁଦ୍ଧ ପରି କ୍ରିୟା ମଧ୍ୟ କରାଯାଇପାରେ, ତେବେ ଆମ୍ଭମାନଙ୍କ ସାଧାରଣ କାର୍ଯ୍ୟ ହେବାରେ ଆଉ କଠିନତା କ'ଣ ଅଛି ?

୭୯- କାମ କରୁଥିବା ସମୟରେ ମଧ୍ୟ ଆମ୍ଭେ ଭଜନର ଅଭ୍ୟାସ କରିବା ଉଚିତ।

୮୦- ନର୍ତ୍ତକୀ ବାଉଁଶ ଉପରେ ଚଢ଼ିବା ସମୟରେ ଢୋଲ ବଜା ଯାଉଥାଏ, ଗାନ ମଧ୍ୟ କରାଯାଉଥାଏ, କିନ୍ତୁ ଏସବୁ କ୍ରିୟା କଲେ ମଧ୍ୟ ତାହାର ଧ୍ୟାନ ନିଜ ପାଦ ଉପରେ ଥାଏ। ଏହିପରି ଗାଇବା-ବଜାଇବା ପରି ଆମେ ସମସ୍ତେ କାର୍ଯ୍ୟ କରିବା ଉଚିତ ଏବଂ ତାହାର ପାଦପ୍ରତି ଧ୍ୟାନ ଭଳି ଆମେ ପରମାତ୍ମାଙ୍କଠାରେ ଧ୍ୟାନ ରଖିବା ଉଚିତ।

୮୧- ଆମେ କିଛି କାମ କରିବା ସମୟରେ ପ୍ରତି ଶ୍ୱାସ ବା ବାଣୀଦ୍ୱାରା ଭଗବାନ୍‌ଙ୍କ ନାମ ଜପ ତଥା ଗୁଣ ପ୍ରଭାବ ସହିତ ତାଙ୍କର ସ୍ୱରୂପର ଧ୍ୟାନ କରି କାମ କରିବାର ଅଭ୍ୟାସ କରିବା ଉଚିତ।

୮୨- କାମ କରିବା ସମୟରେ ଏହି ଭାବ ରହିବା ଉଚିତ ଯେ ଏହି କାମ ଭଗବାନ୍‌ଙ୍କର ଏବଂ ତାଙ୍କ ଆଜ୍ଞାନୁସାରେ, ତାଙ୍କ ପ୍ରସନ୍ନତା ପାଇଁ ମୁଁ ଏହା କରୁଛି। ପ୍ରଭୁ ମୋ ପାଖରେ ଠିଆ ହୋଇଛନ୍ତି ଏବଂ ମୋ କାମକୁ ଦେଖୁଛନ୍ତି— ଏପରି ବିଗ୍ଭର କରି ସଦା ପ୍ରସନ୍ନ ରହିବା ଉଚିତ।

୮୩- ଭଗବାନ୍‌ଙ୍କଠାରେ ଚିତ୍ତକୁ ଲଗାଇ ଭଗବାନ୍‌ଙ୍କପାଇଁ କର୍ମ କରିବା ଲୋକକୁ ଭଗବାନ୍‌ଙ୍କ କୃପାଦ୍ୱାରା ଭଗବାନ୍ ଶୀଘ୍ର ମିଳି ଯାଆନ୍ତି, ଏହି କଥା ସ୍ଥାନେ-ସ୍ଥାନେ ଗୀତାରେ ଭଗବାନ୍ କହିଛନ୍ତି (୮।୭, ୧୧।୫୫, ୧୨।୬ରୁ ୮, ୧୮।୫୬ରୁ ୫୮, ୬୨)

୮୪- ଗ୍ଭଲିବା-ବୁଲିବା, ଉଠିବା-ବସିବା, କାମ-ଦାମ କରିବାବେଳେ, ସବୁ

ସମୟରେ ଭଗବାନ୍‌ଙ୍କୁ ସ୍ମରଣ ରଖିବା ଅଭ୍ୟାସ କରିବା ଉଚିତ । ପ୍ରଥମେ ଅଧ ଘଣ୍ଟା ଅନ୍ତରରେ, ପୁଣି ପନ୍ଦର ମିନିଟ୍ ଅନ୍ତରରେ, ପୁଣି ଦଶ ମିନିଟ୍ ଅନ୍ତରରେ, ପୁଣି ପାଞ୍ଚ ମିନିଟ୍ ଅନ୍ତରରେ, ଏହିପ୍ରକାର କରିବା ସହିତ ନିରନ୍ତର ଭଗବତ୍‌ସ୍ମରଣ କରିବାକୁ ଚେଷ୍ଟା କରିବା ଉଚିତ।

୮୫- ପରମାତ୍ମାଙ୍କ ଚିନ୍ତନର ବିୟୋଗକୁ ସାଧକ କ୍ଷଣେମାତ୍ର ସହି ପାରେ ନାହିଁ। **"ତଦର୍ପିତାଖିଲାଚାରିତା ତଦ୍‌ବିସ୍ମରଣେ ପରମବ୍ୟାକୁଳତା"** (ନାରଦ-ଭକ୍ତିସୂତ୍ର ୧୯)।

୮୬- ସ୍ମୃତିକୁ ତୈଳଧାରା ପରି ଅଖଣ୍ଡ ରଖିବା ପାଇଁ ଚାଲିବା-ବୁଲିବା, ଉଠିବା-ବସିବା, ଖାଇବା-ପିଇବା ତଥା ପ୍ରତ୍ୟେକ କାର୍ଯ୍ୟ କରିବା ସମୟରେ ଭଗବାନ୍ ନିଜ ସଙ୍ଗରେ ଅଛନ୍ତି ବୋଲି ବୁଝିବା ଉଚିତ।

୮୭- ସଂସାରରେ ତମୋଗୁଣ ଅଧିକ ବ୍ୟାପି ରହିଛି। ତମୋଗୁଣ କାରଣରୁ ଲୋକ ଭଗବତ୍‌ତତ୍ତ୍ୱରେ ଅନଭିଜ୍ଞ ରହି ଏକାନ୍ତବାସରେ ଭଜନ-ଧ୍ୟାନ ଛଳରେ ନିଦ, ଆଳସ୍ୟ ଓ ଅକର୍ମଣ୍ୟର ଶିକାର ହୋଇଯାନ୍ତି।

୮୮- କିଛି ଲୋକ "ଏବେ ତ ମୁଁ ନିରନ୍ତର ଏକାନ୍ତରେ ରହି ଭଜନ-ଧ୍ୟାନ କରିବି" କହି କର୍ମ ଛାଡି ଦିଅନ୍ତି, ପରନ୍ତୁ କିଛି ଦିନ ପରେ ତାଙ୍କ ମନରୁ ଏକାନ୍ତ ବାସନା ଚାଲିଯାଏ। କିଛି ଲୋକ ଶୋଇ ଶୋଇ ସମୟ କଟାଇ ଦିଅନ୍ତି, କେହି କହନ୍ତି "କ'ଣ କରିବି, ଧ୍ୟାନରେ ମନ ଲାଗୁ ନାହିଁ।" ଫଳତଃ କିଛି ତ ନିଷ୍କର୍ମା ହୋଇଯାନ୍ତି ଏବଂ ଆଉ କିଛି ପ୍ରମାଦବଶତଃ ଇନ୍ଦ୍ରିୟମାନଙ୍କୁ ଆରାମ ଦେଉଥିବା ଭୋଗମାନଙ୍କରେ ପ୍ରବୃତ୍ତ ହୋଇ ଯାଆନ୍ତି।

୮୯- ପ୍ରକୃତ ଭଜନ-ଧ୍ୟାନରେ ମନ ଲଗାଉଥିବା ଲୋକ ବିରଳ।

୯୦- ଏକାନ୍ତରେ ବାସ କରି ଭଜନ-ଧ୍ୟାନ କରିବା ମନ୍ଦ ନୁହେଁ। ପରନ୍ତୁ ଏହା ସାଧାରଣ କଥା ନୁହେଁ। ଏହା ପାଇଁ ବହୁତ ଅଭ୍ୟାସର ଆବଶ୍ୟକତା ଅଛି ଓ ଏହି ଅଭ୍ୟାସ କର୍ମ କରୁ କରୁ କ୍ରମଶଃ ବଢେ ଏବଂ ପ୍ରବଳ କରାଯାଇ ପାରେ।

୯୧- କର୍ମରେ ଭକ୍ତି ଏବଂ ଭକ୍ତିରେ କର୍ମର ଅନ୍ୟୋନ୍ୟାଶ୍ରିତ ସମ୍ବନ୍ଧ ପ୍ରଚ୍ଛନ୍ନ ରହିଛି।

୯୨- ଉପାସନାରହିତ କର୍ମ ଜଡ ହେବାରୁ କଦାପି ମୁକ୍ତିଦାୟକ ନୁହେଁ ଏବଂ ଉପାସନାରହିତ ଜ୍ଞାନ ମଧ୍ୟ ପ୍ରଶଂସନୀୟ ନୁହେଁ ।

୯୩- ସମତ୍ୱରୂପ ଯୋଗରେ ସ୍ଥିତ ହୋଇ, ଫଳରେ ଈଶ୍ୱରଙ୍କ ଅଧିକାର

ମନେକରି ଯିଏ କର୍ମ କରେ, ସେ ପ୍ରକାରାନ୍ତରେ ଈଶ୍ୱରଙ୍କ ସ୍ମରଣରୂପ ଭକ୍ତି କରେ ।

୯୪- ପ୍ରୀତି ଓ ଶ୍ରଦ୍ଧା ହେଲେ କର୍ମ ସେଥିରେ ପ୍ରତିବନ୍ଧକ ହୁଏ ନାହିଁ, ବରଂ ତାର ପ୍ରତ୍ୟେକ କର୍ମ ଭଗବତ୍-ପ୍ରୀତି ପାଇଁ ଅନୁଷ୍ଠିତ ହୋଇ ଶୁଦ୍ଧ ଭକ୍ତି ରୂପରେ ପରିଣତ ହୋଇଯାଏ ।

୯୫- ମନରେ ସଦା ସର୍ବଦା ଏହି ନିଶ୍ଚୟ ରଖିବା ଉଚିତ ଯେ ଆମେ ଯାହା କିଛି କରୁଛୁ, ତାହା ଭଗବାନ୍ କରାଉଛନ୍ତି ।

୯୬- ଗୁରୁ ଯେପରି ଛାତ୍ରର ହାତକୁ ଧରି ଅକ୍ଷର ଲେଖାଇ ଦିଅନ୍ତି, ସେହି ପ୍ରକାର ପରମାତ୍ମା ଆମକୁ ପ୍ରେରିତ କରି ସମସ୍ତ କାର୍ଯ୍ୟର ଆଚରଣ ଆମଦ୍ୱାରା କରାଉଛନ୍ତି ।

୯୭- କାଠକଣ୍ଢେଇ ଯେଉଁ ପ୍ରକାର ସୂତ୍ରଧର ହାତର କୌଶଳରେ ନାଚେ, ସେହି ପ୍ରକାର ଭଗବାନ୍‌ଙ୍କ ହାତରେ ଆମର ଲଗାମକୁ ଧରାଇ ଦେଇ ତାଙ୍କ ଇଙ୍ଗିତରେ କାମ କରିବା ଉଚିତ ।

୯୮- ଭଗବାନ୍‌ଙ୍କ ପ୍ରସନ୍ନତା ପ୍ରାପ୍ତ କରିବା ପାଇଁ ଇଚ୍ଛୁକ ପ୍ରତ୍ୟେକ ବ୍ୟକ୍ତିକୁ ଭଗବାନ୍‌ଙ୍କ ଦୟା ଉପରେ ନିର୍ଭର କରିବା ଉଚିତ, ତାଙ୍କୁ ଦେଖି ପ୍ରସନ୍ନ ରହିବା ଉଚିତ । ତାଙ୍କ ପ୍ରସନ୍ନତା ଅନୁସାରେ କାର୍ଯ୍ୟ କରିବା ବିଧେୟ ଏବଂ ନିରନ୍ତର ତାଙ୍କରି ସ୍ମରଣ କରିବା ଉଚିତ ।

୯୯- ଭଗବାନ୍‌ଙ୍କର ପ୍ରତ୍ୟେକ ବିଧାନରେ ପରମ ସନ୍ତୁଷ୍ଟ ହୋଇ ନିରନ୍ତର ତାଙ୍କ ସ୍ମରଣ କରି ସର୍ବଦା ପ୍ରସନ୍ନ ରହିବା ଉଚିତ ।

୧୦୦- ଈଶ୍ୱରଙ୍କ ଦୟା, ରୁଚି ଏବଂ ତାଙ୍କର ସ୍ୱରୂପର ସ୍ମରଣ କରି ପ୍ରସନ୍ନ ହୋଇ ରହିବା ଉଚିତ ।

୧୦୧- ଆମ ମସ୍ତକ ଉପରେ ପ୍ରଭୁଙ୍କ ହାତ ରହିଛି ବୁଝି ସର୍ବଦା ପ୍ରସନ୍ନ ରହିବା ଉଚିତ ।

୧୦୨- ସବୁଠାରୁ ମୁଖ୍ୟ କଥା ହେଲା ଅନନ୍ୟ ମନରେ ଭଗବାନ୍‌ଙ୍କୁ ନିରନ୍ତର ଭଜନ କରିବା ।

୧୦୩- ଭଗବାନ୍‌ଙ୍କ ପାଇଁ ହିଁ ଭଗବାନ୍‌ଙ୍କୁ ପ୍ରେମପୂର୍ବକ ନିରନ୍ତର ଭଜିବା ହିଁ ତାଙ୍କୁ ଅନନ୍ୟ ମନରେ ଭଜନ କରିବା ।

୧୦୪- ଅନନ୍ୟ ଭଜନର ସ୍ୱରୂପ ବିଷୟରେ ଭଗବାନ୍ ଗୀତାର ନବମ ଅଧ୍ୟାୟର ୧୪ଶ ଶ୍ଳୋକରେ କହିଛନ୍ତି । ଭଗବାନଙ୍କୁ ଅନନ୍ୟ ପ୍ରେମପୂର୍ବକ ନିତ୍ୟନିରନ୍ତର ଚିନ୍ତନ ହିଁ ଏହାର ମୁଖ୍ୟ ଅଙ୍ଗ ଅଟେ ।

୧୦୫- ଭଗବାନ୍‌ଙ୍କ ନାମ-ଗୁଣ-କୀର୍ତ୍ତନ ଅନନ୍ୟ ଚିନ୍ତନରେ ବିଶେଷ ସହାୟକ ହୁଏ।

୧୦୬- ଭଗବାନ୍‌ଙ୍କ ପ୍ରତ୍ୟକ୍ଷ ଦର୍ଶନ ଅନନ୍ୟ ଭକ୍ତିଦ୍ୱାରା ମିଳିପାରେ।

୧୦୭- ଯଦି କେହି ଭଗବତ୍-ପରାୟଣ ହୋଇ ନିଷ୍କାମ ପ୍ରେମଭାବରେ ଭଗବାନ୍‌ଙ୍କୁ ଭକ୍ତି କରେ, ତେବେ ତାହାକୁ ସାକ୍ଷାତ୍ ଦର୍ଶନ ଦେବାପାଇଁ ଭଗବାନ୍ ବାଧ୍ୟ ହୁଅନ୍ତି।

୧୦୮- ସାକ୍ଷାତ୍ ଦର୍ଶନ ଅନନ୍ୟ ଭକ୍ତି ଅତିରିକ୍ତ ଅନ୍ୟ କୌଣସି ଉପାୟରେ ହୋଇପାରେ ନାହିଁ। (ଗୀତା ୧୧ । ୫୪)

୧୦୯- ଅନନ୍ୟ ଶରଣାଗତ ଭକ୍ତଙ୍କୁ ଭକ୍ତିର ତତ୍ତ୍ୱ ସ୍ୱୟଂ ପରମେଶ୍ୱର ବୁଝାଇ ଦିଅନ୍ତି।

୧୧୦- ଅନନ୍ୟ ଭକ୍ତିଯୁକ୍ତ ପୁରୁଷ ସ୍ୱୟଂ ପବିତ୍ର ହୋଇଯାଏ, ଏଥିରେ କହିବାର କ'ଣ ଅଛି ? ପରନ୍ତୁ ସେ ନିଜର ଭକ୍ତିର ଭାବମାନଦ୍ୱାରା ଜଗତକୁ ପବିତ୍ର କରିପାରେ।

୧୧୧- ଯଦି ସବୁ ସମୟରେ ଭଗବାନ୍‌ଙ୍କ ନାମ ଜପ ଏବଂ ହୃଦୟରେ ତାଙ୍କୁ ସ୍ମରଣ କରି ସଂସାରର ସମସ୍ତ ବ୍ୟବହାର ତାଙ୍କରି ଅର୍ଥରେ କରାଯାଏ, ତେବେ ପରମାତ୍ମାଙ୍କଠାରେ ଅନନ୍ୟ ଭକ୍ତି ହୋଇଯାଏ।

୧୧୨- ଯଦି ଘରେ ଜଣେ ପୁରୁଷର ଅନନ୍ୟ ଭକ୍ତିଦ୍ୱାରା ପରମାତ୍ମାଙ୍କ ସାକ୍ଷାତ୍‌କାର ହୋଇଯାଏ, ତେବେ ତାଙ୍କର ସମସ୍ତ କୁଳ ପବିତ୍ର ହୋଇଯାଏ।

୧୧୩- ଯେଉଁ ଲୋକ କୌଣସି ସାଂସାରିକ କାମନା ଅର୍ଥାତ୍ ସ୍ତ୍ରୀ, ପୁତ୍ର, ଧନ, କୀର୍ତ୍ତି, ସ୍ୱର୍ଗସୁଖ ଆଦିପାଇଁ ଭଗବାନ୍‌ଙ୍କୁ ଭଜନ କରେ, ତାହାକୁ ଅନନ୍ୟମନରେ ଯୁକ୍ତ ବୋଲି କୁହାଯାଇ ପାରିବ ନାହିଁ । କାରଣ ତାହାର ମନ ତ ଭୋଗମାନଙ୍କରେ ଲିପ୍ତ ରହିଥାଏ, ସେ ଭଗବାନ୍‌ଙ୍କୁ ସେହି ଭୋଗମାନଙ୍କ ପ୍ରାପ୍ତିର ସାଧନ ବୋଲି ବୁଝେ।

୧୧୪- କୌଣସି ପ୍ରକାର କାମନା ରଖିବା ଉଚିତ ନୁହେଁ। ପ୍ରହ୍ଲାଦ କହିଛନ୍ତି, ବରଦାନ ଇଚ୍ଛାରେ ଯିଏ ଭକ୍ତି କରେ, ସେ ବଣିକ।

୧୧୫- ଅତି ବଡ଼ ବଡ଼ ସଙ୍କଟ ପଡିଲେ ମଧ୍ୟ ବିଶୁଦ୍ଧ ପ୍ରେମ, ଭକ୍ତି ଓ ଭଗବତ୍-ସାକ୍ଷାତ୍‌କାର ବ୍ୟତୀତ ଅନ୍ୟ କୌଣସି ସାଂସାରିକ ବସ୍ତୁର କାମନା, ପ୍ରାର୍ଥନା ବା ଇଚ୍ଛା କେବେ କରିବା ଉଚିତ ନୁହେଁ।

୧୧୬- ଭକ୍ତିଦ୍ୱାରା ସବୁ କିଛି ହୋଇପାରେ। ସାକାର ଭଗବାନ୍ ନେତ୍ରରେ

ଦେଖାଯାନ୍ତି, ସଗୁଣ-ନିରାକାର ବୁଦ୍ଧିଦ୍ୱାରା ବୁଝି ହୁଏ ଏବଂ ନିର୍ଗୁଣ-ନିରାକାର ଅନୁଭବଦ୍ୱାରା ପ୍ରାପ୍ତ କରାଯାନ୍ତି। ଜ୍ଞାନରୂପ ନେତ୍ରଯୁକ୍ତ ଜ୍ଞାନୀଜନ ହିଁ ଭଗବାନ୍‌ଙ୍କୁ ତତ୍ତ୍ୱରେ ଜାଣି ପାରନ୍ତି।

୧୧୭- ଯେଉଁ ରୋଗୀ ଔଷଧ ଓ ପଥ୍ୟ ଉପରେ ଶ୍ରଦ୍ଧା କରି କୁପଥ୍ୟରୁ ଦୂରେଇ ରହି ଔଷଧ ସେବନ ଏବଂ ପଥ୍ୟର ପାଳନ କରେ, ସେ ଆରୋଗ୍ୟ ହୋଇଯାଏ। ଏପରି ଯେଉଁ ମନୁଷ୍ୟ ଶାସ୍ତ୍ର ଓ ମହାପୁରୁଷଙ୍କ ଦ୍ୱାରା ବର୍ଣ୍ଣିତ ଦୁର୍ଗୁଣ ଓ ଦୁରାଗ୍ରହରୂପକ କୁପଥ୍ୟକୁ ତ୍ୟାଗ କରି ଶ୍ରଦ୍ଧାପୂର୍ବକ ଈଶ୍ୱର-ଭକ୍ତିରୂପକ ଔଷଧ ସେବନ ଓ ସଦାଗ୍ରହ-ସଦ୍‌ଗୁଣରୂପୀ ପଥ୍ୟକୁ ପାଳନ କରେ, ସେ ଜନ୍ମ-ମରଣରୂପ ମହାନ୍ ଭବରୋଗରୁ ମୁକ୍ତ ହୋଇଯାଏ। ଲୌକିକ ଔଷଧ ସେବନ କରୁଥିବା ଲୋକ ଅଦୃଷ୍ଟ ପ୍ରତିକୂଳ ହେଲେ ଆରୋଗ୍ୟ ନ ହୋଇପାରେ, ପରନ୍ତୁ ଏହି ଔଷଧ ତଥା ପଥ୍ୟ ସେବନ କରୁଥିବା ଲୋକ ନିଶ୍ଚୟ ହିଁ ଜନ୍ମ-ମରଣରୂପ ଦୁଃଖରୁ ମୁକ୍ତ ହୋଇଯାଏ, କାରଣ ଏଥିରେ ଅଦୃଷ୍ଟ ବାଧକ ହୋଇପାରେ ନାହିଁ।

୧୧୮- କେବଳ ଭଗବାନ୍‌ଙ୍କ ନାମର ଜପ, ତାଙ୍କ ସ୍ୱରୂପର ପୂଜନ ଏବଂ ଧ୍ୟାନ କଲେ ମଧ୍ୟ ଅତି ଉତ୍ତମ ଗତି ପ୍ରାପ୍ତ ହୋଇପାରେ।

୧୧୯- ଭକ୍ତି କରୁଥିବା ଲୋକକୁ ଭଗବାନ୍ ସ୍ୱୟଂ ଜ୍ଞାନ ପ୍ରଦାନ କରି ତାର ଅଜ୍ଞାନରୂପୀ ଅନ୍ଧକାରକୁ ସର୍ବଥା ନାଶ କରି ଦିଅନ୍ତି।

୧୨୦- ଭକ୍ତ ଯେଉଁ ରୂପରେ ତାଙ୍କୁ ଦେଖିବାକୁ ଚାହେଁ, ସେ ସେହି ରୂପରେ ପ୍ରତ୍ୟକ୍ଷ ପ୍ରକଟ ହୋଇ ଦର୍ଶନ ଦିଅନ୍ତି। ଭଗବାନ୍‌ଙ୍କ ସାକାର ରୂପ ଧାରଣ କରିବା ଭଗବାନ୍‌ଙ୍କ ଅଧୀନ ନୁହେଁ, କିନ୍ତୁ ପ୍ରେମୀ ଭକ୍ତର ଅଧୀନ।

୧୨୧- ମାନ-ପ୍ରତିଷ୍ଠା ତ୍ୟାଗ କରି ଶ୍ରୀଅକ୍ରୂରଙ୍କ ପରି ଭଗବାନ୍‌ଙ୍କ ଚରଣକମଳରେ ଚିହ୍ନିତ ରଜରେ ଲୋଟି ଗଲେ ଭଗବାନ୍ ପ୍ରତ୍ୟକ୍ଷ ମିଳି ପାରନ୍ତି।

୧୨୨- ଶ୍ରୀନରସୀ ମେହେଟାଙ୍କ ପରି ଲଜ୍ଜା, ମାନ, ବଡିମା ଏବଂ ଭୟକୁ ଛାଡି ଭଗବାନ୍‌ଙ୍କ ଗୁଣଗାନରେ ମଗ୍ନ ହୋଇ ବିଚରଣ କଲେ ଭଗବାନ୍ ପ୍ରତ୍ୟକ୍ଷ ମିଳିପାରନ୍ତି।

୧୨୩- ଦୟାମୟ ଭଗବାନ୍ କେବଳ ଭାବର ଭିକାରୀ। ଭାବରହିତଙ୍କ ପାଇଁ ତାଙ୍କ ଦ୍ୱାର ସର୍ବଦା ବନ୍ଦ ରହେ।

୧୨୪- ଭଗବାନ୍‌ଙ୍କଠାରେ ବିଶୁଦ୍ଧ ପ୍ରେମ ହେବା ତଥା ଭଗବାନ୍‌ଙ୍କ ମନମୋହିନୀ ମୂର୍ତ୍ତିର ପ୍ରତ୍ୟକ୍ଷ ଦର୍ଶନ ମିଳିବାରେ ବିଶ୍ୱାସ ହିଁ ମୂଳ କାରଣ।

୧୨୫- ମୁକ୍ତି ଅଥବା ଭଗବତ୍-ସାକ୍ଷାତ୍‌କାର କରିବାପାଇଁ ନିଷ୍କାମଭାବରେ କରାଯାଉଥିବା ଭଗବାନ୍‌ଙ୍କ ଭକ୍ତିଠାରୁ ବଳି ଅନ୍ୟ କୌଣସି ସାଧନ ନାହିଁ। ଆମର ଲକ୍ଷ୍ୟ ଏହା ରହୁ ଯେ ଭଗବାନ୍‌ଙ୍କଠାରେ ଆମର ଅନନ୍ୟ ପ୍ରେମ ହେଉ।

୧୨୬- ଭଗବାନ୍ କହିଛନ୍ତି ଯିଏ ମୋତେ ଯେପରି ଭଜନ କରେ, ମୁଁ ତାହାକୁ ସେହିପରି ଭଜେ।

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍।** (ଗୀତା ୪।୧୧)

୧୨୭- ଭଗବାନ୍‌ଙ୍କର ଅନନ୍ତଗୁଣ ଓ ଚରିତ୍ରମାନଙ୍କର ସାମାନ୍ୟ ସ୍ମରଣ ଓ ମନନ ମହାନ୍ କଲ୍ୟାଣକାରୀ ଏବଂ ପରମ ପବିତ୍ର ଅଟେ।

୧୨୮- ମର୍ଯ୍ୟାଦାପୁରୁଷୋତ୍ତମ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କର ନାମ, ରୂପ, ଗୁଣ, ଲୀଳା, ପ୍ରେମ ଏବଂ ପ୍ରଭାବର ଅମୃତମୟୀ କଥାଗୁଡ଼ିକର ଶ୍ରବଣ ଓ ମନନ ପରମ କଲ୍ୟାଣକାରୀ ଅଟେ।

୧୨୯- ଘରେ ଭଗବାନ୍‌ଙ୍କ ମୂର୍ତ୍ତି ରଖି ଭକ୍ତିଭାବରେ ତାଙ୍କର ପୂଜା, ଆରତି, ସ୍ତୁତି ଏବଂ ପ୍ରାର୍ଥନା କଲେ କଲ୍ୟାଣ ହୁଏ।

୧୩୦- ଯଦି ପ୍ରତ୍ୟେକ ଘରେ ଗୋଟିଏ-ଗୋଟିଏ ଭଗବାନ୍‌ଙ୍କ ମୂର୍ତ୍ତି ବା ଚିତ୍ର ରହେ, ତେବେ ମୂର୍ତ୍ତି ବା ଚିତ୍ର ନିଜ ମନର ରୁଚି ଅନୁସାରେ ହେବା ଆବଶ୍ୟକ ଏବଂ ନିତ୍ୟ ନିୟମପୂର୍ବକ ତାହାର ପୂଜା କରାଗଲେ ସମୟ ଓ ମନ ଉଭୟଙ୍କୁ ପରମାତ୍ମାଙ୍କଠାରେ ଲଗାଇବାର ଅଭ୍ୟାସ ସହଜରେ ହୋଇପାରେ।

୧୩୧- ଘରେ ନିତ୍ୟ ଭଗବାନ୍‌ଙ୍କ ପୂଜା ହେବା ପାଇଁ ପୂଜାର ସାମଗ୍ରୀ ଯୋଗାଡ କରିବା, ପୁଷ୍ପମାଳା ଗୁନ୍ଥିବା ଆଦିରେ ବହୁତ କିଛି ସମୟ ଏକ ପ୍ରକାର ଭଗବତ୍ ଚିନ୍ତନରେ ଲାଗିଯାଏ। ବାଳକମାନଙ୍କୁ ମଧ୍ୟ ଏଥିରୁ ବଡ ଆନନ୍ଦ ମିଳେ, ସେମାନେ ମଧ୍ୟ ଏହା ଶିଖି ଯାଆନ୍ତି। ପିଲାବେଳରୁ ତାଙ୍କ ହୃଦୟରେ ଭଗବତ୍‌ସମ୍ବନ୍ଧୀ ସଂସ୍କାର ହେବାକୁ ଲାଗେ।

୧୩୨- ଯେଉଁ ଲୋକ କରିପାରିବେ, ସେମାନେ ବାହ୍ୟ ପୂଜା ସଙ୍ଗେ ସଙ୍ଗେ ନିଜ-ନିଜ ସିଦ୍ଧାନ୍ତ ଅନୁସାରେ ବା ପ୍ରେମଭକ୍ତି ପ୍ରକାଶ ଅନୁସାରେ ଭଗବାନ୍‌ଙ୍କ ମାନସିକ ପୂଜା ମଧ୍ୟ କରି ପାରିବେ। କାରଣ ଆନ୍ତରିକ ପୂଜାର ମହତ୍ତ୍ୱ ଅଧିକ।

୧୩୩- ଯେଉଁ ସାଧକଙ୍କର ପରମାତ୍ମାଙ୍କ ପାଇଁ ଯେଉଁ ରୂପରେ ଅଧିକ ପ୍ରୀତି ଓ ଶ୍ରଦ୍ଧା ହୁଏ, ସେ ନିରନ୍ତର ତାହାରି ଚିନ୍ତନ କରିବା ଉଚିତ। ପରିଣାମ

ସବୁ ଏକ ଅଟେ। ପରିଣାମ ସମ୍ବନ୍ଧରେ କିଞ୍ଚିତ୍ ସଂଶୟ ରଖିବାର କିଛି ଆବଶ୍ୟକତା ନାହିଁ।

୧୩୪- ଉପାସନା ବା ଭକ୍ତିମାର୍ଗ ବଡ ସୁଗମ ଏବଂ ମହତ୍ତ୍ୱପୂର୍ଣ୍ଣ। ଏଥିରେ ଈଶ୍ୱରଙ୍କ ଭରସା ରହେ ଏବଂ ତାଙ୍କରି ବଳ ପ୍ରାପ୍ତ ହେଉଥାଏ।

୧୩୫- ମନ୍ଦିରକୁ ଯାଇ ଭଗବାନ୍‌ଙ୍କର ଗୁଣ ଓ ସ୍ୱରୂପ ସ୍ମରଣ କରିବା ଏବଂ ଭଗବାନ୍‌ଙ୍କୁ ପ୍ରାର୍ଥନା କରିବା ଉଚିତ, ଯଦ୍ୱାରା ତାଙ୍କ ମଧୁର ସ୍ୱରୂପର ଚିନ୍ତନ ସଦାସର୍ବଦା ଜାଗ୍ରତ ରହିବ ଏବଂ ତାଙ୍କ ଆଦର୍ଶ ଲୀଳା ତଥା ଆଜ୍ଞା ଅନୁସାରେ ଆଚରଣ ହେବ।

୧୩୬- ସାତ୍ତ୍ୱିକ ଆଚରଣ ଏବଂ ଭଗବାନ୍‌ଙ୍କର ବିଶୁଦ୍ଧ ଭକ୍ତିଦ୍ୱାରା ଅନ୍ତଃକରଣ ଶୁଦ୍ଧ ହେବା ପରେ ଯେଉଁ ସମୟରେ ଭ୍ରମ ତୁଟି ଯାଏ, ସେହି ସମୟରେ ସାଧକ କୃତକୃତ୍ୟ ହୋଇଯାଏ। ଏହା ପରମାତ୍ମାଙ୍କ ପ୍ରାପ୍ତି ଅଟେ।

୧୩୭- ଯେଉଁପ୍ରକାର ସୂର୍ଯ୍ୟଙ୍କ ସନ୍ନିଧିରେ ରହୁଥିବା ଲୋକ ପାଖରେ ଶୀତ ଓ ଅନ୍ଧକାର ରହେ ନାହିଁ, ସେହିପ୍ରକାର ଯାହାଙ୍କ ହୃଦୟରେ ଶ୍ରୀଭଗବାନ୍ ବିରାଜମାନ, ତା' ପାଖକୁ ଦୁର୍ଗୁଣ କିପରି ଆସି ପାରିବ?

୧୩୮- ପ୍ରେମ ସାଦୃଶ୍ୟତା ଓ ସମାନତାରେ ଥାଏ, ଏହାଦ୍ୱାରା ଯେଉଁ ଭକ୍ତଙ୍କଠାରେ ଦୈବୀ ସମ୍ପତ୍ତିର ଗୁଣ ଥାଏ, ତାହାକୁ ଭଗବାନ୍‌ଙ୍କ ଦର୍ଶନର ଉପଯୁକ୍ତ ପାତ୍ର ବୋଲି ବୁଝାଯିବ।

୧୩୯- ଭକ୍ତି ପାଇଁ ଭଗବାନ୍ ପ୍ରଥମ କଥା ବତାଇଛନ୍ତି ଯେ ଭକ୍ତି ସାଧନ କରୁଥିବା ଲୋକ ଦୈବୀ ସମ୍ପତ୍ତିର ଆଶ୍ରୟ ନେବା ଆବଶ୍ୟକ।

୧୪୦- ଭକ୍ତିପ୍ରିୟ ମାଧବ କେବଳ ଭକ୍ତିରେ ସନ୍ତୁଷ୍ଟ ହୁଅନ୍ତି, ଗୁଣଦ୍ୱାରା ନୁହେଁ ।

୧୪୧- ସଦାଗ୍ଭର ଓ ସଦ୍‌ଗୁଣ ଭକ୍ତମାନଙ୍କଠାରେ ଭକ୍ତିର ପ୍ରଭାବରେ ଅନାୟାସରେ ଆସିଯାଏ, ଏଥିପାଇଁ ଈଶ୍ୱରଙ୍କ ଭକ୍ତିରେ ସଦାଗ୍ଭର ଓ ସଦ୍‌ଗୁଣର ଏତେ ପ୍ରଧାନତା ନାହିଁ।

୧୪୨- ଯେପରି ରୋଗୀ ଲୋକପାଇଁ ରୋଗ ନିବୃତ୍ତି ଲାଗି ଔଷଧ ସେବନ ପ୍ରଧାନ ଓ ତା ସଙ୍ଗେ ସଙ୍ଗେ ପଥ୍ୟର ମଧ୍ୟ ଆବଶ୍ୟକତା ରହିଛି, ଏହିପ୍ରକାର ଜନ୍ମ-ମରଣରୂପୀ ରୋଗର ନିବୃତ୍ତିପାଇଁ ଈଶ୍ୱରଙ୍କ ଭକ୍ତି ପରମ ଔଷଧ ଏବଂ ସଦ୍‌ଗୁଣ ଓ ସଦାଗ୍ଭର ସେବନ ପଥ୍ୟ।

୧୪୩- ସଦାଗ୍ଭର ଓ ସଦ୍‌ଗୁଣରୂପୀ ପଥ୍ୟ କମ୍ ହେଲେ ମଧ୍ୟ ଭକ୍ତିରୂପୀ

ଔଷଧ ସେବନ ଦ୍ୱାରା ଭବରୋଗର ନିବୃତ୍ତି ହୋଇଯାଏ, କାରଣ ଭକ୍ତିରୂପୀ ଔଷଧ ପଥ୍ୟର କାମ କରିଦିଏ ।

୧୪୪- କେବଳ ବାହ୍ୟ ଆଡମ୍ବରର ନାମ ଭକ୍ତି ନୁହେଁ ।

୧୪୫- ଭକ୍ତି କହିବାକୁ ଯେତିକି ସହଜ, କରିବାକୁ ସେତିକି କଠିନ ।

୧୪୬- ଭକ୍ତି ଦେଖାଇବା ଜିନିଷ ନୁହେଁ, ତାହା ହୃଦୟର ପରମ ଗୁପ୍ତ ଧନ ।

୧୪୭- ଭକ୍ତିର ସ୍ୱରୂପ ଯେତିକି ଗୁପ୍ତ ରହେ, ସେତିକି ତାହା ଅଧିକ ମୂଲ୍ୟବାନ୍ ବୁଝାଯାଏ ।

୧୪୮- ନୂଆ ନୂଆ ଦେବୀ-ଦେବତାଙ୍କ ରଚନା ଧୂର୍ତ୍ତମାନେ କରିଛନ୍ତି । ସେମାନଙ୍କ ମାନ୍ୟତାକୁ ଛାଡି ଶାସ୍ତ୍ରୀୟ ଦେବୀ-ଦେବତାଙ୍କ ଉପାସନା କରିବା ଉଚିତ ।

୧୪୯- ଗୀତାରେ ଏପରି କୌଣସି ଅଧ୍ୟାୟ ନାହିଁ, ଯେଉଁଥିରେ କେଉଁଠି-ନା-କେଉଁଠି ଭକ୍ତିର ପ୍ରସଙ୍ଗ ନ ଆସିଛି ।

୧୫୦- ଏକ ଦୃଷ୍ଟିରେ ଏହା ମଧ୍ୟ କୁହାଯାଇପାରେ ଯେ ଗୀତା ଏକ ଭକ୍ତିପ୍ରଧାନ ଗ୍ରନ୍ଥ । ଏଥିରେ ଏପରି କୌଣସି ଅଧ୍ୟାୟ ନାହିଁ, ଯେଉଁଥିରେ ଭକ୍ତିର ପ୍ରସଙ୍ଗ ନାହିଁ ।

୧୫୧- ଗୀତାର ଭକ୍ତି ଅବିବେକପୂର୍ବକ କରାଯାଇଥିବା ଅନ୍ଧଭକ୍ତି ବା ଅଜ୍ଞାନପ୍ରେରିତ ଆଳସ୍ୟମୟ କର୍ମତ୍ୟାଗରୂପକ ଜଡତା ନୁହେଁ, ଗୀତାର ଭକ୍ତି କ୍ରିୟାତ୍ମକ ଓ ବିବେକପୂର୍ଣ୍ଣ ।

୧୫୨- ଗୀତାର ଭକ୍ତିରେ ପାପର ସ୍ଥାନ ନାହିଁ ।

୧୫୩- ଗୀତାର ଭକ୍ତି ପୂର୍ଣ୍ଣପୁରୁଷ ପରମାତ୍ମାଙ୍କ ନିକଟରେ ପହଞ୍ଚିବା ପାଇଁ ସାଧକମାନଙ୍କ ଦ୍ୱାରା କରାଯାଏ ।

୧୫୪- ଗୀତା ଅନୁସାରେ ପ୍ରଧାନତଃ ଅନନ୍ୟଭାବରେ ଭଗବାନ୍‌ଙ୍କ ସ୍ୱରୂପରେ ସ୍ଥିତ ହୋଇ ଭଗବାନ୍‌ଙ୍କ ଆଜ୍ଞା ମାନି ଭଗବାନ୍‌ଙ୍କ ପାଇଁ ମନ, ବାଣୀ, ଶରୀରଦ୍ୱାରା ସ୍ୱବର୍ଣ୍ଣାନୁସାରେ ସମସ୍ତ କର୍ମମାନଙ୍କର ଆଚରଣ କରିବା ହିଁ ଭଗବାନ୍‌ଙ୍କ ଭକ୍ତି ଏବଂ ଏହାଦ୍ୱାରା ପରମ ସିଦ୍ଧିରୂପକ ମୋକ୍ଷ ପ୍ରାପ୍ତି ହୋଇପାରେ ।

୧୫୫- ଗୀତାର ପ୍ରାରମ୍ଭ ଓ ପରିସମାପ୍ତି ଭକ୍ତିରେ ହିଁ ଅଛି ।

୧୫୬- ଯେପରି ବୃକ୍ଷର ପୂର୍ଣ୍ଣତା ଏବଂ ଗୌରବ ଫଳ ଆସିବାପରେ ହୁଏ, ସେହିପ୍ରକାର ଭକ୍ତିର ପୂର୍ଣ୍ଣତା ଏବଂ ଗୌରବ ଭଗବାନ୍‌ଙ୍କଠାରେ ପରମ

ପ୍ରେମ ହେବାରୁ ହୁଏ । ପ୍ରେମ ହିଁ ତାହାର ପରାକାଷ୍ଠା ଏବଂ ପ୍ରେମପାଇଁ ସେବା କରାଯାଏ । ଏଥିଯୋଗୁଁ ବାସ୍ତବରେ ଭଗବାନ୍‌ଙ୍କଠାରେ ଅନନ୍ୟ ପ୍ରେମ ହେବା ହିଁ ଭକ୍ତି ।

୧୫୭- ମନୁଷ୍ୟକୁ କଟିବଦ୍ଧ ହୋଇ କେବଳ ଈଶ୍ୱରଙ୍କ ଭକ୍ତି ସାଧନ କରିବାପାଇଁ ତତ୍ପର ହେବା ଉଚିତ ।

୧୫୮- ଭକ୍ତ ନିଜର ଇଷ୍ଟଦେବଙ୍କୁ ଉପାସନା କରି ଏପରି ବୁଝିବା ଉଚିତ ଯେ ମୁଁ ଯେଉଁ ପରମାତ୍ମାଙ୍କୁ ଉପାସନା କରୁଛି, ସେହି ପରମେଶ୍ୱର ନିରାକାରରୂପରେ ଚରାଚରରେ ବ୍ୟାପକ, ସର୍ବଜ୍ଞ, ସବୁ କିଛି ତାଙ୍କରି ଦୃଷ୍ଟିରେ ହେଉଛି । ସେହି ସର୍ବଜ୍ଞ, ସର୍ବବ୍ୟାପୀ, ସର୍ବଗୁଣସମ୍ପନ୍ନ, ସର୍ବସମର୍ଥ, ସର୍ବସାକ୍ଷୀ, ସତ୍-ଚିତ୍-ଆନନ୍ଦଘନ ମୋର ଇଷ୍ଟଦେବ ପରମାତ୍ମା ହିଁ ନିଜର ଲୀଳାରେ ଭକ୍ତଙ୍କ ଉଦ୍ଧାର ପାଇଁ ନିଜର ଇଚ୍ଛାନୁସାରେ ଭିନ୍ନ ଭିନ୍ନ ସ୍ୱରୂପ ଧାରଣ କରି ଅନେକ ଲୀଳା କରନ୍ତି । ଏହି ପ୍ରକାର ତତ୍ତ୍ୱରେ ଜାଣିଥିବା ପୁରୁଷଙ୍କପାଇଁ ପରମାତ୍ମା କେବେ ଅଦୃଶ୍ୟ ହୁଅନ୍ତି ନାହିଁ ଏବଂ ସେ ମଧ୍ୟ ପରମାତ୍ମାଙ୍କଠାରୁ ଅଦୃଶ୍ୟ ହୁଏ ନାହିଁ ।

୧୫୯- ଭଗବାନ୍‌ଙ୍କର ଯେଉଁ ଭକ୍ତ ସମସ୍ତଙ୍କ ରୂପରେ ଅଖିଳ ଜଗତର ପରମପୂଜ୍ୟ, ଦେବାଧିଦେବ, ସର୍ବଶକ୍ତିମାନ୍, ପରମ ଗୌରବ ତଥା ଅଚିନ୍ତ୍ୟ ପ୍ରଭାବର ନିତ୍ୟ ଧାମ ନିଜର ପରମ ପ୍ରିୟତମ ଭଗବାନ୍‌ଙ୍କୁ ଚିହ୍ନି ନିଜର ବିଶୁଦ୍ଧ ସେବାବୃତ୍ତିକୁ ହୃଦୟର ସଦ୍‌ବିଶ୍ୱାସ ଏବଂ ଅବିରଳ ପ୍ରେମର ନିରନ୍ତର ତାଙ୍କ ଆଡ଼କୁ ବହୁଥିବା ପବିତ୍ର ଓ ସୁଧାମୟୀ ମଧୁର ଧାରାରେ ପୂରାପୂରି ବୁଡ଼ି ତାଙ୍କର ପୂଜା କରନ୍ତି, ତେବେ ତାଙ୍କୁ କେତେ ଯେ ଅଲୌକିକ ଆନନ୍ଦ ତଥା କେତେ ଓ କିପରି ଦିବ୍ୟ ଶାନ୍ତି ମିଳିବ, ସେ କଥା ବର୍ଣ୍ଣନା କରି ହେବ ନାହିଁ ।

୧୬୦- ଶ୍ରଦ୍ଧା ଓ ପ୍ରେମ ସହିତ ମହାପୁରୁଷମାନଙ୍କର ସଙ୍ଗ, ସତ୍-ଶାସ୍ତ୍ରମାନଙ୍କର ଶ୍ରବଣ, ମନନ ଏବଂ ଭଗବାନ୍‌ଙ୍କ ଶରଣ ନେଇ ଅତ୍ୟନ୍ତ ଉତ୍ସୁକତାର ସହିତ ପ୍ରଭାବ ଓ ଗୁଣମାନଙ୍କୁ ବୁଝି ତାଙ୍କରି ଅନନ୍ୟ ଭକ୍ତ ହୋଇପାରନ୍ତି ।

୧୬୧- ଅତିଶୟ ସମତା, ଶାନ୍ତି, ଦୟା, ପ୍ରେମ, କ୍ଷମା, ମାଧୁର୍ଯ୍ୟ, ବାତ୍ସଲ୍ୟ, ଗମ୍ଭୀରତା, ଉଦାରତା, ସୁହୃଦୟତା ଆଦି ଭଗବାନ୍‌ଙ୍କ ଗୁଣ ଅଟେ ।

୧୬୨- ସମ୍ପୂର୍ଣ୍ଣ ବିଭୂତି, ବଳ, ଐଶ୍ୱର୍ଯ୍ୟ, ତେଜ, ଶକ୍ତି, ସାମର୍ଥ୍ୟ ଏବଂ ଅସମ୍ଭବକୁ ସମ୍ଭବ କରି ଦେବା ଆଦି ଭଗବାନ୍‌ଙ୍କ ପ୍ରଭାବ ଅଟେ ।

୧୬୩- ଯେପରି ପରମାଣୁ, ବାଷ୍ପ, ମେଘ, ବୁନ୍ଦା ଏବଂ କୁଆପଥର ଆଦି ସବୁ ଜଳ ହିଁ ଅଟେ, ସେପରି ସଗୁଣ, ନିର୍ଗୁଣ, ସାକାର, ନିରାକାର, ବ୍ୟକ୍ତ, ଅବ୍ୟକ୍ତ, ଜଡ, ଚେତନ, ସ୍ଥାବର, ଜଙ୍ଗମ, ସତ୍, ଅସତ୍ ଆଦି ଯାହା କିଛି ଅଛି ତଥା ଯାହା ଏହାଠାରୁ ମଧ୍ୟ ଊର୍ଦ୍ଧ୍ୱରେ, ସେ ସବୁ ଭଗବାନ୍ ଅଟନ୍ତି । ଏହା ଭଗବାନ୍‌ଙ୍କ ତତ୍ତ୍ୱ ।

୧୬୪- ଭଗବାନ୍‌ଙ୍କ ଦର୍ଶନ, ଭାଷଣ, ସ୍ପର୍ଶ, ଚିନ୍ତନ, କୀର୍ତ୍ତନ, ଅର୍ଚ୍ଚନ, ବନ୍ଦନ, ସ୍ତବନ ଆଦିଦ୍ୱାରା ପାପୀ ମଧ୍ୟ ପରମ ପବିତ୍ର ହୋଇଯାଏ, ଏହା ବିଶ୍ୱାସ କରିବା ତଥା ସର୍ବଜ୍ଞ ସର୍ବଶକ୍ତିମାନ୍ ସର୍ବତ୍ର ସମଭାବରେ ସ୍ଥିତ ମନୁଷ୍ୟାଦି ଶରୀରରେ ପ୍ରକଟ ହୋଇଥିବା ଏବଂ ଅବତାର ନେଇଥିବା ପରମାତ୍ମାଙ୍କୁ ଚିହ୍ନିବାର ଏହି ରହସ୍ୟ ଅଛି ।

୧୬୫- ଭଗବାନ୍‌ଙ୍କ ଗୁଣର ମହିମା କିଏ ଆଉ ଗାଇ ପାରିବ ? ସେ ସମସ୍ତ ଗୁଣର ସମୁଦ୍ର । ପ୍ରଭୁ ପ୍ରେମମୟ । ପ୍ରେମର ମୂର୍ତ୍ତି । ପ୍ରେମ ହିଁ ତାଙ୍କରି ସ୍ୱଭାବ । ପ୍ରଭୁ ଦୟାମୟ, ଦୟାର ମୂର୍ତ୍ତି, ଦୟା ହିଁ ତାଙ୍କର ସ୍ୱଭାବ । ତାଙ୍କର ଗୋଟିଏ-ଗୋଟିଏ ଗୁଣ ଆଡକୁ ଧ୍ୟାନ ଗଲେ ଏପରି ଦେଖାଯାଏ ଯେ ସେ ସେହି ଗୁଣର ମୂର୍ତ୍ତି । ସମସ୍ତ ଗୁଣ ପ୍ରଭୁଙ୍କଠାରେ ପରିପୂର୍ଣ୍ଣ । ଏହିପ୍ରକାର ତାଙ୍କର ପ୍ରଭାବ ମଧ୍ୟ ଅମିତ ।

୧୬୬- ସଂସାରରେ ଯାହା କିଛି ପ୍ରଭାବ ଦେଖିବାକୁ ମିଳେ, ତାହା ସବୁ ପ୍ରଭୁଙ୍କର । ଅଗ୍ନିର ଯେଉଁ ଦାହିକା ଶକ୍ତି ଅଛି, ସୂର୍ଯ୍ୟଙ୍କଠାରେ ଯେଉଁ ପ୍ରକାଶ ଅଛି, ଚନ୍ଦ୍ରଙ୍କଠାରେ ଯେଉଁ ଶୀତଳତା ଅଛି ତଥା ପୋଷଣ ଶକ୍ତି ଅଛି, ସେ ସବୁକୁ ଯଦି ଏକାଠି କରି ଦିଆଯାଏ, ତେବେ ପ୍ରଭୁଙ୍କର ପ୍ରଭାବର ଏକ ଅଂଶ ସଙ୍ଗେ ସମାନ ହେବ ନାହିଁ ।

୧୬୭- ଯାହାଙ୍କର ସଂକଳ୍ପରେ ତଥା ନେତ୍ର ଖୋଲିବାରେ ଏବଂ ବନ୍ଦ କରିବାରେ କ୍ଷଣକରେ ସଂସାରର ଉତ୍ପତ୍ତି ଓ ବିନାଶ ହୋଇଯାଏ, ଯାହାଙ୍କ ପ୍ରଭାବରେ କ୍ଷଣକ ମଧ୍ୟରେ ମାଛି ପରି ଜୀବ ଇନ୍ଦ୍ର ରୂପରେ ଏବଂ ଇନ୍ଦ୍ରଙ୍କ ତୁଲ୍ୟ ଜୀବ ମାଛି ରୂପରେ ପରିଣତ ହୋଇଯାଏ, କେବଳ ଏତିକି ନୁହେଁ ସମ୍ଭବକୁ ଅସମ୍ଭବ ଏବଂ ଅସମ୍ଭବକୁ ସମ୍ଭବ ଯେ କରି ପାରନ୍ତି, ଏପରି କୌଣସି କଥା ନାହିଁ ଯାହା ତାଙ୍କଦ୍ୱାରା ହୋଇ ନ ପାରିବ; ଏତେ ପ୍ରଭାବଶାଳୀ ହେଲେ ମଧ୍ୟ ସେହି ପ୍ରଭୁ ଭଜୁଥିବା ଲୋକକୁ କେବେ ଉପେକ୍ଷା କରନ୍ତି ନାହିଁ ବରଂ

ଭଜୁଥିବା ଲୋକକୁ ସ୍ୱୟଂ ଭଜନ କରନ୍ତି । ଏହି ରହସ୍ୟକୁ କିଞ୍ଚିତ୍ ଜାଣିଥିବା ପୁରୁଷ ଏକ କ୍ଷଣ ପାଇଁ ଏପରି ପ୍ରଭୁଙ୍କର ବିୟୋଗ କିପରି ସହି ପାରିବ ।

୧୬୮- ଯିଏ ପ୍ରେମ ତତ୍ତ୍ୱକୁ ଜାଣେ, ସେ ସାକ୍ଷାତ୍ ପ୍ରେମସ୍ୱରୂପ । ଯିଏ ମହାନ୍ ହୋଇ ମଧ୍ୟ ନିଜର ପ୍ରେମୀ ଭକ୍ତ ଏବଂ ସଖାମାନଙ୍କ ସହିତ ସେମାନଙ୍କୁ ଅନୁଗମନ କରେ, ଏପରି ସେହି ନିରଭିମାନୀ, ପ୍ରେମୀ, ଦୟାଳୁ ଭଗବାନ୍‌ଙ୍କ ତତ୍ତ୍ୱକୁ ଜାଣିଥିବା ପୁରୁଷ ତାଙ୍କର କୌଣସି ବି ଆଜ୍ଞାକୁ କିପରି ଉଲ୍ଲଂଘନ କରି ପାରେ ।

୧୬୯- ସେହି ପରମାତ୍ମାଙ୍କଠାରେ ଧୈର୍ଯ୍ୟ, କ୍ଷମା, ଦୟା, ତ୍ୟାଗ, ଶାନ୍ତି, ପ୍ରେମ, ଜ୍ଞାନ, ସମତା, ନିର୍ଭୟତା, ସରଳତା, କୋମଳତା, ମଧୁରତା, ସୁହୃଦୟତା ଆଦି ସଦ୍‌ଗୁଣର ସୀମା ନାହିଁ ଏବଂ ପରମାତ୍ମାଙ୍କର ଏ ସବୁ ଗୁଣ ତାଙ୍କୁ ଭଜୁଥିବା ଲୋକଙ୍କ ପାଖକୁ ସ୍ୱାଭାବିକ ହିଁ ଆସିଯାଏ । ଏହି କଥାର ମର୍ମକୁ ଜାଣିଥିବା ପୁରୁଷ ତାହାଙ୍କୁ ଛାଡି ଏକକ୍ଷଣ ଅନ୍ୟକୁ ଭଜି ପାରେ ନାହିଁ ।

୧୭୦- ଭଗବାନ୍‌ଙ୍କ ତତ୍ତ୍ୱ, ରହସ୍ୟ, ପ୍ରଭାବ ଓ ଗୁଣମାନଙ୍କୁ ଜାଣିଥିବା ଭଗବାନ୍‌ଙ୍କ ଭକ୍ତ ଭଜନ-ଧ୍ୟାନାଦି ବହୁମୂଲ୍ୟ ରତ୍ନମାନଙ୍କୁ ଛାଡ଼ି ଦେଇ ସଂସାରର ବିଷୟରୂପକ ଗୋଡି-ପଥରରେ ନିଜର ଏକକ୍ଷଣ କାହିଁକି ନଷ୍ଟ କରିବ?

୧୭୧- ଯାହାଙ୍କର ଭଗବାନ୍‌ଙ୍କଠାରେ ପ୍ରେମ ଓ ଶ୍ରଦ୍ଧା ଥାଏ, ସେ ଭଗବାନ୍‌ଙ୍କର ପ୍ରତ୍ୟେକ ଲୀଳାମୟ କ୍ରିୟାମାନଙ୍କରୁ ଶିକ୍ଷା ଗ୍ରହଣ କରନ୍ତି ଏବଂ ପ୍ରେମରେ ମୁଗ୍ଧ ହୁଅନ୍ତି ।

୧୭୨- ଭଗବାନ୍‌ଙ୍କ ଲୀଳାମୟ କର୍ମମାନଙ୍କରୁ ଶିକ୍ଷା ଗ୍ରହଣ କରି ଯିଏ ସେଗୁଡ଼ିକର ଅନୁକରଣ କରେ, ସେ ମଧ୍ୟ କର୍ମ ଜଞ୍ଜାଳରେ ନ ପଡି ପରମେଶ୍ୱରଙ୍କୁ ପ୍ରାପ୍ତ ହୋଇଯାଏ ଏବଂ ତା'ର କର୍ମ ମଧ୍ୟ ଦିବ୍ୟ ହୋଇଯାଏ ।

୧୭୩- ଯେଉଁ ପୁରୁଷ ଭଗବାନ୍‌ଙ୍କର ଜନ୍ମର ଦିବ୍ୟତାକୁ ତତ୍ତ୍ୱରେ ବୁଝି ନିଏ, ତାହା ପାଇଁ ଭଗବାନ୍‌ଙ୍କର ଏକ କ୍ଷଣ ମଧ୍ୟ ବିୟୋଗ ଅସହ୍ୟ ହୋଇଯାଏ । ଭଗବାନ୍‌ଙ୍କଠାରେ ପରମ ଶ୍ରଦ୍ଧା ଏବଂ ଅନନ୍ୟ ପ୍ରେମ ହେବା କାରଣରୁ ତାଙ୍କଦ୍ୱାରା ଭଗବାନ୍‌ଙ୍କର ଅନନ୍ୟ ଚିନ୍ତନ ହେଉଥାଏ ।

୧୭୪- ସେହି ପରମେଶ୍ୱରଙ୍କ ପରି ସୁହୃଦ୍, ପ୍ରେମୀ ଓ ପତିତପାବନ ଅନ୍ୟ କେହି ନାହିଁ । ଏହା ବୁଝି ଯେଉଁ ପୁରୁଷ ତାଙ୍କରି ଅନନ୍ୟ ପ୍ରେମକୁ ନିରନ୍ତର ଚିନ୍ତନ କରି ଆସକ୍ତିରହିତ ହୋଇ ସଂସାରରେ ବ୍ୟବହାର କରେ, ସେ ବାସ୍ତବରେ

ତାଙ୍କରି ତତ୍ତ୍ୱକୁ ଜାଣେ । ଏପରି ତତ୍ତ୍ୱଜ୍ଞ ପୁରୁଷଙ୍କୁ ଏହି ଦୁଃଖରୂପ ସଂସାରକୁ ପୁଣି କେବେ ଫେରିବାକୁ ପଡେ ନାହିଁ ।

୧୭୫- ସଂସାରରେ ଶ୍ରୀନାରାୟଣଙ୍କ ଭକ୍ତିକୁ ଖୁବ୍ ଜୋରରେ ବଢାଇବା ଉଚିତ । ସମୟ ଗ୍ଲି ଯାଉଛି । ଭକ୍ତିର ପ୍ରବାହ ପ୍ରବଳ ନ ହେଲେ କାମ କିପରି ଚଳିବ ?

୧୭୬- ମନୁଷ୍ୟ ଧୀରେ ଧୀରେ ସଂସାରରେ ସବୁ ବିଷୟମାନଙ୍କରେ ପ୍ରେମ କରିବା ଛାଡି ଦେଇ ଏକମାତ୍ର ଆନନ୍ଦସ୍ୱରୂପ ଭଗବାନ୍‌ଙ୍କ ଭକ୍ତିରେ ଲାଗି ଗଲେ ସଂସାର ସାଗରରୁ ପାରି ହୋଇ ପାରିବ ।

୧୭୭- ଭକ୍ତିଦ୍ୱାରା ଜ୍ଞାନ-ବୈରାଗ୍ୟ ଆପେ ଆପେ ହୋଇ ପାରିବ, କାରଣ ଭକ୍ତି ହେଉଛନ୍ତି ମାତା ଏବଂ ଜ୍ଞାନ-ବୈରାଗ୍ୟ ଦୁହେଁ ଭକ୍ତିଙ୍କର ପୁତ୍ର । ଏଣୁ ଭକ୍ତିରେ ହିଁ ସୁଖ ଅଛି ।

୧୭୮- ଭକ୍ତିରେ ଭଗବାନ୍ ମିଳନ୍ତି ଯଦ୍ଦ୍ୱାରା ସଦାସର୍ବଦାପାଇଁ ପୂର୍ଣ୍ଣ ଆନନ୍ଦ ହୋଇଯାଏ ।

୧୭୯- ନବୀନ ନବଧା ଭକ୍ତି—

୧. (ସତ୍‌ସଙ୍ଗ) ଭଗବଦ୍‌ଭକ୍ତମାନଙ୍କର ଦର୍ଶନ, ଚିନ୍ତନ, ସ୍ପର୍ଶଦ୍ୱାରା ତଥା ସେମାନଙ୍କ ବଚନ ଶୁଣି ଆନନ୍ଦିତ ହେବା ।

୨. (କୀର୍ତ୍ତନ) ପ୍ରେମରେ ମଗ୍ନ ହୋଇ ସବୁ ସମୟରେ ଭଗବାନ୍‌ଙ୍କ ନାମ ସ୍ମରଣ ତଥା ପ୍ରେମ ଓ ପ୍ରଭାବର ସହିତ ଭଗବାନ୍‌ଙ୍କ ନାମ ସ୍ମରଣ ତଥା ପ୍ରେମ ଓ ପ୍ରଭାବର ସହିତ ଭଗବାନ୍‌ଙ୍କର ଗୁଣମାନଙ୍କର କଥନ ।

୩. (ସ୍ମରଣ) ସାରା ସଂସାରରେ ଭଗବାନ୍‌ଙ୍କର ସ୍ୱରୂପର ଚିନ୍ତନ ।

୪. (ଶୁଭେଚ୍ଛା) ଭଗବାନ୍‌ଙ୍କ ଦର୍ଶନ ଏବଂ ତାଙ୍କଠାରେ ପ୍ରେମ ହେବାର ଉତ୍କଟ ଇଚ୍ଛା ।

୫. (ସନ୍ତୋଷ) ଯାହା କିଛି ପ୍ରାପ୍ତ ହୋଇଯାଏ, ତାହା ଭଗବଦ୍-ଆଜ୍ଞାରେ ହୋଇଛି ମନେକରି ଆନନ୍ଦରେ ପତିବ୍ରତା ସ୍ତ୍ରୀ ପରି ସ୍ୱୀକାର କରିବା ।

୬. (ସେବା) ସବୁ ଜୀବମାନଙ୍କୁ ପରମେଶ୍ୱରଙ୍କ ସ୍ୱରୂପ ବୁଝି ନିଷ୍କାମଭାବରେ ତାଙ୍କରି ସେବା ଓ ସତ୍କାର କରିବା ।

୭. (ନିଷ୍କାମ କର୍ମ) ଶାସ୍ତ୍ରୋକ୍ତ ନିଷ୍କାମ ଭାବରେ ସବୁ କର୍ମରେ ଈଶ୍ୱରଙ୍କ ଅନୁକୂଳ ହେବା ଅର୍ଥାତ୍ ଯଦ୍ଦ୍ୱାରା ପରମେଶ୍ୱର ପ୍ରସନ୍ନ ହେବେ, ସେହି କର୍ମ କରିବା ।

୮. (ଉପରମତା) ସଂସାରର ଭୋଗମାନଙ୍କରୁ ଚିତ୍ତକୁ ହଟାଇ ଦେବା ।

୯. (ସଦାଗ୍ରହ) ଈଶ୍ୱରଙ୍କଠାରେ ପ୍ରେମ ହେବା ନିମିତ୍ତ ଅହିଂସା ସତ୍ୟାଦିର ପାଳନ କରିବା ।

୧୮୦- ଧନ, ଯୌବନ ଅସ୍ଥିର ଅଟେ । କେବଳ ଭଗବତ୍-ପ୍ରେମ ଓ ଭକ୍ତି ସ୍ଥିର ଅଟେ । ଏହାକୁ ପ୍ରାପ୍ତ କରିବା ଉଚିତ ।

୧୮୧- କେବେ ନିରାଶ ନ ହୋଇ ପରମାତ୍ମାଙ୍କ ନିଷ୍କାମପ୍ରେମଭକ୍ତିରେ ମଗ୍ନ ରହିବା ଉଚିତ ।

୧୮୨- ନୀଚ ପୁରୁଷ ମଧ୍ୟ ଭଗବାନ୍‌ଙ୍କର ଭକ୍ତି କରିବାଦ୍ୱାରା ପବିତ୍ର ହୋଇଯାଇପାରେ । ଯେପରି—ଅଜାମିଳ ।



# ଜ୍ଞାନଯୋଗ

୧- ସମଗ୍ର ସଂସାର ଏକ ସତ୍-ଚିତ୍-ଆନନ୍ଦଦ୍ୱାରା ପରିବ୍ୟାପ୍ତ । ଏହା ହୃଦୟଙ୍ଗମ କରିବା ଉଚିତ । ଯେପରି ଏକ ବରଫର ଖଣ୍ଡ ଜଳଦ୍ୱାରା ପରିପୂର୍ଣ୍ଣ, ସେପରି ଆନନ୍ଦଘନଦ୍ୱାରା ସାରା ସଂସାର ବ୍ୟାପ୍ତ ଅଟେ, ଏପରି ବୁଝୁଥିଲେ ସଂସାର ସହ ଯେତେ ଜଡିତ ହେଲେ ହେଁ କୌଣସି ହାନି ନାହିଁ ।

୨- ଚଳପ୍ରଚଳ ସମୟରେ ସବୁ ସ୍ଥାନରେ ପରମାତ୍ମାଙ୍କୁ ଦେଖିବା ଉଚିତ । ଏପରି ସାଧନା କଲେ ଅନେକ ଉପକାର ହୁଏ । ଆଖିରେ ଯାହା କିଛି ଦେଖାଯାଏ, ତାହା କୌଣସି ବସ୍ତୁ ନୁହେଁ, କୌଣସି ପଦାର୍ଥ ନୁହେଁ, କି ଶରୀର ବି ନୁହେଁ, ବାସ୍ତବରେ ତାହା କେବଳ ପରମାତ୍ମା ଦ୍ୱାରା ପରିପୂର୍ଣ୍ଣ ଅଟେ । ଯାହା ଦେଖାଯାଉଅଛି, ତାହା ନାହିଁ । ଯେପରି ସ୍ୱପ୍ନର ସଂସାର, ମୃଗତୃଷ୍ଣାର ଜଳ ଏବଂ ଉଜ୍ଜ୍ୱଳ ଆଲୋକ । ବାସ୍ତବରେ ଏହି ଦୃଷ୍ଟାନ୍ତ ମଧ୍ୟ ଠିକ୍ ଲାଗୁ ନାହିଁ, ଏହା ଏକ ବୋଧ-ଆନନ୍ଦଘନ ଅଟେ, ଆନନ୍ଦ ଅଟେ, ବୋଧ ଅଟେ, ଜ୍ଞାନ ସ୍ୱରୂପ ଅଟେ । ଏହିପରି ବୁଝିବା ଆରମ୍ଭ କଲେ ପ୍ରଥମେ ତ ଆନନ୍ଦର ଲହରୀ ଉଠି ମିଳେଇଯାଏ, ପରେ ଏହି ସାଧନା ବୃଦ୍ଧି ହେଲେ ଏକ ଜ୍ଞାନ ସ୍ୱରୂପ ରହିଯାଏ ।

୩- ଏକ ସଚ୍ଚିଦାନନ୍ଦ ସର୍ବବ୍ୟାପକ ପରମାତ୍ମାଙ୍କ ଅସ୍ତିତ୍ୱର ଧାରଣା ଏବଂ

ତାହା ବିନା ସବୁ ଶୂନ୍ୟତାର ବୋଧ ତଥା ସଂସାରକୁ ମିଥ୍ୟା, ସ୍ୱପ୍ନବତ୍, କଳ୍ପିତ ଦେଖିବାର ଅଭ୍ୟାସ କଲେ ସଂସାରର ସତ୍ତା ଓ ଅହଂଭାବର ଅଭାବ ହୋଇଯାଏ।

୪- ଯାହାଙ୍କୁ ଧ୍ୟାନ କରାଯାଏ, ସେ ଅମୃତରୂପ ଅଟନ୍ତି। ସେହି ସମୟରେ ଧ୍ୟାନ ସାକ୍ଷାତ ଅମୃତମୟ ହୋଇଯାଏ ତଥା କେବଳ ଅର୍ଥମାତ୍ର ହିଁ ରହିଯାଏ ଏବଂ ଧ୍ୟାତା, ଧ୍ୟାନ ଧ୍ୟେୟରୂପ ତ୍ରିବିଧତା ବି ରହେ ନାହିଁ; ଅମୃତର ଜ୍ଞାନ ଅମୃତମୟ ସ୍ୱରୂପ ପରମାତ୍ମାଙ୍କୁ ହିଁ ହୁଏ। ପୁଣି ଅମୃତମୟର ଇଚ୍ଛା କାହାକୁ ହେବ।

୫- ସାଂସାରିକ କାର୍ଯ୍ୟଗୁଡ଼ିକୁ ମିଥ୍ୟା ମନେ କରି ପ୍ରସନ୍ନ ହୃଦୟରେ ହସି ହସି ଓ ଭଗବାନ୍‌ଙ୍କୁ ସ୍ମରଣ କରି ଖେଳ ସଦୃଶ କରିବା ଉଚିତ କିମ୍ବା ସଚ୍ଚିଦାନନ୍ଦ ଭଗବାନ୍‌ଙ୍କର ସର୍ବବ୍ୟାପୀ ସ୍ୱରୂପରେ ସ୍ଥିତ ହୋଇ ଏକ ଦ୍ରଷ୍ଟାରୂପେ ସାଂସାରିକ କାର୍ଯ୍ୟ କରିବା ଉଚିତ।

୬- ଭଜନ, ଧ୍ୟାନ, ସେବା, ସତ୍‌ସଙ୍ଗ ଆଦିଦ୍ୱାରା ଅନ୍ତଃକରଣ ପବିତ୍ର ହେବା ସଙ୍ଗେ ସଙ୍ଗେ ଜ୍ଞାନରୂପୀ ସୂର୍ଯ୍ୟର ଆଲୋକ ମନୁଷ୍ୟର ହୃଦୟାକାଶରେ ଉଦ୍‌ଭାସିତ ହୁଏ।

୭- ପ୍ରତ୍ୟେକ ସମୟରେ ଶରୀର, ପ୍ରାଣ, ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କଠାରୁ "ମୁଁ" କୁ ଦୂରେଇବାକୁ ଚେଷ୍ଟା କରିବା ଉଚିତ। ସର୍ବଦା ମନେ ରଖିବାକୁ ହେବ—ଶରୀର ଆଦି ମୁଁ ନୁହେଁ, ମୁଁ ଏଗୁଡ଼ିକଠାରୁ ପୃଥକ୍ ଅଟେ। ମୁଁ ଏସବୁର ଦ୍ରଷ୍ଟା ଅଟେ।

୮- ଶ୍ରୀସଚ୍ଚିଦାନନ୍ଦଘନ ପରମାତ୍ମା ହିଁ ତୁମର ସ୍ୱରୂପ ଅଟେ। ତାହା ସହିତ "ମୁଁ" ଭାବ ସୃଷ୍ଟି କରିବା ଉଚିତ।

୯- ବ୍ୟବହାର ସମୟରେ ତଥା କହିବା ସମୟରେ ମଧ୍ୟ "ମୁଁ" ଭାବ ପରିହାର କରିବା ଉଚିତ।

୧୦- ବହୁ ଅଭ୍ୟାସ ଫଳରେ ଏହି ମିଥ୍ୟା ସଂସାର ସତ୍ୟ ପରି ପ୍ରତୀତ ହୁଏ। ବାସ୍ତବରେ ସଂସାରରେ କୌଣସି ପଦାର୍ଥ ନାହିଁ । ସର୍ବତ୍ର କେବଳ ଏକ ସଚ୍ଚିଦାନନ୍ଦ ହିଁ ପରିବ୍ୟାପ୍ତ, ଏହିପରି ବିଶ୍ୱାସ ଦୃଢ ହେବା ଉଚିତ।

୧୧- ପରମାତ୍ମାଙ୍କୁ ଲାଭ କରିଥିବା ପୁରୁଷର ଅନ୍ତଃକରଣଦ୍ୱାରା କୌଣସି ବୈଷୟିକ ସମ୍ବନ୍ଧ ତିଆରି ହୁଏ ନାହିଁ। କେବଳ ଲୋକଦୃଷ୍ଟିରେ ସେ ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କଦ୍ୱାରା କାର୍ଯ୍ୟ ସମ୍ପନ୍ନ କରିବା ପରି ପ୍ରତୀତ ହୁଏ।

୧୨- ଯେଉଁ ବ୍ୟକ୍ତିମାନଙ୍କର ଅଜ୍ଞାନନିଦ୍ରା ନଷ୍ଟ ହୋଇଯାଇଛି କିମ୍ବା ସଂସାର

ସ୍ୱପ୍ନପରି ପ୍ରତୀତ ହେଲାଣି ସେମାନଙ୍କ ହୃଦୟରେ କାମ-କ୍ରୋଧାଦି ଦୁର୍ଗୁଣ କିପରି ରହିପାରିବ? ଯେଉଁ ବ୍ୟକ୍ତିର ନିଦ୍ରାଭଙ୍ଗ ହୋଇଯାଏ, ତାହାର ସ୍ୱପ୍ନ ମଧ୍ୟ ଭାଙ୍ଗିଯାଏ।

୧୩- ସମଗ୍ର ସଂସାରକୁ ଏକ ଆନନ୍ଦଘନ ମନେ କରି ସବୁକିଛି ଆନନ୍ଦରେ ପରିପୂର୍ଣ୍ଣ ବୁଝିବା ଉଚିତ। ଯେପରି ଜଳ ମଧ୍ୟସ୍ଥ ବରଫର ପିଣ୍ଡ କେବଳ ଜଳରେ ହିଁ ପୂର୍ଣ୍ଣ, ସେହିପରି ସବୁକିଛି ଆନନ୍ଦଘନ ପରମାତ୍ମାଦ୍ୱାରା ପରିପୂର୍ଣ୍ଣ ଅଟେ।

୧୪- ଶରୀରଠାରୁ ପୃଥକ୍ ରହି ଏବଂ ଶାରୀରିକ କର୍ମଗୁଡ଼ିକର ସାକ୍ଷ୍ୟରୂପେ ଯିଏ କାର୍ଯ୍ୟ ସମ୍ପାଦନ କରେ, ତାହାର ହୃଦୟରେ ବିକାର ସୃଷ୍ଟି ହୁଏ ନାହିଁ।

୧୫- ଜୀବ ଯାହା ପରମାତ୍ମାଙ୍କର ସନାତନ ଅଂଶ ଅଟେ, ସେ ନିଜର ଶକ୍ତିକୁ ଭୁଲି ଯାଇଛି। ତେଣୁ ସଂସାରର ମାୟା ଉତ୍କଟ ରୂପ ଧାରଣ କରି ତାକୁ କବଳିତ କରୁଛି। ଯଦି ନିଜର ଶକ୍ତି ଜାଗ୍ରତ କରିଦିଆଯାଏ, ତେବେ ମାୟାର ଶକ୍ତି ସହଜରେ ପରାସ୍ତ ସ୍ୱୀକାର କରେ। ଅଜ୍ଞାନତା ମାୟାର କାରଣ ଅଟେ। ଅଜ୍ଞାନତାର ବିନାଶରେ ମାୟାର ବିନାଶ ହୁଏ।

୧୬- ଯେଉଁ ମନୁଷ୍ୟ ସ୍ୱାମୀର କାର୍ଯ୍ୟକୁ ଜଞ୍ଜାଳ ମନେକରି ପଛଘୁଞ୍ଚା ଦିଏ, ତାହାକୁ ଅକର୍ମଣ୍ୟ କୁହାଯାଏ । ଯିଏ ଲୀଳାମାତ୍ର କାର୍ଯ୍ୟଗୁଡ଼ିକୁ ବାସ୍ତବ ମନେ କରେ, ସ୍ୱାମୀ ତାକୁ ମୂର୍ଖ ମନେ କରେ ଏବଂ ଯିଏ କାର୍ଯ୍ୟଗୁଡ଼ିକୁ ସ୍ୱପ୍ନବତ୍ (ଲୀଳାମାତ୍ର) ମନେ କରେ, ମାଲିକ ତାହାକୁ ନିଜର ଜ୍ଞାନୀ ଭକ୍ତ ମନେ କରେ।

୧୭- ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କଠାରୁ ଭିନ୍ନ ଯାହା କିଛି ଦୃଶ୍ୟମାନ ହୁଏ, ତାହାର ଅସ୍ତିତ୍ୱ ନ ଥାଏ। ଏହିପରି ମନେ କରି ଯାହା କିଛି ଚିନ୍ତନର ପରିଧି ମଧ୍ୟରେ ଆସେ, ତାହାକୁ ସ୍ମରଣ ନ କରି ଅବଶିଷ୍ଟକୁ ଅଚିନ୍ତ୍ୟ ସଚ୍ଚିଦାନନ୍ଦରୂପେ ହୃଦ୍‌ବୋଧପୂର୍ବକ ସେଥିରେ ସ୍ଥିତ ହେବା ଉଚିତ। ଏହିପରି ଅଧିକ ଅଭ୍ୟାସ କଲେ ଅଚିନ୍ତ୍ୟଙ୍କୁ ଧ୍ୟାନ ଭିତରକୁ ଅଣାଯାଇପାରେ।

୧୮- ଜଳରେ ବରଫପରି ନିଜର ଶରୀରକୁ ଆନନ୍ଦରେ ବୁଡ଼ାଇ ଦିଅ। ତାପରେ ଆନନ୍ଦ କେବଳ ହିଁ ରହିଯାଏ। ଏହିରୂପେ ଧ୍ୟାନ କଲେ ସଚ୍ଚିଦାନନ୍ଦ ସ୍ୱରୂପରେ ସ୍ଥିତି ସମ୍ଭବ ହୋଇପାରେ।

୧୯- ପରମ ଆନନ୍ଦମୟ ଏକମାତ୍ର ସଚ୍ଚିଦାନନ୍ଦଘନ ହିଁ ସର୍ବତ୍ର ଅଭିନ୍ନ ରୂପରେ ବିଦ୍ୟମାନ। ସେ ହିଁ ପରମପଦ। ସେ ହିଁ ପରଂବ୍ରହ୍ମ ଏବଂ ସେ ହିଁ ଅମୃତ ଅଟନ୍ତି।

୨୦- ସଂସାରରେ ଦୁଇଟି ପଦାର୍ଥ ଅଛି—ଜଡ ଓ ଚେତନ। ପୁରୁଷ ଚେତନ ଓ ପ୍ରକୃତି ଜଡ ଅଟେ। ପୁରୁଷ ଦ୍ରଷ୍ଟା ଓ ପ୍ରକୃତି ଦୃଶ୍ୟ ଅଟେ । ପୁରୁଷ ନିର୍ବିକାର ଓ ପ୍ରକୃତି ବିକାରଶୀଳା ଅଟେ।

୨୧- ଜ୍ଞାନମାର୍ଗୀ ପୁରୁଷ ସମସ୍ତ ଚରାଚର ବିଶ୍ୱକୁ ନିଜର ଚିନ୍ମୟ ଆତ୍ମସ୍ୱରୂପରେ ହିଁ ଅନୁଭବ କରେ।

୨୨- ଜ୍ଞାନଯୋଗର ସାଧନା ଦେହାଭିମାନରୁ ରହିତ ହୋଇ କରିବା ଉଚିତ।

୨୩- ଅଦ୍ୱୈତ ସିଦ୍ଧାନ୍ତ ଅନୁଯାୟୀ "ଆତ୍ମା" ଓ "ପରମାତ୍ମା" ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ, କେବଳ ନାମରେ ପ୍ରଭେଦ ଅଛି।

୨୪- ଆତ୍ମା ସୁଖସ୍ୱରୂପ ଅଟେ।

୨୫- ସେହି ବିଜ୍ଞାନାନନ୍ଦଘନ ପରମାତ୍ମା ନିତ୍ୟ, ଶାଶ୍ୱତ, ସନାତନ ଓ ଅବ୍ୟୟ ଅଟନ୍ତି। ସେହି ଏକରୁ ସବୁ ସତ୍ତା ଓ ସବୁ ସ୍ଫୂର୍ତ୍ତି ଜାତ ହୁଏ। ସମସ୍ତ ଚେତନ ଓ ସ୍ଫୁରଣ ତାହାର ଅଟେ। ତାହା ନିତ୍ୟ ସ୍ୱରୂପ ଅଟେ।

୨୬- ସଂସାରର ସବୁରି ସତ୍ତାମୂଳରେ ପରମାତ୍ମାଙ୍କ ବାସସ୍ଥାନ ଅଛି। ଏହି ସମସ୍ତ ଚେତନା ପରମାତ୍ମାଙ୍କର ସ୍ଫୂର୍ତ୍ତି ଅଟେ। ଏହି ସବୁ ପରମାତ୍ମାଙ୍କର ସ୍ୱରୂପ ଅଟେ। ସବୁର ବିନାଶ ହେଲେ ମଧ୍ୟ ତାହାର ବିନାଶ ହୁଏ ନାହିଁ। ସେ ସର୍ବଦା, ସର୍ବତ୍ର ପ୍ରତ୍ୟକ୍ଷ ବିଦ୍ୟମାନ ଅଟନ୍ତି।

୨୭- ଦେହ ନାଶଶୀଳ ମାତ୍ର ଦେହୀ (ଆତ୍ମା) ଅବିନାଶୀ ଅଟେ। ଦେହ ଅସତ୍ ମାତ୍ର ଦେହୀ ସତ୍ୟ ଅଟେ। ଶରୀରର ସମସ୍ତ ପଦାର୍ଥ ଅନିତ୍ୟ ଓ କ୍ଷଣଭଙ୍ଗୁର ଅଟେ। ସଂସାରରେ ଯାହା କିଛି ସତ୍ତା ଓ ସ୍ଫୂର୍ତ୍ତି ଦୃଶ୍ୟମାନ, ତାହାସବୁ ପରମାତ୍ମାଙ୍କର ଅଟେ।

୨୮- ଆମର ଏହି ଶରୀର ଅସତ୍। କ୍ଷଣଭଙ୍ଗୁର, ବିନାଶଶୀଳ, ଆଦି ଏବଂ ଅନ୍ତ ବିଶିଷ୍ଟ ଅଟେ। ଯାହା ଅସତ୍, ତାହାର ଭାବ ନାହିଁ ଓ ଯାହା ସତ୍, ତାହାର ଅଭାବ ନାହିଁ।

୨୯- ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭେଦରୂପେ ଯେଉଁ ସ୍ଥିତି ହୁଏ ଅର୍ଥାତ୍ ବ୍ରହ୍ମରେ ସ୍ଥିତ ରହି ପ୍ରକୃତିଦ୍ୱାରା ହେଉଥିବା କାର୍ଯ୍ୟଗୁଡ଼ିକୁ ପ୍ରକୃତିର ବିସ୍ତାର ଓ ମାୟାମାତ୍ର ମନେକରି ବାସ୍ତବରେ କେବଳ ସଚ୍ଚିଦାନନ୍ଦଘନବ୍ରହ୍ମଙ୍କ ଅତିରିକ୍ତ ଅନ୍ୟ କିଛି ମଧ୍ୟ ନାହିଁ, ଏପରି ନିଶ୍ଚୟ କରିବା ଦ୍ୱାରା ଯେଉଁ ଅଭେଦ-ସ୍ଥିତି ହୁଏ, ତାହାକୁ ସାଂଖ୍ୟନିଷ୍ଠା କୁହାଯାଏ।

୩୦- ସମ୍ପୂର୍ଣ୍ଣ ପଦାର୍ଥଗୁଡ଼ିକୁ ମୃଗତୃଷ୍ଣାର ଜଳ ସଦୃଶ କିମ୍ବା ସ୍ୱପ୍ନସୃଷ୍ଟିସଦୃଶ

ମାୟାମୟ ହେବାରୁ ମାୟାର କାର୍ଯ୍ୟରୂପ ସମସ୍ତ ଗୁଣ ଗୁଣୀଠାରେ ଅବସ୍ଥାନ କରେ, ଏହିପ୍ରକାର ମନେ କରି ମନ-ଇନ୍ଦ୍ରିୟ ଏବଂ ଶରୀରଦ୍ୱାରା ହେଉଥିବା ସମସ୍ତ କାର୍ଯ୍ୟଗୁଡ଼ିକରେ କର୍ତ୍ତାପଣିଆର ଅଭିମାନରୁ ରହିତ ହେବା (୫।୮-୯) ତଥା ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଏକଲୟରେ ସ୍ଥିତ ରହି କେବଳ ସଚ୍ଚିଦାନନ୍ଦଘନ ବାସୁଦେବଙ୍କ ବ୍ୟତୀତ ଅନ୍ୟ କାହାର ଅସ୍ତିତ୍ୱ ଭାବ ନ ରଖିବା (୧୩।୩୦), ଏହାକୁ ହିଁ "ସାଂଖ୍ୟନିଷ୍ଠା" କହନ୍ତି। "ଜ୍ଞାନଯୋଗ" ଅଥବା "କର୍ମସଂନ୍ୟାସ" ମଧ୍ୟ ଏହାର ନାମ ଅଟେ।

୩୧- ଜ୍ଞାନଯୋଗର ଗୌଣ ଭେଦ ଅନେକଗୁଡିଏ ହୋଇଥିଲେ ମଧ୍ୟ ସେଗୁଡ଼ିକୁ ମୁଖ୍ୟତଃ ଚ୍ରରିଟି ବିଭାଗରେ ବଣ୍ଟା ଯାଇପାରେ :—

୧. ଯାହା କିଛି ଅଛି, ତାହା ସବୁ ବ୍ରହ୍ମ ହିଁ ଅଟେ।

୨. ଯାହା କିଛି ଦୃଶ୍ୟ, ତାହା ମାୟାମୟ ଅଟେ। ବାସ୍ତବରେ କେବଳ ସଚ୍ଚିଦାନନ୍ଦଘନ ବ୍ରହ୍ମ ବ୍ୟତୀତ ଆଉ ଅନ୍ୟ କିଛି ନାହିଁ।

୩. ଯାହା କିଛି ପ୍ରତୀତ ହୁଏ, ତାହା ସବୁ ହିଁ ମୋର ସ୍ୱରୂପ ଅଟେ—ମୁଁ କେବଳ ଅଛି।

୪. ଯାହା କିଛି ପ୍ରତୀୟମାନ ହୁଏ, ତାହା ମାୟାମୟ ଅଟେ। ଅନିତ୍ୟ ଅଟେ। ବାସ୍ତବରେ କିଛି ନାହିଁ, କେବଳ ଏକ ଚେତନ ଆତ୍ମା ମୁଁ ହିଁ ଅଛି।

ଏଥିରେ ପ୍ରଥମ ଦୁଇଟି ସାଧନ "ତତ୍ତ୍ୱମସି" ମହାବାକ୍ୟର "ତତ୍" ପଦରୁ ଆସିଅଛି ଓ ପରବର୍ତ୍ତୀ ଦୁଇଟି ସାଧନ "ତ୍ୱମ୍" ପଦ ଦୃଷ୍ଟିରୁ ଅଣାଯାଇଛି । ଏଗୁଡ଼ିକର ସ୍ପଷ୍ଟୀକରଣ ଏହିପରି କରାଯାଇପାରେ—

୧. ଏହି ଚରାଚର ଜଗତରେ ଯାହା କିଛି ପ୍ରତୀୟମାନ ହୁଏ, ସବୁ ହିଁ ବ୍ରହ୍ମ ଅଟେ। ଏକ ସଚ୍ଚିଦାନନ୍ଦଘନ ପରମାତ୍ମା ବ୍ୟତୀତ ଆଉ କିଛି ବସ୍ତୁ ନାହିଁ। ଯେଉଁ କର୍ମମାନ ଆମେ କରୁଁ ସେ କର୍ମ, ସେହି କର୍ମର ସାଧନ ଏବଂ ଉପକରଣ ତଥା ସ୍ୱୟଂ କର୍ତ୍ତା— ସବୁ କିଛି ବ୍ରହ୍ମ ଅଟେ (୪।୨୪)। ଯେପରି ସମୁଦ୍ରରେ ଭାସମାନ ବରଫ ଖଣ୍ଡର ଭିତରେ ତଥା ବାହାରେ କେବଳ ଜଳ ହିଁ ବ୍ୟାପ୍ତ ଅଛି ତଥା ସେହି ବରଫଖଣ୍ଡ ସ୍ୱୟଂ ଜଳରୂପ ଅଟେ, ସେହିପରି ସମସ୍ତ ଚରାଚର ପଦାର୍ଥର ବାହାରେ ଓ ଭିତରେ ଏକମାତ୍ର ପରମାତ୍ମା ହିଁ ପରିପୂର୍ଣ୍ଣ ତଥା ସେହି ସବୁ ରୂପରେ ସେ ହିଁ ବିଦ୍ୟମାନ ଅଛନ୍ତି।

୨. ଯାହା କିଛି ଦୃଶ୍ୟମାନ ଅଟେ, ତାହାକୁ ମାୟାମୟ କ୍ଷଣିକ ଏବଂ ବିନାଶଶୀଳ ମନେ କରି ସେଗୁଡିକୁ ମନ ମଧ୍ୟରୁ ଦୂର କରି ଏକମାତ୍ର ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ନାହିଁ—ଏପରି ହୃଦୟଙ୍ଗମପୂର୍ବକ ମନ ଓ ବୁଦ୍ଧିକୁ ବ୍ରହ୍ମରେ ତଦ୍ରୂପ କରିଦେବା ଏବଂ ପରମାତ୍ମାଙ୍କଠାରେ ଏକୀଭାବରେ ସ୍ଥିତ ହୋଇ ତାଙ୍କର ଅପରୋକ୍ଷ ଜ୍ଞାନ ଦ୍ୱାରା ତାଙ୍କ ସହ ଏକ ହୋଇଯିବା (୪ । ୨୫ ର ଉତ୍ତରାର୍ଦ୍ଧ, ୫ । ୧୭) ।

୩. ଚର, ଅଚର ସବୁ ବ୍ରହ୍ମ ଏବଂ ସେହି ବ୍ରହ୍ମ ମୁଁ ଅଟେ । ତେଣୁ ସବୁ ମୋର ହିଁ ସ୍ୱରୂପ—ଏହିପ୍ରକାର ବିଗ୍ଚର କରି ସମ୍ପୂର୍ଣ୍ଣ ଚରାଚର ପ୍ରାଣୀମାନଙ୍କୁ ନିଜର ଆତ୍ମା ମନେ କରି ଅର୍ଥାତ୍ ସମସ୍ତ ପଦାର୍ଥ ମଧ୍ୟରେ ନିଜ ଆତ୍ମାକୁ ଦେଖିବା ଏବଂ ନିଜ ଆତ୍ମା ମଧ୍ୟରେ ସବୁକୁ ଦେଖିବା (୬ । ୨୯) । ଏହିପରି ସାଧନାରତ ବ୍ୟକ୍ତି ଦୃଷ୍ଟିରେ ଏକ ବ୍ରହ୍ମ ବ୍ୟତୀତ ଅନ୍ୟ କିଛି ରହେ ନାହିଁ । ସେ ପୁଣି ବିଜ୍ଞାନାନନ୍ଦଘନ ସ୍ୱରୂପରେ ହିଁ ଆନନ୍ଦ ଅନୁଭବ କରେ ।

୪. ଯାହା କିଛି ସବୁ ହିଁ ମାୟାମୟ, ତିନିଗୁଣର କାର୍ଯ୍ୟରୂପ ଦୃଶ୍ୟବର୍ଗ ଅଛି, ଏଗୁଡିକୁ ଓ ଏଗୁଡ଼ିକଦ୍ୱାରା ହେଉଥିବା ସବୁ କ୍ରିୟା ନିଜଠାରୁ ପୃଥକ୍, ନାଶବାନ୍ ଏବଂ ଅନିତ୍ୟ ମନେ କରିବା ତଥା ଏସବୁର ଅତ୍ୟନ୍ତ ଅଭାବ କରି କେବଳ ଭାବରୂପ ଆତ୍ମାକୁ ହିଁ ଅନୁଭବ କରିବା (୧୩ । ୩୦) ।

ଉପର୍ଯ୍ୟୁକ୍ତ ଜ୍ଞାନଯୋଗର ଗ୍ଚରୋଟି ସାଧନ ମଧ୍ୟରୁ ପ୍ରଥମ ଦୁଇଟି ସାଧନ ବ୍ରହ୍ମ ଉପାସନାଯୁକ୍ତ ଅଟେ ଏବଂ ତୃତୀୟ ଓ ଚତୁର୍ଥ ସାଧନ ଅହଂଗ୍ରହ-ଉପାସନାଯୁକ୍ତ ଅଟେ ।

୩୨- ମାୟାରୁ ଉତ୍ପନ୍ନ ସମସ୍ତଗୁଣ ଗୁଣରେ ହିଁ ରହିଯାଏ, ଏହିପରି ସାଂଖ୍ୟଯୋଗୀ ହୃଦୟଙ୍ଗମ କରି ଇନ୍ଦ୍ରିୟ ଓ ଶରୀରଦ୍ୱାରା ସମ୍ପାଦିତ ସମସ୍ତ କର୍ମରେ କର୍ତ୍ତାପଣ ଅଭିମାନରୁ ରହିତ ହୋଇ କେବଳ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଅନନ୍ୟଭାବରେ ନିରନ୍ତର ସ୍ଥିତ ରହେ । (ଗୀତା ୩ । ୨୮; ୫ । ୮-୯, ୧୩; ୬ । ୩୧; ୧୩ । ୨୯-୩୦; ୧୪ । ୧୯-୨୦; ୧୮ । ୧୭, ୪୯-୫୫) ।

୩୩- ସଚ୍ଚିଦାନନ୍ଦ ପରମାତ୍ମାଙ୍କଠାରେ ଅଭେଦରୂପରେ ସ୍ଥିତ ହୋଇ, ବ୍ୟବହାର ସମୟରେ ସମ୍ପୂର୍ଣ୍ଣ ଦୃଶ୍ୟକୁ "ଗୁଣହିଁ ଗୁଣରେ ରୂପାୟିତ ହେଉ ଅଛି" ଅର୍ଥାତ୍ ଇନ୍ଦ୍ରିୟମାନେ ସ୍ୱ ସ୍ୱ ଅର୍ଥରେ କ୍ରିୟାରତ ଅଛନ୍ତି—ଏପରି ମନେ କରି ସେହି ସବୁ ପଦାର୍ଥକୁ ମୃଗତୃଷ୍ଣାର ଜଳ ବା ସ୍ୱପ୍ନ ପରି ଅଳୀକରୂପେ ହୃଦୟଙ୍ଗମ କରିବା ଉଚିତ।

୩୪- ଏହି ସଂସାର ସ୍ୱପ୍ନ ଅଟେ। ଏହା ଦୃଢ଼ୀଭୂତ ହେବା ଉଚିତ। ତାହା ସତ୍ୟପରି ପ୍ରତୀୟମାନ ହେଲେ ହେଁ ତାହାକୁ ସ୍ୱପ୍ନବତ୍ ମନେ କର। ଏହିପରି ଅଭ୍ୟାସ କରୁଁ କରୁଁ ସ୍ୱପ୍ନ ଦିନେ ନାଶ ହେବ ଓ ସତ୍ୟବସ୍ତୁ ପ୍ରାପ୍ତ ହେବ।

୩୫- ନିଜର ପ୍ରାଣ ସମସ୍ତଙ୍କୁ ସବୁଠାରୁ ଅଧିକ ପ୍ରିୟ। ପ୍ରାଣପରି ପ୍ରିୟ ଆଉ କିଛି ନାହିଁ। ପ୍ରିୟରୁ ପ୍ରିୟ ପଦାର୍ଥ ନିଶ୍ଚିତରୂପେ ମନେ ରହିବ। ତେଣୁ ପ୍ରାଣ ମଧ୍ୟରେ ବ୍ରହ୍ମର ଭାବନା କର। ପ୍ରାଣ ହିଁ ବ୍ରହ୍ମ ଅଟେ—ଏହିପରି ଦୃଢ଼ ଭାବନା କଲେ ପରମାତ୍ମାଙ୍କ ପ୍ରାପ୍ତି ହୋଇଯାଏ।

୩୬- ସବୁ ପଦାର୍ଥକୁ ସମଦୃଷ୍ଟିରେ ଦେଖ। ସେମାନଙ୍କ ମଧ୍ୟରୁ ଭେଦଭାବ ଉଠାଇ ଦିଅ। କୌଣସି ବସ୍ତୁରେ ଭେଦଭାବ ରଖ ନାହିଁ। ଯେପରି ଶରୀରରେ ଆତ୍ମୀୟତା ଅଛି, ଭେଦ ନାହିଁ, ଅଙ୍ଗଗୁଡିକ ମଧ୍ୟରେ ପାର୍ଥକ୍ୟ ନାହିଁ, ସେହିପରି ଗୋଟିଏ ପଦାର୍ଥ ଅନ୍ୟ ପଦାର୍ଥଠାରୁ ଭିନ୍ନ ନୁହେଁ। ଏହି ଭେଦଭାବ ଉଠାଇ ଦେଲେ ମଧ୍ୟ କଲ୍ୟାଣ ହୋଇଯିବ।

୩୭- ବ୍ରହ୍ମ ନିତ୍ୟପ୍ରାପ୍ତ ହେଲେ ହେଁ ଭ୍ରମବଶତଃ ପୁରୁଷ ଯେଉଁ ଅପ୍ରାପ୍ତି ଅନୁଭବ କରେ, ତାହା ଦୂର କରିଦେବା ହିଁ ଆମର କର୍ତ୍ତବ୍ୟ ଅଟେ।

୩୮- ଗୀତାର ସଂନ୍ୟାସ ସଂନ୍ୟାସ-ଆଶ୍ରମ ନୁହେଁ, ସମ୍ପୂର୍ଣ୍ଣ କର୍ମଗୁଡିକରେ କର୍ତ୍ତାପଣ ଅଭିମାନରୁ ରହିତ ହୋଇ ଏକ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାରେ ଐକ୍ୟଭାବରେ ନିତ୍ୟ ସ୍ଥିତ ରହିବା ହିଁ ସଂନ୍ୟାସ ଏବଂ ଏହାର ଉପଯୋଗ ସବୁ ବର୍ଣ୍ଣ ଓ ଆଶ୍ରମରେ କରା ଯାଇପାରେ। ଏହାର ନାମ ଜ୍ଞାନଯୋଗ ଅଟେ। ଏହାକୁ ସାଂଖ୍ୟଯୋଗ କହନ୍ତି ଏବଂ ଏହାହିଁ ଗୀତାର ସଂନ୍ୟାସ ଅଟେ।

୩୯- ସମ୍ୟକ୍ ଜ୍ଞାନପୂର୍ବକ ସଂନ୍ୟାସ-ଆଶ୍ରମଦ୍ୱାରା ସହଜରେ ମୁକ୍ତି ହୁଏ, ଏଥିରେ କୌଣସି ସନ୍ଦେହ ନାହିଁ। କିନ୍ତୁ ମୋ ମତରେ ଏହି ମୁକ୍ତି ସଂନ୍ୟାସ-ଆଶ୍ରମ ହେତୁ ହୁଏ ନାହିଁ, ଏହା ହୁଏ ସମ୍ୟକ୍ ଜ୍ଞାନ ହେତୁ, ଯାହାକି ସମସ୍ତ ବର୍ଣ୍ଣ ଓ ଆଶ୍ରମରେ ଉପଲବ୍ଧ ହୋଇପାରେ। ତାହା ଯୋଗୁଁ ମୁକ୍ତିଲାଭ ହୁଏ (ଗୀତା ୬।୧-୨)।

୪୦- ବୈରାଗ୍ୟରହିତ ଓ ଉପରାମତାରହିତ ଜ୍ଞାନ ବାସ୍ତବରେ ଜ୍ଞାନ

ନୁହେଁ। ତାହା କେବଳ ବାଚିକ ଓ ଶାସ୍ତ୍ରୀୟ ଜ୍ଞାନ ଅଟେ, ଯାହାର ଫଳ ମୁକ୍ତି ନୁହେଁ, ବରଂ କଠିନ ବନ୍ଧନ ଅଟେ।

୪୧- ବାଚିକ ଜ୍ଞାନୀ ନିର୍ଭୟ ହୋଇ ବିଷୟଭୋଗରେ ପ୍ରବୃତ୍ତ ହୋଇଯାଏ, ସେ ପାପକୁ ପାପ ମଣେ ନାହିଁ। ଏହାଦ୍ୱାରା ସେ ବିଷୟରୂପୀ ପଙ୍କରେ ପଶି ଅଧୋଗତି ପ୍ରାପ୍ତ ହୁଏ।

୪୨- ଯେପର୍ଯ୍ୟନ୍ତ ଅନ୍ତଃକରଣ ମଳିନ ରହେ, ସେପର୍ଯ୍ୟନ୍ତ ଦେହାଭିମାନ ରହେ ଏବଂ ଦେହାଭିମାନୀଦ୍ୱାରା ଜ୍ଞାନଯୋଗର ସାଧନା ଅତ୍ୟନ୍ତ ଦୁଷ୍କର ହୁଏ।



# କର୍ମଯୋଗ

୧- ନିଷ୍କାମ କର୍ମଯୋଗରୂପ ଧର୍ମର ସାମାନ୍ୟ ସାଧନ ଜନ୍ମ-ମୃତ୍ୟୁରୂପ ମହାନ୍ ଭୟରୁ ଉଦ୍ଧାର କରି ଦିଏ।

୨- ନିଷ୍କାମଭାବରେ କରାଯାଇଥିବା ଅଳ୍ପକର୍ମ ମଧ୍ୟ ମୁକ୍ତିର କାରଣ ହୋଇପାରେ।

୩- ନିଷ୍କାମଭାବରେ କରାଯାଇଥିବା ଆଚରଣ ଅମୃତସ୍ୱରୂପ ସ୍ୱୀକାର କରାଯାଇଅଛି।

୪- ଭଗବଦ୍‌ଗୀତା ଯୋଗନିଷ୍ଠାକୁ ମୋକ୍ଷର ସ୍ୱତନ୍ତ୍ର ଉପାୟ ରୂପେ ଗ୍ରହଣ କରେ ଏବଂ ଏହାକୁ ଜ୍ଞାନନିଷ୍ଠାର ସହାୟକରୂପେ ସ୍ୱୀକାର କରେ।

୫- ଗୀତାରେ ସକାମଭାବ ଅପେକ୍ଷା ନିଷ୍କାମଭାବକୁ ଯଥେଷ୍ଟ ଅଧିକ ମହତ୍ତ୍ୱ ଦିଆଯାଇଅଛି ଏବଂ ଭଗବତ୍‌ପ୍ରାପ୍ତିରେ ତାହା ସହାୟକରୂପେ କୁହାଯାଇଅଛି।

୬- ଫଳ ଓ ଆସକ୍ତି ତ୍ୟାଗ କରି ଭଗବାନ୍‌ଙ୍କ ଆଜ୍ଞାନୁସାରେ କେବଳ ଭଗବଦର୍ଥ ସମତ୍ୱ ବୁଦ୍ଧିରେ ଶାସ୍ତ୍ରବିହିତ କର୍ତ୍ତବ୍ୟ କର୍ମଗୁଡିକ କରିବା ହିଁ ନିଷ୍କାମ କର୍ମଯୋଗର ସ୍ୱରୂପ ଅଟେ।

୭- ସବୁକିଛି ଭଗବାନ୍‌ଙ୍କର ମନେ କରି, ସିଦ୍ଧି-ଅସିଦ୍ଧିରେ ସମଭାବ ରଖି, ଆସକ୍ତି ଏବଂ ଫଳର କାମନା ତ୍ୟାଗ କରି ଭଗବାନ୍‌ଙ୍କ ଆଜ୍ଞା ଅନୁଯାୟୀ ସମସ୍ତ କର୍ମ ସମ୍ପାଦନ କରିବା (୨।୪୭ ରୁ ୫୧) କିମ୍ବା ଶ୍ରଦ୍ଧା ଓ ଭକ୍ତିପୂର୍ବକ ମନ, ବଚନ ଓ ଶରୀରଦ୍ୱାରା ଭଗବାନ୍‌ଙ୍କ ଶରଣାଗତ ହୋଇ ନାମ, ଗୁଣ ଏବଂ ପ୍ରଭାବ ସହିତ ତାଙ୍କର ସ୍ୱରୂପ ନିରନ୍ତର ଚିନ୍ତନ କରିବା (୬।୪୭)। ଏହା ହିଁ "ଯୋଗନିଷ୍ଠା" ଅଟେ। ଏହାକୁ ଭଗବାନ୍ ସମତ୍ୱଯୋଗ, ବୁଦ୍ଧିଯୋଗ,

ତଦର୍ଥକର୍ମ, ମଦର୍ଥକର୍ମ ଏବଂ ସାତ୍ତ୍ୱିକ ତ୍ୟାଗ ଆଦି ନାମରେ ଉଲ୍ଲେଖ କରି ଅଛନ୍ତି।

୮- ଯୋଗନିଷ୍ଠାରେ ମଧ୍ୟ ତିନୋଟି ମୁଖ୍ୟ ପ୍ରଭେଦ ଅଛି—

୧. କେବଳ କର୍ମଯୋଗ।

୨. ଭକ୍ତିମିଶ୍ରିତ କର୍ମଯୋଗ।

୩. ଭକ୍ତିପ୍ରଧାନ କର୍ମଯୋଗ।

(୧) କେବଳ କର୍ମଯୋଗ ଉପଦେଶରେ କେତେକ ସ୍ଥାନରେ ଭଗବାନ୍ କେବଳ ଫଳତ୍ୟାଗ ସମ୍ବନ୍ଧରେ କହିଛନ୍ତି (୫।୧୨; ୬।୧; ୧୨।୧୧; ୧୮।୧୧)। କେତେକ କ୍ଷେତ୍ରରେ ଆସକ୍ତି ତ୍ୟାଗ ସମ୍ବନ୍ଧରେ କହିଛନ୍ତି (୩।୧୯; ୬।୪) ଏବଂ ଆଉ କେତେକ କ୍ଷେତ୍ରରେ ଫଳ ଓ ଆସକ୍ତି ଉଭୟ ତ୍ୟାଗ ସମ୍ବନ୍ଧରେ କହିଅଛନ୍ତି (୨।୪୭, ୪୮; ୧୮।୬, ୯)। ଯେଉଁଠାରେ କେବଳ ଫଳତ୍ୟାଗ ସମ୍ବନ୍ଧରେ କୁହାଯାଇଅଛି, ସେଠାରେ ଆସକ୍ତି ତ୍ୟାଗ ଏବଂ ଯେଉଁଠାରେ ଆସକ୍ତି ତ୍ୟାଗ ସମ୍ବନ୍ଧରେ କୁହାଯାଇଛି, ସେଠାରେ ଫଳତ୍ୟାଗ କଥା କୁହାଯାଇଅଛି। ତାହା ଉପରୁ ଗ୍ରହଣ କରିବାକୁ ହେବ। କର୍ମଯୋଗର ସାଧନ ବାସ୍ତବରେ ଫଳ ଓ ଆସକ୍ତି ଉଭୟକୁ ତ୍ୟାଗକଲେ ପୂର୍ଣ୍ଣ ହୁଏ।

(୨) ଭକ୍ତିମିଶ୍ରିତ କର୍ମଯୋଗ—ଏଥିରେ ସମଗ୍ର ସଂସାରରେ ପରମେଶ୍ୱରଙ୍କୁ ପରିବ୍ୟାପ୍ତ ମନେ କରି ନିଜ ନିଜର ବର୍ଣ୍ଣୋଚିତ କର୍ମଦ୍ୱାରା ଭଗବାନ୍‌ଙ୍କର ପୂଜା କରିବା ପାଇଁ କୁହାଯାଇଛି (୧୮।୪୬)। ଏଣୁ ଏହାକୁ ଭକ୍ତିମିଶ୍ରିତ କର୍ମଯୋଗ କୁହାଯାଏ।

**(୩) ଭକ୍ତିପ୍ରଧାନ କର୍ମଯୋଗ—**

ଏହାର ଦୁଇଟି ଅବାନ୍ତର ପାର୍ଥକ୍ୟ ଅଛି—

**(କ) "ଭଗବଦର୍ପଣ" କର୍ମ।**

**(ଖ) "ଭଗବଦର୍ଥ" କର୍ମ।**

ଭଗବଦର୍ପଣ କର୍ମ ମଧ୍ୟ ଦୁଇଟି ଉପାୟରେ କରାଯାଏ। ପୂର୍ଣ୍ଣ "ଭଗବଦର୍ପଣ"ରେ ସମସ୍ତ କର୍ମ ପ୍ରତି ମମତା, ଆସକ୍ତି ଏବଂ ଫଳଇଚ୍ଛା ତ୍ୟାଗ କରି ସବୁକୁ ଭଗବାନ୍‌ଙ୍କର ମନେ କରି, ମୁଁ ଭଗବାନ୍‌ଙ୍କର ଏବଂ ମୋଦ୍ୱାରା ହେଉଥିବା କର୍ମଗୁଡ଼ିକ ମଧ୍ୟ ଭଗବାନ୍‌ଙ୍କର, ଭଗବାନ୍ ମୋଦ୍ୱାରା କାଠ କଣ୍ଢେଇପରି ସବୁ କିଛି କରାଉଅଛନ୍ତି—ଏହିପରି ଭାବି ଭଗବାନ୍‌ଙ୍କ ଆଜ୍ଞାନୁସାରେ ଭଗବାନ୍‌ଙ୍କର ପ୍ରସନ୍ନତା ପାଇଁ ଶାସ୍ତ୍ରବିହିତ କର୍ମ କରାଯାଏ (୩।୩୦; ୧୨।୬; ୧୮।୫୭, ୬୬)।

ଏହା ବ୍ୟତୀତ ପ୍ରଥମେ କୌଣସି ଉଦ୍ଦେଶ୍ୟ ନେଇ କରାଯାଇଥିବା କର୍ମକୁ ପରେ ଭଗବାନ୍‌ଙ୍କୁ ଅର୍ପଣ କରି ଦେବା, କର୍ମ କରୁଥିବା ମଧ୍ୟରେ ହିଁ ତାହାକୁ ଭଗବାନ୍‌ଙ୍କୁ ଅର୍ପଣ କରି ଦେବା, କର୍ମ ସମାପ୍ତ ହେବା ମାତ୍ରେ ହିଁ ତାହାକୁ ଭଗବାନ୍‌ଙ୍କୁ ଅର୍ପଣ କରି ଦେବା ଅଥବା କର୍ମଗୁଡ଼ିକର ଫଳଗୁଡିକୁ ଭଗବାନ୍‌ଙ୍କୁ ଅର୍ପଣ କରିଦେବା ମଧ୍ୟ **"ଭଗବଦର୍ପଣ"**ର ପ୍ରକାର ଅଟେ, ଯଦ୍ୟପି ଏହା ଭଗବଦର୍ପଣର ପ୍ରାରମ୍ଭିକ ପାବଚ୍ଛ ଅଟେ। ଏହିପରି କରୁଁ କରୁଁ ଉପର୍ଯ୍ୟୁକ୍ତ ପୂର୍ଣ୍ଣ ଭଗବଦର୍ପଣର ଅଭ୍ୟାସ ହୁଏ।

**"ଭଗବଦର୍ଥ" କର୍ମ ମଧ୍ୟ ଦୁଇ ପ୍ରକାର ଅଟେ—**

ଭଗବାନ୍‌ଙ୍କ ମୂର୍ତ୍ତିର ଅର୍ଚ୍ଚନ ଓ ଭଜନ-ଧ୍ୟାନ ଆଦି ଉପାସନାରୂପ କର୍ମ, ଯାହାକି ଭଗବାନ୍‌ଙ୍କ ପାଇଁ କରାଯାଏ ଏବଂ ଯାହା ପ୍ରତ୍ୟକ୍ଷରୂପେ ଭଗବତ୍ ସମ୍ବନ୍ଧୀୟ ଅଟେ, ତାହାକୁ **"ଭଗବଦର୍ଥ"** କର୍ମ କୁହାଯାଏ।

ଏହା ବ୍ୟତୀତ ଯେଉଁ ଶାସ୍ତ୍ରବିହିତ କର୍ମ ଭଗବତ୍‌ପ୍ରାପ୍ତି, ଭଗବତ୍‌ପ୍ରେମ ଅଥବା ଭଗବାନ୍‌ଙ୍କ ପ୍ରସନ୍ନତା ନିମନ୍ତେ ଭଗବତ୍-ଆଜ୍ଞାନୁସାରେ କରାଯାଏ, ତାହା ମଧ୍ୟ **"ଭଗବଦର୍ଥ"** କର୍ମ ଅନ୍ତର୍ଗତ । ଏହି ଉଭୟ ପ୍ରକାରର କର୍ମକୁ ଭଗବଦ୍‌ଗୀତାରେ **"ମତ୍‌କର୍ମ"** ଏବଂ **"ମଦର୍ଥକର୍ମ"** ନାମରେ ଉଲ୍ଲେଖ କରାଯାଇଅଛି (୧୧।୫୫; ୧୨।୧୦)।

ଯାହାକୁ ଅନନ୍ୟଭକ୍ତି ବା ଭକ୍ତିଯୋଗ କୁହାଯାଇଛି (୮।୧୪, ୨୨; ୯।୧୩, ୧୪, ୨୨, ୩୦, ୩୪; ୧୦।୯; ୧୩।୧୦; ୧୪।୨୬), ତାହା ମଧ୍ୟ **"ଭଗବଦର୍ପଣ"** ଏବଂ **"ଭଗବଦର୍ଥ"** ଏହି ଉଭୟ କର୍ମରେ ହିଁ ସମ୍ମିଳିତ ଅଛି। ଏ ସବୁର ଫଳ କେବଳ ଭଗବତ୍‌ପ୍ରାପ୍ତି ଅଟେ।

**(୧) ନିଷିଦ୍ଧ କର୍ମଗୁଡିକର ସର୍ବାଦୌ ତ୍ୟାଗ**—ଚୋରୀ, ବ୍ୟଭିଚାର, ମିଥ୍ୟା, କପଟ, ଛଳ, ଜବରଦସ୍ତି, ହିଂସା, ଅଭକ୍ଷ୍ୟଭୋଜନ ଏବଂ ପ୍ରମାଦ ଆଦି ଶାସ୍ତ୍ରବିରୁଦ୍ଧ ନୀଚ କର୍ମଗୁଡ଼ିକୁ କାୟ, ମନ ଏବଂ ବାକ୍ୟରେ ନ କରିବା—ଏହା ପ୍ରଥମଶ୍ରେଣୀର ତ୍ୟାଗ ଅଟେ।

**(୨) କାମ୍ୟ କର୍ମଗୁଡ଼ିକର ତ୍ୟାଗ**—ସ୍ତ୍ରୀ, ପୁତ୍ର ଏବଂ ଧନ ଆଦି ପ୍ରିୟ ବସ୍ତୁଗୁଡିକର ପ୍ରାପ୍ତି ଏବଂ ରୋଗ-ସଙ୍କଟ ଆଦିର ମୋଚନପାଇଁ କରାଯାଉଥିବା ଯଜ୍ଞ, ଦାନ, ତପ ଏବଂ ଉପାସନା ଆଦି ସକାମ କର୍ମଗୁଡିକୁ ନିଜ ସ୍ୱାର୍ଥପାଇଁ ନ କରିବା—ଏହା ଦ୍ୱିତୀୟ ଶ୍ରେଣୀର ତ୍ୟାଗ ଅଟେ।

**(୩) ତୃଷ୍ଣାର ସର୍ବଥା ତ୍ୟାଗ**—ମାନ, ବଡିମା, ପ୍ରତିଷ୍ଠା ଏବଂ ସ୍ତ୍ରୀ, ପୁତ୍ର

ଏବଂ ଧନାଦି ଯାହା କିଛି ଅନିତ୍ୟ ପଦାର୍ଥ ପ୍ରାରବ୍ଧ ଅନୁସାରେ ମିଳିଅଛି, ତାହାର ବୃଦ୍ଧିର କାମନା ଭଗବତ୍‌ପ୍ରାପ୍ତିର ବାଧକ ମନେ କରି ତାହାକୁ ତ୍ୟାଗ କରିବା—ଏହା ତୃତୀୟ ଶ୍ରେଣୀର ତ୍ୟାଗ ଅଟେ ।

**(୪) ସ୍ୱାର୍ଥନିମିତ୍ତ ଅନ୍ୟଠାରୁ ସେବା ନେବାର ତ୍ୟାଗ**—ନିଜର ସୁଖପାଇଁ କାହାଠାରୁ ଧନ ନେବା ବା ସେବା କରାଇବାର ପ୍ରାର୍ଥନା ଏବଂ ବିନା ପ୍ରାର୍ଥନାରେ ଦିଆଯାଇଥିବା ପଦାର୍ଥଗୁଡ଼ିକୁ ବା କରାଯାଇଥିବା ସେବାକୁ ସ୍ୱୀକାର କରିବା ତଥା କୌଣସି ପ୍ରକାରେ କାହାରିଦ୍ୱାରା ନିଜର ସ୍ୱାର୍ଥସିଦ୍ଧି ନିମିତ୍ତ ମନରେ ଇଚ୍ଛା ରଖିବା ଇତ୍ୟାଦି ଯେଉଁ ସ୍ୱାର୍ଥପାଇଁ ଅନ୍ୟଦ୍ୱାରା ସେବା କରାଇବା ଭାବ ଅଛି, ସେହି ସବୁକୁ ତ୍ୟାଗ କରିବା ଚତୁର୍ଥଶ୍ରେଣୀର ତ୍ୟାଗ ଅଟେ ।

**(୫) କର୍ତ୍ତବ୍ୟରେ ଆଳସ୍ୟ ଏବଂ ଫଳକାମନାର ତ୍ୟାଗ**—ଈଶ୍ୱର ଭକ୍ତି, ଦେବପୂଜନ, ମାତା-ପିତାଦି ଗୁରୁଜନମାନଙ୍କ ସେବା, ଯଜ୍ଞ, ଦାନ, ତପ ଓ ବର୍ଣ୍ଣାଶ୍ରମ ଅନୁଯାୟୀ ଜୀବିକା ଅର୍ଜନଦ୍ୱାରା ପରିବାର ପୋଷଣ କରିବା ଏବଂ ଶରୀର ସମ୍ବନ୍ଧୀୟ ଖାଇବା-ପିଇବା ଆଦି ସବୁପ୍ରକାର କର୍ତ୍ତବ୍ୟକର୍ମରେ ଆଳସ୍ୟ ଓ ସମସ୍ତ ପ୍ରକାର କାମନା ତ୍ୟାଗ କରିବା ।

**(୬) ସଂସାରର ସବୁ ପଦାର୍ଥ ଓ କର୍ମରେ ମମତା ଓ ଆସକ୍ତିର ସର୍ବଥା ତ୍ୟାଗ**—ଧନ, ଗୃହ, ବସ୍ତ୍ରାଦି ସମସ୍ତ ବସ୍ତୁ ତଥା ସ୍ତ୍ରୀ, ପୁତ୍ର ଓ ମିତ୍ରାଦି ସମସ୍ତ ବାନ୍ଧବଜନ ଏବଂ ମାନ, ବଡିମା ଏବଂ ପ୍ରତିଷ୍ଠା ଇହ ଓ ପରଲୋକରେ ଥିବା ବିଷୟଭୋଗ୍ୟ ପଦାର୍ଥ ଏହି ସବୁକୁ କ୍ଷଣଭଙ୍ଗୁର ଓ ଅନିତ୍ୟ ମନେ କରି ସେଥିରେ ମମତା ଓ ଆସକ୍ତି ନ ରଖିବା ତଥା କେବଳ ଏକ ପରମାତ୍ମାରେ ହିଁ ଅନନ୍ୟଭାବରେ ବିଶୁଦ୍ଧ ପ୍ରେମ ହେବାରୁ ତଥା ଶରୀର, ମନ ଓ ବାକ୍ୟଦ୍ୱାରା କରାଯାଉଥିବା ସମସ୍ତ କର୍ମରେ ତଥା ଶରୀରରେ ମମତା ଓ ଆସକ୍ତିର ସର୍ବଥା ଅଭାବ ହୋଇଯିବା—ଏହା ଷଷ୍ଠ ଶ୍ରେଣୀର ତ୍ୟାଗ ଅଟେ ।

ଏହି ଷଷ୍ଠ ଶ୍ରେଣୀର ତ୍ୟାଗ ପ୍ରାପ୍ତ କରିଥିବା ପୁରୁଷ ସଂସାରରେ ସମଗ୍ର ପଦାର୍ଥରେ ବୈରାଗ୍ୟ ଲାଭ କରି କେବଳ ଏକ ପରମ ପ୍ରେମମୟ ଭଗବାନ୍‌ଙ୍କଠାରେ ଅନନ୍ୟ ପ୍ରେମରେ ଆବଦ୍ଧ ହୋଇଯାଏ । ତେଣୁ ଭଗବାନ୍‌ଙ୍କ ଗୁଣ, ପ୍ରଭାବ ଓ ରହସ୍ୟରେ ପୂର୍ଣ୍ଣ ବିଶୁଦ୍ଧ ପ୍ରେମ ସମ୍ବନ୍ଧୀୟ ଗାଥାଗୁଡିକର ଶ୍ରବଣ, କଥନ, ମନନ ତଥା ଏକାନ୍ତରେ ନିରନ୍ତର ଭଗବାନ୍‌ଙ୍କର ଭଜନ, ଧ୍ୟାନ ଓ ଶାସ୍ତ୍ରଗୁଡିକର ମର୍ମର ବିଚାର କରିବା ତାକୁ ଅତ୍ୟନ୍ତ ପ୍ରିୟ ଲାଗେ । ବିଷୟାସକ୍ତ ମନୁଷ୍ୟମାନଙ୍କ ମଧ୍ୟରେ ରହି ହାସ୍ୟ, ବିଳାସ, ପ୍ରମାଦ, ନିନ୍ଦା,

ବିଷୟ, ରୋଗ ଏବଂ ବ୍ୟର୍ଥବାର୍ତ୍ତାଳାପରେ ନିଜର ଅମୂଲ୍ୟ ସମୟର ଏକ ମୁହୂର୍ତ୍ତ ବି ନଷ୍ଟ କରିବାକୁ ତାକୁ ଭଲ ଲାଗେ ନାହିଁ। ତାହାଦ୍ୱାରା ସମସ୍ତ କର୍ମ ଭଗବତ୍ସ୍ୱରୂପ ଓ ନାମରେ ନିମଜ୍ଜିତ ରହି ବିନା ଆସକ୍ତିରେ କେବଳ ଭଗବଦର୍ଥ ହୁଏ।

କର୍ମଯୋଗ ସାଧନ କରିବାଦ୍ୱାରା ସାଧକ ପରମାତ୍ମାଙ୍କ କୃପାରୁ ତାଙ୍କର ସ୍ୱରୂପ ତତ୍ତ୍ୱତଃ ଜାଣି ଅବିନାଶୀ ପରମପଦ ପାଇଯାଏ (୧୮।୫୬)।

କିନ୍ତୁ ଯଦି କେହି ସାଂଖ୍ୟଯୋଗଦ୍ୱାରା ପରମପଦ ପାଇବାକୁ ଚାହେଁ, ତେବେ ତାହାଦ୍ୱାରା ଉପର୍ଯ୍ୟୁକ୍ତ ସାଧନ କରିବା ପରେ ନିମ୍ନଲିଖିତ ସପ୍ତମ ପ୍ରଣାଳୀ ଅନୁସାରେ ସାଂଖ୍ୟଯୋଗର ସାଧନ କରିବା ଉଚିତ।

**(୭) ସଂସାର, ଶରୀର ଓ କର୍ମସମୂହରେ ସୂକ୍ଷ୍ମ ବାସନା ଏବଂ ଅହଂଭାବ ସର୍ବଥା ତ୍ୟାଗ**—ସଂସାରର ସମସ୍ତ ପଦାର୍ଥ ମାୟାଜନିତ ହୋଇଥିବାରୁ ସେଗୁଡ଼ିକ ସର୍ବଦା ଅନିତ୍ୟ ଅଟେ। କେବଳ ସଚ୍ଚିଦାନନ୍ଦଘନ ହିଁ ସର୍ବତ୍ର ସମଭାବରେ ପରିବ୍ୟାପ୍ତ—ଏହିପରି ଦୃଢ଼ନିଶ୍ଚୟ ହୋଇ ଶରୀର ସମେତ ସଂସାରର ସମଗ୍ର ପଦାର୍ଥ ଓ କର୍ମରେ ସୂକ୍ଷ୍ମ ବାସନାର ସର୍ବଥା ଅଭାବ ହୋଇଯିବା ଅର୍ଥାତ୍ ଅନ୍ତଃକରଣରେ ସେମାନଙ୍କର ଚିତ୍ରାଦି ସଂସ୍କାର ରୂପରେ ମଧ୍ୟ ନ ରହିବା ଏବଂ ଶରୀରରେ ଅହଂଭାବର ଅଭାବ ହୋଇଯିବା, ମନ, ବାଣୀ ଓ ଶରୀର ଦ୍ୱାରା ହେଉଥିବା ସମୁଦାୟ କାର୍ଯ୍ୟରେ କର୍ତ୍ତାପଣର ଅଭିମାନ ଲେଶମାତ୍ର ନ ରହିବା, ତଥା ଏହିପ୍ରକାର ଶରୀରସହିତ ସମସ୍ତ ପଦାର୍ଥ ଓ କର୍ମରେ ବାସନା ଓ ଅହଂଭାବର ଅତ୍ୟନ୍ତ ଅଭାବ ହୋଇ କେବଳ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଏକନିଷ୍ଠଭାବରେ ନିତ୍ୟ ନିରନ୍ତର ଦୃଢସ୍ଥିତି ରହିବା। ଏହା ସପ୍ତମ ଶ୍ରେଣୀର ତ୍ୟାଗ ଅଟେ।

ଏହି ପ୍ରକାର ସାଧନା କଲେ ସେହି ପୁରୁଷ ତତ୍କାଳ ହିଁ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ଅନାୟାସରେ ପ୍ରାପ୍ତ ହୋଇଯାଏ (୬।୨୮)। କିନ୍ତୁ ଯେଉଁ ପୁରୁଷ ଉକ୍ତ କର୍ମଯୋଗର ସାଧନା ନ କରି ଆରମ୍ଭରୁ ହିଁ ସାଂଖ୍ୟଯୋଗର ସାଧନା କରେ ସେ ପରମାତ୍ମାଙ୍କୁ କଷ୍ଟରେ ଲାଭ କରେ।

୯- ନିଷ୍କାମ କର୍ମଯୋଗୀ ନିଜର ସାଧନ ସମୟରେ କର୍ମ, କର୍ମଫଳ, ପରମାତ୍ମା ଓ ନିଜକୁ ପରସ୍ପରଠାରୁ ଭିନ୍ନ ମନେ କରି କର୍ମଫଳ ଓ ଆସକ୍ତି ତ୍ୟାଗ କରି ଈଶ୍ୱର ପରାୟଣ ହୁଏ ଏବଂ ଈଶ୍ୱରାର୍ପଣଭାବନାରେ ସକଳ କର୍ମ କରେ (ଗୀତା ୩।୩୦; ୪।୨୦; ୫।୧୦; ୯।୨୭-୨୮; ୧୨।୧୧-୧୨; ୧୮।୫୬-୫୭)।

୧୦- କର୍ମଯୋଗ ସହଜ ଅଟେ, ଏପରିକି ଦେହାଭିମାନୀ ମଧ୍ୟ ଏହାର ସାଧନା କରିପାରେ, ଏହା ହିଁ ଏହାର ବିଶେଷତ୍ୱ ଅଟେ; କିନ୍ତୁ ସାଂଖ୍ୟଯୋଗ ଅପେକ୍ଷାକୃତ କଠିନ ଅଟେ (ଗୀତା ୫ । ୬) ।

୧୧- ନିଷ୍କାମ କର୍ମଯୋଗୀ ପରମାତ୍ମପ୍ରାପ୍ତି କାମନା ପରିଣାମରେ ପରମ କଲ୍ୟାଣକାରୀ ହୋଇଥିବାରୁ ତାହାକୁ କାମନା କୁହାଯାଏ ନାହିଁ। ଭଗବତ୍ ପ୍ରାପ୍ତି କାମନାକାରୀ ପୁରୁଷକୁ ନିଷ୍କାମ ମନେ କରାଯାଏ ।

୧୨- ନିଷ୍କାମ କର୍ମଯୋଗୀ ଦୃଷ୍ଟିରେ ସଂସାରର ଯାବତୀୟ ପଦାର୍ଥ ପରମାତ୍ମାଙ୍କ ତୁଳନାରେ ଅତ୍ୟନ୍ତ ତୁଚ୍ଛ, ମଳିନ ଏବଂ କ୍ଷୁଦ୍ର ଅଟେ । ସେ ସେହି ମହାନ୍ ପରମାତ୍ମାଙ୍କ ପ୍ରାପ୍ତିରୂପ ଶୁଭେଚ୍ଛାରେ ଜଗତର ବଡରୁ ବଡ ପଦାର୍ଥକୁ ତୁଚ୍ଛ ମନେ କରେ (ଗୀତା ୨ । ୪୯) ।

୧୩- ସେହି କାର୍ଯ୍ୟଗୁଡିକ ପରମାତ୍ମପ୍ରାପ୍ତି ପାଇଁ ଅନୁକୂଳ ହୋଇପାରନ୍ତି, ଯାହା ପାଇଁ ଭଗବାନ୍ ଆଜ୍ଞା ପ୍ରଦାନ କରିଅଛନ୍ତି, ଯାହା ଶାସ୍ତ୍ରବିହିତ ଅଟେ, ଯାହା କାହାପାଇଁ କୌଣସିପ୍ରକାରେ ଅନିଷ୍ଟକାରକ ହୁଅନ୍ତି ନାହିଁ। ସେହି କର୍ମରେ ନିଷିଦ୍ଧ କର୍ମର ସମାବେଶ ଆଦୌ ହୁଏ ନାହିଁ।

୧୪- ଗୀତାର ନିଷ୍କାମ କର୍ମଯୋଗ ସର୍ବଥା ଭକ୍ତି ମିଶ୍ରିତ ଅଟେ ।

୧୫- ନିଷ୍କାମକର୍ମର ଆଚରଣ ତେବେ ଆରମ୍ଭ ହୁଏ ଯେବେଠାରୁ ସାଧକ ନିଜ ମନରେ ପରମାତ୍ମପ୍ରାପ୍ତି ପାଇଁ ଶୁଭ ଓ ଦୃଢଭାବ ପୋଷଣ କରି ସଂସାରର ଭୋଗ ପ୍ରାପ୍ତି-ଅପ୍ରାପ୍ତି, ହର୍ଷ-ଶୋକର ବିଗ୍ଚାର ପରିତ୍ୟାଗ କରି କେବଳ ଫଳାସକ୍ତି ତ୍ୟାଗ କରିଦେବାକୁ ଗ୍ଚାହେଁ।

୧୬- ଯେଉଁ କର୍ମ ଭଗବାନ୍‌ଙ୍କ ପ୍ରୀତି ବା ପ୍ରାପ୍ତିପାଇଁ କରାଯାଏ ନାହିଁ, ତାହାକୁ କର୍ମଯୋଗ କୁହାଯାଏ ନାହିଁ। ଯେତେବେଳେ କର୍ମଗୁଡିକୁ ପରମାତ୍ମାଙ୍କ ସହ ଯୋଗ କରିଦିଆଯାଏ, ତେବେ କର୍ମଯୋଗ ନାମ ସଫଳ ହୁଏ।

୧୭- କର୍ମଯୋଗ ସହ ସ୍ମରଣ-କୀର୍ତ୍ତନାଦି ଭକ୍ତି ସଂଯୁକ୍ତ ହେଲେ ଭଗବତ୍‌ପ୍ରାପ୍ତି ବହୁତ ଶୀଘ୍ର ହୁଏ, ଏଥିରେ ସନ୍ଦେହ ନାହିଁ। ସମସ୍ତ କର୍ମଯୋଗୀମାନଙ୍କ ମଧ୍ୟରେ ଏପରି ଯୋଗୀ ପୁରୁଷଙ୍କୁ ଉତ୍ତମ ସ୍ୱୀକାର କରାଯାଏ (ଗୀତା ୬ । ୪୭) ।

୧୮- ମନେକର ଜଣେ ବ୍ୟକ୍ତି କୌଣସି ଅନ୍ୟ ଉଦ୍ଦେଶ୍ୟ ନେଇ କିଛି ଧନ ସଂଗ୍ରହ କରୁଅଛନ୍ତି ଏବଂ ତାଙ୍କ ପାଖରେ ପ୍ରଥମରୁ କିଛି ଧନ ସଂଗୃହୀତ ଅଛି, ପରନ୍ତୁ ସେ ଗ୍ଚାହିଁଲେ ନିଜର ଧନ-ସଂଗ୍ରହର ପୂର୍ବ ଉଦ୍ଦେଶ୍ୟ ବଦଳାଇ ସଂଗୃହୀତ ଧନ ଅନ୍ୟ କାହାରିକୁ ମଧ୍ୟ ଅର୍ପଣ କରିପାରେ। ଧନ ସଂଗ୍ରହ

ପ୍ରକ୍ରିୟାର ପ୍ରାରମ୍ଭ, ମଧ୍ୟ ବା ଶେଷରେ ତାହା ଅର୍ପଣ କରିପାରନ୍ତି। ଏହାହିଁ ମଦର୍ପଣ କର୍ମର ସ୍ୱରୂପ ଅଟେ।

୧୯- ମଦର୍ଥ ବା ଭଗବଦର୍ଥ କର୍ମ ଆରମ୍ଭରୁ ଭଗବାନ୍‌ଙ୍କପାଇଁ କରାଯାଏ। କୌଣସି ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରସାଦ ତିଆରି କରିବା ବା ବ୍ରାହ୍ମଣର ଭୋଜନ ନିମନ୍ତେ ଭୋଜନ ସାମଗ୍ରୀ ସଂଗ୍ରହ କରିବା, ଯେପରି ଆରମ୍ଭରୁ ଏକ ନିଶ୍ଚିତ ଉଦ୍ଦେଶ୍ୟ ହୋଇଥାଏ, ସେହିପ୍ରକାର ଭଗବଦର୍ଥ କର୍ମ କରୁଥିବା ସାଧକର ପ୍ରତ୍ୟେକ କର୍ମର ଆରମ୍ଭ ଶ୍ରୀଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ହିଁ କରାଯାଏ।

୨୦- ଭଗବତ୍‌ପ୍ରାପ୍ତିପାଇଁ କରାଯାଉଥିବା କର୍ମ ହିଁ ନିଷ୍କାମ କର୍ମଯୋଗ ଅଟେ।

୨୧- ନିଷ୍କାମ କର୍ମଯୋଗୀକୁ ପରମାତ୍ମପ୍ରାପ୍ତି ପାଇଁ କର୍ତ୍ତବ୍ୟ କର୍ମ ତ୍ୟାଗ କରି ଏକାନ୍ତରେ ଭଜନ-ଧ୍ୟାନାଦି କରିବାର ଆବଶ୍ୟକତା ମଧ୍ୟ ନାହିଁ।

୨୨- ଭଜନ-ଧ୍ୟାନ ତ ସଦା-ସର୍ବଦା ପରମ ଶ୍ରେଷ୍ଠ ଅଟେ। କିନ୍ତୁ ଏକାନ୍ତରେ ଭଜନ-ଧ୍ୟାନ ନ କରି ମଧ୍ୟ ଭଗବତ୍ ଚିନ୍ତନ ସହିତ ଶାସ୍ତ୍ରବିହିତ କର୍ତ୍ତବ୍ୟକର୍ମଗୁଡିକୁ ନିରନ୍ତର କରୁଥିବା ନିଷ୍କାମ କର୍ମଯୋଗୀ ପରମାତ୍ମାଙ୍କ କୃପାରୁ ପରମଗତି ପ୍ରାପ୍ତ ହୁଏ।

୨୩- ନିଜ ନିଜ ବର୍ଣ୍ଣଧର୍ମାନୁଯାୟୀ କର୍ମରତ ପୁରୁଷ ମଧ୍ୟ ସିଦ୍ଧି ଲାଭ କରେ, କେବଳ କର୍ମରତ ସମୟରେ ତାହାର ଲକ୍ଷ୍ୟ ପରମାତ୍ମାଙ୍କଠାରେ ସ୍ଥିର ରହିବା ଉଚିତ।

୨୪- ଯେପରି ଏକ ପତିବ୍ରତା ନାରୀ ନିଜ ପତିକୁ ସର୍ବସ୍ୱ ମନେ କରି ପତିକୁ ଚିନ୍ତନରେ ରଖି ତାର ଆଜ୍ଞାନୁଯାୟୀ ପତିଙ୍କପାଇଁ ମନ, ବାକ୍ୟ ଓ ଶରୀରଦ୍ୱାରା (ନିଜ ଦାୟିତ୍ୱରେ ଥିବା) ସଂସାରର ସକଳ ନିୟତ କର୍ମ କରି ନିଜ ପତିର ପ୍ରସନ୍ନତା ପ୍ରାପ୍ତ କରେ, ଏହିପରି ନିଷ୍କାମ କର୍ମଯୋଗୀ କେବଳ ପରମାତ୍ମାଙ୍କୁ ସର୍ବସ୍ୱ ମନେ କରି ତାଙ୍କୁ ସ୍ମରଣ କରି ତାଙ୍କ ଆଜ୍ଞାନୁଯାୟୀ ମନ, ବାକ୍ୟ ଓ ଶରୀରଦ୍ୱାରା ସେହି ପରମାତ୍ମାଙ୍କ ଉଦ୍ଦେଶ୍ୟରେ କର୍ତ୍ତବ୍ୟ କର୍ମ ସମ୍ପାଦନ କରି ପରମାତ୍ମାଙ୍କ ପ୍ରସନ୍ନତା ତଥା ପରମାତ୍ମାଙ୍କୁ ପ୍ରାପ୍ତ କରେ।

୨୫- ସମ୍ପୂର୍ଣ୍ଣ ପ୍ରାଣୀମାନଙ୍କ ମଧ୍ୟରେ ପରମାତ୍ମାଙ୍କୁ ବ୍ୟାପକ ବୁଝି ସମସ୍ତଙ୍କୁ ପରମାତ୍ମାଙ୍କ ସ୍ୱରୂପ ମନେ କରି ନିଜ କର୍ମଗୁଡିକଦ୍ୱାରା ନିଷ୍କାମ କର୍ମଯୋଗୀ ଭକ୍ତ ଭଗବାନ୍‌ଙ୍କୁ ପୂଜା କରେ।

୨୬- ଯେପରି ଧନଲୋଭୀ ମନୁଷ୍ୟ ନିଜର ପ୍ରତ୍ୟେକ କର୍ମଦ୍ୱାରା ଧନପ୍ରାପ୍ତିର

ଉପାୟ ଖୋଜୁଥାଏ, କୌଣସିମତେ ତାକୁ ଧନ ମିଳିବା ଉଚିତ, ଏହା ହିଁ ନିରନ୍ତର ତା'ମନ ମଧ୍ୟରେ ବସା ବାନ୍ଧିଥାଏ। ଯେଉଁ କାର୍ଯ୍ୟରେ ଟଙ୍କା ଖର୍ଚ୍ଚ ହୁଏ, ଅଥଚ ଟଙ୍କା ମିଳେ ନାହିଁ ବା ମିଳିବାରେ ବାଧା ଥାଏ, ସେହି କାର୍ଯ୍ୟ ପାଖକୁ ସେ ଯାଏ ନାହିଁ। ସେ କେବଳ ସେହି କାର୍ଯ୍ୟଗୁଡିକ କରେ, ଯାହା ଧନଲାଭରେ ସହାୟକ ହୁଏ। ସେହିପରି ନିଷ୍କାମ କର୍ମଯୋଗୀ ମଧ୍ୟ ଆଠ ପ୍ରହର ଚଉଷଠି ଘଡ଼ି କାୟ-ମନ-ବାକ୍ୟରେ କେବଳ ସେହି କାର୍ଯ୍ୟଗୁଡିକୁ କରେ, ଯାହା ଈଶ୍ୱରଙ୍କୁ ସନ୍ତୁଷ୍ଟ କରେ।

୨୭- ଅନ୍ୟର ଅତ୍ୟନ୍ତ ଭଲ କର୍ମଗୁଡିକ ଆଡକୁ ଟିକିଏ ହେଲେ ନ ଗ୍ଡ଼ିହିଁ ପ୍ରଭୁଙ୍କ ପ୍ରସନ୍ନତାପାଇଁ ନିଜର କର୍ମଗୁଡିକୁ କୁଶଳତା ସହିତ କର।

୨୮- ରାଜଦରବାରର ଏକ ବିଦ୍ୱାନ୍ ପଣ୍ଡିତ ବେଦପାଠଦ୍ୱାରା ରାଜାଙ୍କୁ ଯେତେ ପ୍ରସନ୍ନ କରିପାରେ, ଠିକ୍ ସେତିକି ପରିମାଣରେ ରାଜମହଲଗୁଡିକରେ ଝାଡୁ ଦେଉଥିବା ପରମ ଆଜ୍ଞାକାରୀ ସାଧାରଣ ଗ୍ଡ଼ିକର ମଧ୍ୟ ମହଲଗୁଡିକ ସଫା ସୁତୁରା ରଖି ରାଜାଙ୍କୁ ସନ୍ତୋଷ ଦେଇପାରେ।

୨୯- ନିଷ୍କାମ କର୍ମଯୋଗୀ କେବଳ ପରମାତ୍ମାଙ୍କ ଉପରେ ଲକ୍ଷ୍ୟ ରଖେ।

୩୦- ପ୍ରତ୍ୟେକ କାର୍ଯ୍ୟ ଭଗବଦର୍ପଣ ହୋଇଥିବାରୁ ନିଷ୍କାମ କର୍ମଯୋଗୀ ପରମାତ୍ମାଙ୍କର ସର୍ବଥା କୃପାପାତ୍ର ହୋଇଥାଏ।

୩୧- ଯିଏ ପରମାତ୍ମାଙ୍କର ନିଃସ୍ୱାର୍ଥ ସେବକ, ଯେ ତାହାର ପ୍ରତ୍ୟେକ କର୍ମକୁ ଭଗବାନ୍‌ଙ୍କ ପ୍ରୀତ୍ୟର୍ଥେ ତାଙ୍କ ଚରଣରେ ସମର୍ପଣ କରିଦିଏ, ସେଥିରେ କୌଣସି ତ୍ରୁଟି ହେଲେ ସୁହୃଦ୍ ପରମାତ୍ମା ତା ପ୍ରତି ଧ୍ୟାନ ଦିଅନ୍ତି ନାହିଁ। ଏହା ବେନିୟମ ନୁହେଁ, କିନ୍ତୁ ସ୍ୱାର୍ଥରହିତ ସେବକପାଇଁ ଏହା ନିୟମ ଅଟେ।

୩୨- ନିଷ୍କାମ କର୍ମଯୋଗୀ ସାଧକ ପରମାତ୍ମାଙ୍କର ପ୍ରାପ୍ତିପାଇଁ କର୍ମଗୁଡିକୁ ପରମାତ୍ମାଙ୍କଠାରେ ଅର୍ପଣ କରି ଦେଇଥିବାରୁ ପରିଶେଷରେ ପରମାତ୍ମାଙ୍କ ପ୍ରସାଦରୁ ପରମାତ୍ମାଙ୍କୁ ପ୍ରାପ୍ତ କରେ।

୩୩- ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଯେଉଁ କର୍ମଗୁଡିକରେ ପରମାତ୍ମାଙ୍କର ନିତ୍ୟ ଓ ଅବିଚ୍ଛିନ୍ନ ସମ୍ବନ୍ଧ ଅଛି, ସେ କର୍ମ ଭକ୍ତିରହିତ ହୋଇ ନ ପାରେ।

୩୪- ଗୀତା ବର୍ଣ୍ଣିତ ଭକ୍ତିଯୁକ୍ତ କର୍ମଯୋଗର ସାଧକମାନେ ଭଗବାନ୍‌ଙ୍କ ଉପରେ ହିଁ ଭରସା କରି ସବୁ କର୍ମ ସମ୍ପାଦନ କରିବା ଉଚିତ। ସର୍ବଦା ଭଗବାନ୍‌ଙ୍କୁ ସ୍ମରଣ କରି ଭଗବାନ୍‌ଙ୍କଠାରେ ପ୍ରେମଜାତ ହେବା ଉଦ୍ଦେଶ୍ୟରେ ତାଙ୍କ ଆଜ୍ଞାନୁଯାୟୀ ହିଁ ସକଳ କର୍ମ କରିବା ଉଚିତ।

୩୫- ଭଗବଦର୍ଥ ବା ଭଗବଦର୍ପଣ କର୍ମ କରୁଥିବା ପୁରୁଷଦ୍ୱାରା ଭଗବତ୍ ସ୍ମୃତି ସହ ସକଳ କର୍ମ ହେବା ଉଚିତ।

୩୬- ଭଗବଦର୍ଥ ବା ଭଗବଦର୍ପଣ କର୍ମ ସାକ୍ଷାତ୍ ଭଗବାନ୍‌ଙ୍କର ସେବା ଅଟେ। ଏହି ରହସ୍ୟ ବୁଝିବାପରେ ସାଧକକୁ ପ୍ରତ୍ୟେକ କର୍ମରେ ଶାନ୍ତି ଓ ପ୍ରସନ୍ନତା ମିଳିବା ଉଚିତ। ପତିବ୍ରତା ନାରୀକୁ ପତିର ସେବା ଉଦ୍ଦେଶ୍ୟରେ ଅର୍ପିତ କର୍ମରେ କେବେ ଅସୁବିଧା ହୁଏ କି ? ଯଦି ହେଉଥାଏ, ତେବେ ସେ ପତିବ୍ରତା ହୋଇ ପାରେ କି ?

୩୭- ଯାହାର ଭଗବଦର୍ଥ ବା ଭଗବଦର୍ପଣ କର୍ମରେ ଅସୁବିଧା ହୁଏ, ସେ ବାସ୍ତବରେ କର୍ମ, ଭକ୍ତି ଓ ଭଗବାନ୍‌ଙ୍କ ତତ୍ତ୍ୱ ଜାଣି ନାହିଁ।

୩୮- ଯିଏ ପ୍ରକୃତ ପତିବ୍ରତା ନାରୀ, ସେ ନିଜ ପତି ପ୍ରେମରେ ପ୍ରସନ୍ନ ରହେ।

୩୯- ଭଗବାନ୍‌ଙ୍କ ଆଜ୍ଞାନୁଯାୟୀ ଭଗବତ୍‌କାର୍ଯ୍ୟରତ ଭଗବଦ୍‌ଭକ୍ତର ପ୍ରତିକ୍ଷଣ ଏହି ଭାବ ସ୍ମରଣ ରହିବା ଉଚିତ ଯେ ମୁଁ ଭଗବାନ୍‌ଙ୍କ ସେବକ ଅଟେ।

୪୦- ଯେଉଁ ସ୍ଥିତି ପରମେଶ୍ୱରଙ୍କ ସ୍ୱରୂପରେ ଭେଦଭାବରେ ହୁଏ ଅର୍ଥାତ୍ ପରମେଶ୍ୱର ଅଂଶୀ ଏବଂ ମୁଁ ତାଙ୍କର ଅଂଶମାତ୍ର ଅଟେ, ପରମେଶ୍ୱର ସେବ୍ୟ ଏବଂ ମୁଁ ତାଙ୍କର ସେବକ ଅଟେ, ଏହି ଭାବରେ ପରମାତ୍ମାଙ୍କ ପ୍ରୀତିପାଇଁ ତାଙ୍କର ଆଜ୍ଞାନୁଯାୟୀ ଫଳାସକ୍ତି ତ୍ୟାଗପୂର୍ବକ ଯେଉଁ କର୍ମ କରାଯାଏ, ତାହାର ନାମ ନିଷ୍କାମ କର୍ମଯୋଗନିଷ୍ଠା ଅଟେ।

୪୧- ସାଧାରଣ ସକାମ କର୍ମ ଓ ନିଷ୍କାମ କର୍ମ ମଧ୍ୟରେ ଏତିକି ମାତ୍ର ପାର୍ଥକ୍ୟ ଯେ ସକାମକର୍ମୀ କର୍ମଗୁଡ଼ିକର ସମ୍ପାଦନ ସାଂସାରିକ କାମନା ସିଦ୍ଧି ପାଇଁ କରେ ଏବଂ ନିଷ୍କାମ କର୍ମୀ ଭଗବତ୍ ପ୍ରୀତିପାଇଁ କରେ।

୪୨- ଯେଉଁ କର୍ମରେ ଭଗବାନ୍‌ଙ୍କର ସମ୍ମତି ନିହିତ କେବଳ ସେହି କର୍ମ କର ଏବଂ କେବଳ ତାଙ୍କରି ପାଇଁ ହିଁ କର।

୪୩- ଯାହା କିଛି ସ୍ୱାଧୀନଭାବରେ କର, ତାହା ସାବଧାନତାର ସହ କର। ସ୍ୱାର୍ଥକୁ ତ୍ୟାଗ କରି କର ଏବଂ ଅନ୍ୟର ହିତ ଦୃଷ୍ଟିରୁ କର। ଯେଉଁଥିରେ ଭଗବାନ୍ ଖୁସୀ ହେବେ, ସେହି କାମ କର ଏବଂ ପ୍ରତିକ୍ଷଣ ତାଙ୍କର ହସ୍ତ ତୁମ ମୁଣ୍ଡ ଉପରେ ଅଛି, ଏହା ଅନୁଭବ କରି ପ୍ରଫୁଲ୍ଲିତ ରୁହ। ଏହା ଖୁବ ଉତ୍ତମ ସାଧନା ଅଟେ। ଯେଉଁ କାର୍ଯ୍ୟ କଲେ ଭଗବାନ୍ ପ୍ରସନ୍ନ ହେବେ, ନିଜ ବୁଦ୍ଧି ଅନୁସାରେ ସେହି କାର୍ଯ୍ୟ କର।

୪୪- ସ୍ୱଇଚ୍ଛାରେ ଭଗବାନ୍‌ଙ୍କ ପ୍ରସନ୍ନତା ଅନୁସାରେ ତାଙ୍କ ଆଜ୍ଞା ଅନୁଯାୟୀ କାର୍ଯ୍ୟ କରିଯାଅ। ଅନିଚ୍ଛା ତଥା ପର ଇଚ୍ଛା ଅନୁଯାୟୀ ଯେଉଁ କାର୍ଯ୍ୟ କରିବାକୁ ପଡେ, ତାହାକୁ ଭଗବାନ୍‌ଙ୍କ ପ୍ରସାଦରୂପେ ଗ୍ରହଣ କର।

୪୫- ପ୍ରତିଦିନ କିଛି ସମୟ ଏକାନ୍ତରେ ଭଜନ-ଧ୍ୟାନ, ସ୍ୱାଧ୍ୟାୟ-ସତ୍‌ସଙ୍ଗ ପାଇଁ ରଖିବା ଉଚିତ, ନୋଚେତ ଭଗବାନ୍ ସର୍ବତ୍ର ସବୁରୂପରେ ବିଦ୍ୟମାନ— ଏହା ଆମେ ଭୁଲିଯିବା ଏବଂ ଆମେ କେବଳ କର୍ମପ୍ରବାହରେ ଭାସିଯିବା।

୪୬- ଭଗବାନ୍‌ଙ୍କ ପୂଜା-ବୁଦ୍ଧି ଅନୁଯାୟୀ କର୍ମ କରୁଥିବା ପୁରୁଷ ସକଳ ପ୍ରାଣୀଙ୍କ ସହ ଜାଗ୍ରତ ରହି ନିଜର ଅଧିକାର ଅନୁସାରେ ଆଗ୍ରହ ବ୍ୟବହାର କରିବା ସହିତ ସଜାଗ ରହିବ, କାରଣ ଏହି ସବୁ ରୂପରେ ସେହି ମାୟାବୀ ହିଁ କ୍ରୀଡ଼ା କରନ୍ତି।

୪୭- ସବୁ କିଛି ପରମାତ୍ମାଙ୍କର ମନେ କରି ତାଙ୍କୁ ଅର୍ପଣ କରି ଦିଅ ଏବଂ ପ୍ରତ୍ୟେକ କ୍ରିୟା କରିବା ସମୟରେ ତାଙ୍କୁ ସ୍ମରଣ କର।

୪୮- ଆମର କର୍ମକୁ ଭଗବତ୍ ପୂଜା ସେତିକିବେଳେ କୁହାଯିବ, ଯଦି ପ୍ରଧାନତଃ ସେଥିରେ ଦୁଇଟି ବୈଶିଷ୍ଟ୍ୟ ଥାଏ। ପ୍ରଥମତଃ ସେଥିରେ ମମତା, ଆସକ୍ତି ଏବଂ ଫଳ ପ୍ରତି ଇଚ୍ଛା ରହିବା ଅନୁଚିତ। ମୋଟ ଉପରେ ସବୁଠାରୁ ବଡ କଥା ଫଳଲାଭର କାମନା ତ୍ୟାଗ ଏବଂ ସିଦ୍ଧି-ଅସିଦ୍ଧିପ୍ରତି ସମତା ଏହାର ପରିଚାୟକ। ଯଦି ଆମକୁ ସଫଳତା ଲାଭରେ ଆନନ୍ଦ ମିଳେ ଓ ଅସଫଳତାରେ ଦୁଃଖ ହୁଏ, ତେବେ ସେହି କର୍ମଦ୍ୱାରା ଆମେ ଭଗବାନ୍‌ଙ୍କର ପୂଜା କଲୁଁ ବୋଲି କୁହାଯାଇ ନ ପାରେ। ଦ୍ୱିତୀୟତଃ ଆମର ସ୍ମରଣ ରହିବା ଉଚିତ ଯେ ଆମେ ଯେଉଁ କର୍ମ କରୁଅଛୁଁ, ତାହାଦ୍ୱାରା ଆମେ ଭଗବାନ୍‌ଙ୍କର ପୂଜା କରୁଅଛୁଁ ଏବଂ ଯାହାର ଆମେ ସେବା କରୁଅଛୁଁ, ସେ ଭଗବାନ୍‌ଙ୍କର ସ୍ୱରୂପ ଅଟେ।

୪୯- ସଂସାରର ସକଳ ପଦାର୍ଥ ଭଗବାନ୍‌ଙ୍କର। ଏହା ସାଧକ ମନରେ ଦୃଢୀଭୂତ ହେବା ଆବଶ୍ୟକ।

୫୦- ଭଗବାନ୍‌ଙ୍କ କଥିତ ବାଣୀରେ ବିଶ୍ୱାସ କରି ତାଙ୍କ ଆଜ୍ଞାନୁଯାୟୀ ସ୍ୱାର୍ଥତ୍ୟାଗପୂର୍ବକ ଶାସ୍ତ୍ରବିହିତ କର୍ମଗୁଡ଼ିକ କଲେ ଆସକ୍ତିର ବିନାଶ ହେବା ସଙ୍ଗେ ସଙ୍ଗେ କର୍ମଯୋଗର ତତ୍ତ୍ୱ ସମ୍ବନ୍ଧୀୟ ଜ୍ଞାନର କ୍ରମିକ ବିକାଶ ହୁଏ ଓ କର୍ମଯୋଗର ସମ୍ପାଦନ ସହଜ ସାଧ୍ୟ ହୁଏ।

୫୧- ଦେହାଭିମାନ ଥାଇ ଅନ୍ତଃକରଣର ମିଳନ ଅବସ୍ଥାରେ ମଧ୍ୟ କର୍ମଯୋଗର ସାଧନ ଆରମ୍ଭ କରାଯାଇପାରେ। ଏହାଦ୍ୱାରା ପବିତ୍ର ହୋଇଥିବା

ବୁଦ୍ଧିରେ ଭଗବତ୍‌କୃପାଦ୍ୱାରା ସ୍ୱାଭାବିକ ସ୍ଥିରତା ଆସେ ଓ ଭଗବଦ୍‌ଭାବ ବିକଶିତ ହୋଇ ଭଗବାନ୍‌ଙ୍କ ପ୍ରାପ୍ତି ହୋଇପାରେ । ଏହା ହିଁ ଏହାର ଜ୍ଞାନଯୋଗ ତୁଳନାରେ ସୁଗମତା ଓ ବିଶେଷତା ଅଟେ ।

୫୨- ଯଥାର୍ଥ କଲ୍ୟାଣ ଲାଭ ପାଇଁ ମନୁଷ୍ୟ ସ୍ୱାର୍ଥରହିତ ହୋଇ ଲୋକହିତକର କର୍ମ କରିବା ଉଚିତ ।

୫୩- ସ୍ୱାର୍ଥ ଏବଂ ରାଗ-ରୋଷରହିତ କର୍ମ ହିଁ କର୍ମଯୋଗ ସାଧକକୁ ଭଗବତ୍ ପ୍ରାପ୍ତି କରାଏ ଏବଂ ସିଦ୍ଧମାନଙ୍କର ଗୌରବ ବୃଦ୍ଧି କରାଏ ।

୫୪- ସକଳ କାର୍ଯ୍ୟରେ ସ୍ୱାର୍ଥତ୍ୟାଗ ହିଁ ମୁଖ୍ୟ ଅଟେ । କୌଣସି ବୈଧକର୍ମ ସ୍ୱାର୍ଥରହିତ ହୋଇ ସାଧନ କଲେ ଅତି ନୀଚରୁ ନୀଚ ପ୍ରାଣୀମାନଙ୍କର ମଧ୍ୟ କଲ୍ୟାଣ ହୁଏ ।

୫୫- ସାମାନ୍ୟ କର୍ମ ନିଃସ୍ୱାର୍ଥ ଭାବରେ କରାଗଲେ ବି ତାହା ମୁକ୍ତିଦାୟକ ହୋଇଥାଏ । ତେଣୁ ଯାହାଦ୍ୱାରା ସକଳ କର୍ମ ନିଃସ୍ୱାର୍ଥଭାବେ ସାଧନ ହୁଏ, ସେ ସ୍ୱୟଂ ହିଁ ମୁକ୍ତରୂପ ଅଟେ । ତାଙ୍କର ଦର୍ଶନ, ସ୍ପର୍ଶ, ଭାଷଣଦ୍ୱାରା ଅନ୍ୟମାନେ ପବିତ୍ର ହୋଇ ଯାଆନ୍ତି ଓ ମୁକ୍ତି ପାଆନ୍ତି ।

୫୬- ସ୍ୱାର୍ଥ (ସ୍ୱ-ଅର୍ଥ)ର ତାତ୍ପର୍ଯ୍ୟ ହେଲା "ନିଜପାଇଁ" ଅର୍ଥାତ୍ ନିଜର ବ୍ୟକ୍ତିଗତ ଲାଭପାଇଁ ଏବଂ ନିଃସ୍ୱାର୍ଥର ଅର୍ଥ "ନିଜପାଇଁ ନୁହେଁ" ଅର୍ଥାତ୍ ଅନ୍ୟ (ସମଷ୍ଟି)ର ହିତ ପାଇଁ ଉଦ୍ଦିଷ୍ଟ ।

୫୭- ବାସ୍ତବିକ ହିତାକାଙ୍କ୍ଷୀ ପୁରୁଷ ମାନ, ବଡିମା, ପ୍ରତିଷ୍ଠାର କାମନା ତ୍ୟାଗ କରି ବିଶୁଦ୍ଧ ନିଃସ୍ୱାର୍ଥଭାବରେ ଲୋକହିତକର କର୍ମ କରିବା ଉଚିତ ।

୫୮- ସକଳ ପ୍ରାଣୀମାନଙ୍କର କଲ୍ୟାଣ ଉଦ୍ଦେଶ୍ୟରେ ଶାସ୍ତ୍ରବିହିତ କର୍ମଗୁଡ଼ିକରେ ମନୁଷ୍ୟ ପ୍ରବୃତ୍ତ ହେବା ଉଚିତ ।

୫୯- କର୍ମଗୁଡ଼ିକରେ ସବୁପ୍ରକାରର ଫଳକାମନାର ତ୍ୟାଗକୁ ହିଁ ସ୍ୱାର୍ଥତ୍ୟାଗ କୁହାଯାଏ ।

୬୦- ମାନ-ବଡିମା-ପ୍ରତିଷ୍ଠା ଏବଂ ସ୍ୱର୍ଗାଦିଭୋଗ କାମନା ତ୍ୟାଗ ସହିତ ସେହି ତ୍ୟାଗଜନିତ ଅଭିମାନର ତ୍ୟାଗ ହେଲେ ତାହା ସ୍ୱାର୍ଥତ୍ୟାଗ ହୁଏ ।

୬୧- ନିଷ୍କାମଭାବ ହୃଦୟକନ୍ଦରରେ ଗୋପନୀୟ ରଖିବା ଯୋଗ୍ୟ ଏକ ମୂଲ୍ୟବାନ୍ ନିଧି ଅଟେ । ଏହା ଡେଙ୍ଗୁରା ପିଟିବା ପଦାର୍ଥ ନୁହଁ ।

୬୨- ସ୍ୱାର୍ଥତ୍ୟାଗରୂପ ଧର୍ମର ସେବନଦ୍ୱାରା ସକଳ ଅନର୍ଥର ମୂଳ ଆସକ୍ତିର କ୍ରମେ କ୍ରମେ ବିନାଶ ହୁଏ ।

୬୩- ସ୍ୱାର୍ଥରହିତ କର୍ମଗୁଡିକର ଅନୁଷ୍ଠାନ କର୍ତ୍ତାକୁ ବାନ୍ଧିରଖି ପାରେନା (ଗୀତା ୪ । ୧୪; ୫ । ୧୦) ।

୬୪- ସ୍ୱଧର୍ମାନୁଯାୟୀ ଆସକ୍ତି ଓ ସ୍ୱାର୍ଥ ରହିତ ହୋଇ ଅଖିଳ ଜଗତରେ ପରମାତ୍ମାଙ୍କର ବ୍ୟାପକତା ହୃଦୟଙ୍ଗମପୂର୍ବକ ସକଳ ପ୍ରାଣୀଙ୍କର ସେବାଭାବ ନେଇ ସ୍ୱ ସ୍ୱ କର୍ତ୍ତବ୍ୟ କର୍ମ କରିବା ଉଚିତ ।

୬୫- ଯେପରି ପାରଦ ଓ ଶଙ୍ଖୁଆ ଅମୃତ ପରି କାମ ଦିଏ, ଯଦି ତାହା ଚତୁର ବୈଦ୍ୟଦ୍ୱାରା ଶୋଧନ କରି ଶୁଦ୍ଧ କରାଯାଏ । ଏହିପରି ଯେପର୍ଯ୍ୟନ୍ତ କର୍ମଗୁଡିକ ସ୍ୱାର୍ଥ ଓ ଆସକ୍ତିଯୁକ୍ତ, ସେ ପର୍ଯ୍ୟନ୍ତ କର୍ମୀର ବନ୍ଧନ ବା ମୃତ୍ୟୁ ନିଶ୍ଚିତ ଅଟେ । ଯେଉଁ ଦିନ ସେ ସ୍ୱାର୍ଥ ଓ ଆସକ୍ତିରୁ ମୁକ୍ତ ହୋଇ କର୍ମ ଶୁଦ୍ଧ କରିନିଏ, ସେହିଦିନ ସେ ଅମୃତରେ ପରିଣତ ହୋଇ ପରମାତ୍ମାଙ୍କର ଅମର ପଦ ପ୍ରାପ୍ତ ହୁଏ ।

୬୬- ଯଦି ଭଗବତ୍ ପ୍ରାପ୍ତି ତୁମର ପରମ ଲକ୍ଷ୍ୟ, ତେବେ ବାସ୍ତବିକ ତ୍ୟାଗ କର । ନିଜର ସକଳ ପଦାର୍ଥକୁ ହୃଦୟର ସହିତ ଈଶ୍ୱରଙ୍କର ବୋଲି ବିଗ୍ରର କର । ସକଳ କର୍ମ ପ୍ରଭୁଙ୍କ ନିମିତ୍ତ ହିଁ କର । ମମତା, ଅହଂକାର ଏବଂ ଆସକ୍ତିକୁ ମୂଳରୁ ଉତ୍ପାଟନ କର ।

୬୭- କର୍ମଗୁଡିକର ବହୁଳତା ବାଧକ ନୁହଁ, ରାଗ-ଦ୍ୱେଷ, କାମ-କ୍ରୋଧାଦି ଅବଗୁଣ ହିଁ ବାଧକ ଅଟେ ।

୬୮- ଯାହାର ମନ ପଦାର୍ଥ ଏବଂ କର୍ମଗୁଡିକ ପ୍ରତି ଆସକ୍ତ ହୁଏ ନାହିଁ, ସେ ହିଁ ଯୋଗୀ ଅଟେ । ସେ ସକଳ କର୍ମ କରେ, ମାତ୍ର ତା'ପ୍ରତି ଆସକ୍ତ ହୁଏ ନାହିଁ । କର୍ମପ୍ରତି ସ୍ଫୁରଣ ରହୁ, ମାତ୍ର ଆସକ୍ତି ନ ରହୁ । ଏହିପରି ସକଳ ସଂକଳ୍ପ ତ୍ୟାଗୀ ହିଁ ଯୋଗାରୂଢ ଅଟେ ।

୬୯- ଯେ କୌଣସି କାର୍ଯ୍ୟରେ ଅହଂକାର ତ୍ୟାଗ କର । କୌଣସି ଉତ୍ତମ କାର୍ଯ୍ୟରେ ଅହଂକାର ଯେପରି ମନ ମଧ୍ୟରେ ପ୍ରବେଶ ନ କରେ ।

୭୦- ଫଳକାମନା, ଆସକ୍ତି ଓ କର୍ତ୍ତାପଣ ଆଦି ଅଭିମାନ ରହିତ ହୋଇ ଲୋକହିତକର କର୍ମଗୁଡ଼ିକ କରିବା ଉଚିତ ।

୭୧- "ଆସକ୍ତି ଓ କର୍ମଫଳର ତ୍ୟାଗ ହିଁ କର୍ମଯୋଗ ଅଟେ ।"

୭୨- କୁପଥ୍ୟ ସେବନ ପାଇଁ ଯେପରି ରୋଗୀର ମୂର୍ଖତା ହିଁ ଦାୟୀ ଅଟେ । ସେହିପରି ସ୍ତ୍ରୀ, ପୁତ୍ର, ଧନ, ଶରୀର, ମାନ ଓ ବଡିମାର ଆସକ୍ତି ପାଇଁ ଆମର ମୂର୍ଖତା ହିଁ ଦାୟୀ ଅଟେ ।

୭୩- କର୍ମଗୁଡିକର କ୍ରିୟା ଅଂଶ ମନୁଷ୍ୟକୁ ବନ୍ଧନରେ ପକାଏ ନାହିଁ, ଫଳର ଇଚ୍ଛା ଓ ଆସକ୍ତି ହିଁ ବନ୍ଧନରେ ପକାଏ। ଫଳ ଓ ଆସକ୍ତି ନ ରହିଲେ କୌଣସି କର୍ମ ମନୁଷ୍ୟକୁ ବନ୍ଧନରେ ପକାଇ ନ ପାରେ।

୭୪- ନିଜର କର୍ତ୍ତବ୍ୟକର୍ମ ତ୍ୟାଗ କରିବାର କୌଣସି ଆବଶ୍ୟକତା ନାହିଁ। ପ୍ରଭୁଙ୍କୁ ପ୍ରସନ୍ନ କରିବାପାଇଁ ସ୍ୱାର୍ଥ ତ୍ୟାଗପୂର୍ବକ ନିଜର କର୍ତ୍ତବ୍ୟକର୍ମଗୁଡିକୁ ପ୍ରଭୁଙ୍କୁ ଅର୍ପଣ କରିବାର ଆବଶ୍ୟକତା ରହିଛି। ଏହା ହିଁ ନିଜ କର୍ମଗୁଡିକ ମାଧ୍ୟମରେ ପ୍ରଭୁଙ୍କର ପୂଜା ଅଟେ ଓ ଏହାଦ୍ୱାରା ହିଁ ପରମାତ୍ମାଙ୍କର ପ୍ରାପ୍ତି ହୁଏ।

୭୫- ଯେଉଁ ଲୋକମାନଙ୍କୁ ଏକାନ୍ତରେ ସାଂସାରିକ ବିକ୍ଷେପଗୁଡିକ କଷ୍ଟ ପ୍ରଦାନ କରେ, ସେମାନେ ଅଧିକ ସମୟ କର୍ମରହିତ ହୋଇ ଏକାନ୍ତରେ ରହିବା ଉଚିତ ନୁହେଁ। ଜଗତରେ ଏହିପରି ଲୋକ ଅଧିକ ସଂଖ୍ୟାରେ ଅଛନ୍ତି।

୭୬- ସଂସାରରେ ଅଧିକାଂଶ ଲୋକ କର୍ମର ଅଧିକାରୀ ଅଟନ୍ତି।

୭୭- ଶାସ୍ତ୍ରୋକ୍ତ ସାଂସାରିକ କର୍ମଗୁଡିକୁ ଭଗବନ୍‌ମୁଖୀ କରି ଦେବାପାଇଁ ପ୍ରଯତ୍ନ କରିବା ଉଚିତ, ମାତ୍ର କର୍ମଗୁଡିକୁ ତ୍ୟାଗ କରିବା ଉଚିତ ନୁହେଁ।

୭୮- ଗୀତାରେ କର୍ମ ତ୍ୟାଗକୁ ନିନ୍ଦା କରାଯାଇଅଛି ଏବଂ ଏହାକୁ ତାମସୀ ତ୍ୟାଗ କୁହାଯାଏ।

୭୯- ମୋହଗ୍ରସ୍ତ ହୋଇ କର୍ମତ୍ୟାଗ କରୁଥିବା ଅଜ୍ଞାନୀ ବ୍ୟକ୍ତି ପ୍ରକୃତରେ ତ୍ୟାଗୀ ନୁହଁ ।

୮୦- କୌଣସି କର୍ତ୍ତବ୍ୟକର୍ମ ତ୍ୟାଗ କରିବାର ଆବଶ୍ୟକତା ନାହିଁ, କେବଳ ବୁଦ୍ଧି ଶୁଦ୍ଧ କରିବାର ଆବଶ୍ୟକତା ଅଛି।

୮୧- ଆସକ୍ତି ଦୂର ନ ହେଲେ କୌଣସି ଚିନ୍ତା ନାହିଁ। ସବୁ କିଛି ଭଗବାନ୍‌ଙ୍କର ମନେ କରି ଯେପରି ଗୁମାସ୍ତା (ଗୃକର) ମାଲିକ ପାଇଁ କାର୍ଯ୍ୟ କରେ। ସେହିପରି ନିଜର ସ୍ୱାର୍ଥ ତ୍ୟାଗ କରି ସଂସାରର ସକଳ କାର୍ଯ୍ୟ ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ କରିବା ଉଚିତ।

୮୨- ନିଷ୍କାମ ପ୍ରେମ ସହିତ ସମସ୍ତଙ୍କର ସେବା କରିବା ସଦୃଶ ଅନ୍ୟ କୌଣସି କାର୍ଯ୍ୟ ନାହିଁ।

୮୩- ସଂସାରରେ ରହି ଶୁଦ୍ଧ ହୃଦୟରେ କର୍ମଗୁଡିକ କଲେ ଅତି ଭଲଭାବେ ସବୁକାର୍ଯ୍ୟର ନିର୍ବାହ ହୋଇଯାଏ।

୮୪- ଯେଉଁ ମନୁଷ୍ୟ କର୍ମଗୁଡିକୁ ଲୀଳାରୂପେ ଗ୍ରହଣ କରେ, ସେ କର୍ମଗୁଡିକ ପ୍ରତି ଭୟଭୀତ ହୁଏ ନାହିଁ ।

୮୫- ନିଷ୍କାମଭାବରେ ଶରୀର, ମନ, ଧନ ଅନ୍ୟର କାର୍ଯ୍ୟରେ ଲାଗିଗଲେ ସେହି ସମୟ ବାସ୍ତବରେ କାର୍ଯ୍ୟରେ ଲାଗିଲା, ବାକି ସବୁ ବେକାର ଗଲା ।

୮୬- ଆସକ୍ତି ରହିତ ହୋଇ କର୍ମ କର, ତାହା ଫଳପ୍ରଦ ହେଲା କି ନ ହେଲା, ତାହା ପ୍ରତି ସମଭାବ ରଖ ।

୮୭- ସତ୍‌କାର୍ଯ୍ୟ କେବେ ହେଲେ ବ୍ୟର୍ଥ ହୁଏ ନାହିଁ ।

୮୮- ସକାମଭାବରେ ଶ୍ରଦ୍ଧା କମ୍ ଥାଏ । ନିଷ୍କାମ ଭାବରେ ଶ୍ରଦ୍ଧା ଭରପୂର ରହେ, ତାହା ତ ହ୍ରାସ ପାଏ ନାହିଁ । ସକାମଭାବରେ ଶ୍ରଦ୍ଧା କାମନାପୂର୍ଣ୍ଣ ହେବା ସଙ୍ଗେ ସଙ୍ଗେ କମିଯାଏ କିମ୍ବା କାମନା ପୂର୍ଣ୍ଣ ହେବାର ଆଶା ନ ଥିଲେ ମଧ୍ୟ ଶ୍ରଦ୍ଧା କମିଯାଏ ।

୮୯- ଜୀବନ୍ମୁକ୍ତ ପୁରୁଷପାଇଁ କୌଣସି କର୍ମ ବାକି ନ ଥାଏ । ଯେହେତୁ ତାହା ଦୃଷ୍ଟିରେ ଏକ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କାହାର ଅସ୍ତିତ୍ୱ ନ ଥାଏ ତେବେ କୌଣସି କର୍ମଭୋଗ ତାକୁ କିପରି ଭୋଗିବାକୁ ପଡ଼େ ।

୯୦- ଲୋଭ ତ୍ୟାଗପୂର୍ବକ କେବଳ ଧର୍ମଦୃଷ୍ଟିରୁ ଭଗବାନ୍‌ଙ୍କୁ ସବୁ କିଛି ହୃଦୟଙ୍ଗମ କରି ଏବଂ ତାଙ୍କ ଆଜ୍ଞାରେ ଯେଉଁ ବ୍ୟବହାରିକ କର୍ମ କରାଯାଏ, ତାହାଦ୍ୱାରା ଲୋକମାନଙ୍କର ବହୁତ ମଙ୍ଗଳ ହୁଏ ।

୯୧- ଯାହାର ବ୍ୟବହାରରେ ନିଜ ପାଇଁ କେବଳ ଶରୀର ନିର୍ବାହର ଭାବ ପରିଲକ୍ଷିତ ହୁଏ, ତାହା ମଧ୍ୟ ନ ହେଲେ ଚଳେ ଏବଂ ଯିଏ ଲାଭ-କ୍ଷତି ଆନନ୍ଦବିଷାଦରେ ଅବିଚଳିତ ରହେ, ଏପରି ପୁରୁଷର ବ୍ୟବହାର କେବଳ ଲୋକହିତକର ହୁଏ । ଧନାର୍ଜନପାଇଁ ନୁହେଁ, ଏହାକୁ ନିଷ୍କାମ ବ୍ୟବହାର କୁହାଯାଏ । ଏହାଦ୍ୱାରା ହୃଦୟ ପବିତ୍ର ହୁଏ ।

୯୨- ଘରେ ତଥା ସଂସାରରେ ସମସ୍ତ ମନୁଷ୍ୟ ସହ ସ୍ୱାର୍ଥତ୍ୟାଗ କରି ସେମାନଙ୍କ ହିତଦୃଷ୍ଟିରୁ ଯିଏ ବ୍ୟବହାର କରେ, ତାହାର ବ୍ୟବହାର ଉତ୍ତମ ଅଟେ ଏବଂ ତାହାର ହୃଦୟ ଶୁଦ୍ଧ ଅଟେ ।

୯୩- ନିଜର ପ୍ରାଣ ଓ ଶରୀର ଭଗବାନ୍‌ଙ୍କ କର୍ମରେ ଲାଗିଗଲେ ନିଜକୁ ଧନ୍ୟ ମନେ କରିବା ଉଚିତ ।

୯୪- ନିଷ୍କାମଭାବରେ ଲୋକମାନଙ୍କପାଇଁ ଯଥେଷ୍ଟ କାର୍ଯ୍ୟ କରିବା ଉଚିତ । ଲୋକମାନଙ୍କର ଯଥେଷ୍ଟ ସେବା କରିବା ଉଚିତ ।



# ସାଧନାର କଥା

୧- ଯଦି କାହାର ପୁତ୍ର ସନ୍ତାନ ଜାତ ନ ହୁଏ, ତେବେ ପୋଷ୍ୟପୁତ୍ର ଗ୍ରହଣ କର ନାହିଁ । ଯଦି ନାମରକ୍ଷା ପାଇଁ ବା ବଂଶ ରକ୍ଷାପାଇଁ ତାହା ଗ୍ରହୁଁଥାଅ, ତେବେ ଆମ୍ଭମାନଙ୍କର ୩ । ୪ ପିଢି ପୂର୍ବପୁରୁଷଙ୍କର ନାମ କେହି ଜାଣିଛି କି?

୨- କାହାରି ସହିତ କଳହ କର ନାହିଁ, "ହରେ ରାମ" ମନ୍ତ୍ରର ୧୪ ମାଳା ଜପ କର, ନୀଳ ଦିଆ ଲୁଗା ପିନ୍ଧ ନାହିଁ, ମିଲ୍ ଲୁଗା ପିନ୍ଧ ନାହିଁ, କାହାକୁ ଖରାପ ଦୃଷ୍ଟିରେ ଦେଖ ନାହିଁ ।

୩- ତୁମକୁ ବିଗ୍ଭର କରିବାକୁ ହେବ ଯେ ସଂସାରକୁ ଆସି ମୁଁ କ'ଣ କଲି? ପଶୁ ଓ ମୋ ମଧ୍ୟରେ ପାର୍ଥକ୍ୟ କ'ଣ ? ଖାଇବା, ପିଇବା ଓ ବିଷୟଭୋଗ ପଶୁ ମଧ୍ୟ କରୁଅଛି । ତେଣୁ ପଶୁଠାରୁ ତୁମକୁ ଅଧିକ ଆନନ୍ଦ କ'ଣ ମିଳିଲା?

୪- କାଳକୁ ତିଳେମାତ୍ର ବିଶ୍ୱାସ କରିବା ଉଚିତ ନୁହେଁ ।

୫- ବିଶ୍ୱାସପୂର୍ବକ ପ୍ରତିଜ୍ଞାବଦ୍ଧ ହୋଇ ଭଜନ-ଧ୍ୟାନର ସାଧନା କରିବାକୁ ପ୍ରୟାସ କରିବା ଉଚିତ । କାମ ଓ କ୍ରୋଧ ସ୍ୱତଃ ବିନଷ୍ଟ ହୁଅନ୍ତି ।

୬- ଯଦି ଭଜନ କରୁଁ କରୁଁ ଆନନ୍ଦ ଅନୁଭବ କର, ତେବେ ଭଜନର ମର୍ମ ହୃଦୟଙ୍ଗମ ହୁଏ ।

୭- ତୁମକୁ ଏପରି କେଉଁ ବସ୍ତୁର ଆବଶ୍ୟକତା ଅଛି, ଯାହା ପାଇଁ ତୁମେ ଭଗବାନ୍‌ଙ୍କ ପରି ପ୍ରିୟ ମିତ୍ରର ପ୍ରେମ-ଚିନ୍ତନ ତ୍ୟାଗ କରି ମିଥ୍ୟା ଓ କ୍ଷଣଭଙ୍ଗୁର ସଂସାର-ଚିନ୍ତନରେ ନିଜର ବହୁମୂଲ୍ୟ ସମୟ ଅତିବାହିତ କରୁଛ ।

୮- ସଂସାରର କର୍ମ ନିଷ୍କାମଭାବରେ ଅନାସକ୍ତ ହୋଇ କରିବା ଉଚିତ ।

୯- ଏକ କ୍ଷଣ ମଧ୍ୟ ବ୍ୟର୍ଥ କଥା ଓ ବ୍ୟର୍ଥ କର୍ମରେ ଅତିବାହିତ କରିବା ଅନୁଚିତ । ଭଗବାନ୍‌ଙ୍କୁ ଛାଡି ଶେଷରେ ଅନ୍ୟକେହି ତୁମର ସାଥୀ ନାହାନ୍ତି । ଏହା ଜାଣି କ୍ଷଣକପାଇଁ ମଧ୍ୟ ନାରାୟଣଙ୍କୁ ଛାଡ ନାହିଁ ।

୧୦- ବ୍ୟାଖ୍ୟାନଦାତା ପାଇଁ ବ୍ୟାଖ୍ୟାନ ଭଜନ-ଧ୍ୟାନଠାରୁ ଅଧିକ ଲାଭଦାୟକ ଅଟେ, କାରଣ ବ୍ୟାଖ୍ୟାନ କରୁଥିବା ବ୍ୟକ୍ତି ମଧ୍ୟରେ ସେହି ସଦ୍‌ଗୁଣଗୁଡିକ ନ ଥିଲେ ମଧ୍ୟ ତାହା କହି କହି ତାହାକୁ ଧାରଣ କରିବା ପାଇଁ ସେ ଚେଷ୍ଟା କରେ ।

୧୧- ଅର୍ଜୁନ ଭଗବାନ୍‌ଙ୍କର କେତେ ବଡ ଭକ୍ତ ଥିଲା, ତଥାପି ଭଗବାନ୍ ତାକୁ କହିଲେ ଯଦି ତୁ ମୋ କଥା ନ ମାନୁ, ତେବେ ତୁ ନଷ୍ଟ ହୋଇଯିବୁ । ତେଣୁ ସର୍ବଦା ତାଙ୍କ କହିବା ଅନୁଯାୟୀ ଚଳିବା ଉଚିତ ।

୧୨- ଲୋକମାନେ ନିଜ ଦୁର୍ଗୁଣଗୁଡିକୁ ସ୍ୱୟଂ ବିଗ୍ଭର କରିବା ଉଚିତ। ନିଜେ ଚିନ୍ତା କଲେ ବୁଦ୍ଧିର ବିକାଶ ହୁଏ ତଥା ଦୁର୍ଗୁଣଗୁଡିକୁ ତ୍ୟାଗ କରିବାପାଇଁ ପ୍ରଯତ୍ନ ଆରମ୍ଭ ହୁଏ।

୧୩- ଆମେ ସତ୍‌ସଙ୍ଗୀମାନେ ଆଳସ୍ୟପରାୟଣ ନ ହୋଇ ଯଥେଷ୍ଟ ପରିଶ୍ରମୀ ହେବା ଉଚିତ। ନୋଚେତ ଆମେ ସତ୍‌ସଙ୍ଗରେ କଳଙ୍କ ଲଗାଇବା, କାରଣ ସତ୍‌ସଙ୍ଗ କରୁଥିବା ଲୋକେ ଆଳସ୍ୟପରାୟଣ ବୋଲି ପ୍ରଗ୍ଭରିତ ହେବ। ଏହି କାରଣରୁ ଲୋକେ ସତ୍‌ସଙ୍ଗ କରୁ ନାହାନ୍ତି। ଏହି ପ୍ରକାର ଲୋକ ବଡ କ୍ଷତିସାଧନ କରୁଅଛନ୍ତି। କାରଣ ସେମାନଙ୍କ ଆଚରଣ ଅନ୍ୟ ଲୋକମାନଙ୍କୁ ସତ୍‌ସଙ୍ଗ ଆସିବାରେ ବାଧକ ହେଉଅଛି।

୧୪- ମନୋଯୋଗପୂର୍ବକ ଭଜନ, ଧ୍ୟାନ ଓ ସତ୍‌ସଙ୍ଗ କରିବାପାଇଁ ମନ ସଙ୍ଗେ ସର୍ବଦା ସଂଘର୍ଷ ଜାରି ରଖ ଏବଂ ମନକୁ ବୁଝାଇ ଗ୍ଭଲ ଯେ ଏହି ସ୍ଥିତିରେ ତୋର ମୃତ୍ୟୁ ହୋଇଗଲେ ତୋର ଦଶା କ'ଣ ହେବ?

୧୫- ଯେଉଁଥିରେ ବେଶୀ ଲାଭ ସେଥିରେ ଅଧିକ ସମୟ ଦେବା ଉଚିତ। ତାହାଠାରୁ ନିମ୍ନଲିଖିତ କଥା ମଧ୍ୟ ଅଧିକ ଉଚ୍ଚ ଅଟେ।

୧. ଉଚ୍ଚକୋଟୀର ବାଣୀ ଅନୁଭବୀ ପୁରୁଷଙ୍କଠାରୁ ଶୁଣିବା।

୨. ଜପ ସହିତ ଧ୍ୟାନ।

୩. ଅର୍ଥ ଏବଂ ଭାବସହିତ ଗୀତାର ଅନୁଶୀଳନ।

୪. ଭଗବାନ୍‌ଙ୍କ ନାମ ଜପ ତଥା ଶ୍ରୀମଦ୍‌ଭଗବଦ୍ ଗୀତାର ମୂଳଶ୍ଳୋକର ପାଠ। ଉପର୍ଯ୍ୟୁକ୍ତ ଗ୍ଭରିଟି ବାଣୀ ମଧ୍ୟରୁ ଚତୁର୍ଥ କଥାଟିକୁ ୧୦୦ ବର୍ଷ ଧରି କଲେ ଯେତେ ଫଳ ମିଳେ, ସେତେ ଫଳ ଉପର ୩ଟି କଥାକୁ ୫-୭ ବର୍ଷ କାମରେ ଆଣିଲେ ମିଳିଥାଏ। ମନୁଷ୍ୟମାନେ ସାଧାରଣତଃ ଚତୁର୍ଥ କଥାଟିକୁ କରିଥାନ୍ତି।

୧୬- ଯୁକ୍ତିସହିତ ସାଧନ କଲେ ବହୁତ ଶୀଘ୍ର ପରମାତ୍ମାଙ୍କର ପ୍ରାପ୍ତି ହୁଏ।

୧୭- ଦୁଇଟି କଥା ଯୋଗୁଁ ପରମାତ୍ମା ପ୍ରାପ୍ତି ହୁଏ ନାହିଁ। ପ୍ରଥମତଃ ସାଧନ ନ କଲେ ଦ୍ୱିତୀୟତଃ ଯୁକ୍ତି ନ ଜାଣିଲେ।

୧୮- ''ଗଜଲ ଗୀତା''ର ପାଠ ଶୟନ ସମୟରେ କରିବା ଉଚିତ।

୧୯- ''ପ୍ରେମଭକ୍ତି-ପ୍ରକାଶ'' ପ୍ରେମର ସହିତ ମନନପୂର୍ବକ ପ୍ରତିଦିନ ପଢିବା ଉଚିତ।

୨୦- ''ଗୀତା'' ଓ ''ଧାର୍ମିକ ଗ୍ରନ୍ଥଗୁଡିକର ପ୍ରଗ୍ଭର'' ମୋର ଅତ୍ୟନ୍ତ ପ୍ରିୟ

ଅଟେ, ଏ ସମ୍ବନ୍ଧୀୟ ଲେଖାମାନ ଲେଖି ବହୁ ମାତ୍ରାରେ ସଂସାରରେ ଛାଡିଗଲେ ତାହା ହିତକର ହୁଏ। ଯେପରି ଋଷି, ମୁନି ପ୍ରଣୀତ ଶାସ୍ତ୍ରଗୁଡ଼ିକଦ୍ୱାରା ସଂସାରବାସୀ ଲାଭାନ୍ୱିତ ହେଉ ଅଛନ୍ତି।

୨୧- ଯିଏ ଜୀବିତ ଅବସ୍ଥାରୁ ହିଁ ଶରୀରର ଆଶ୍ରୟ ତ୍ୟାଗ କରି ଦିଏ ଓ ଶରୀରକୁ ଏକ ଶବ ସମାନ ଗ୍ରହଣ କରି ନିଏ, ସେ ଉତ୍ତମ ଓ ଜୀବନ୍ମୁକ୍ତ ଅଟେ।

୨୨- କାୟ-ମନୋ-ବାକ୍ୟରେ ବ୍ରାହ୍ମଣମାନଙ୍କର ସତ୍କାର କରିବା ଉଚିତ। ବିଦ୍ୱାନ୍‌ମାନଙ୍କର ସତ୍କାର ବିଶେଷ ରୂପରେ ହେବା ଉଚିତ।

୨୩- କଳିଯୁଗରେ ଏପରି ଭଲ ସମୟ ଆଉ ଆସିବ ନାହିଁ। ଭବିଷ୍ୟତରେ ଏପରି ମନୁଷ୍ୟ ଜନ୍ମ ନେବେ, ଯେଉଁମାନେ କହିବେ—ଆମେ ଯାହା କୁହୁଛୁଁ, ତାହାହିଁ ଧର୍ମ ଅଟେ। ଆମକୁ ହିଁ ଦିଅ, ଆମର ହିଁ ସେବା କର। ଏହିପରି ଦାତା ଓ ଗ୍ରହୀତା ଉଭୟ ହିଁ ନରକରେ ପଡିବେ। ଏପରି ହେବ ଯେ ନରକରେ ମଧ୍ୟ ଜାଗାର ଅଭାବ ହୋଇଯିବ, ଯେପରି ଗାନ୍ଧିଜୀଙ୍କ ଆନ୍ଦୋଳନରେ ସରକାରୀ ଜେଲଖାନାଗୁଡ଼ିକରେ ଜାଗାର ଅଭାବ ପଡିଥିଲା। ଏହିପରି ନରକଗୁଡିକରେ ମଧ୍ୟ ଜାଗା ସୀମିତ ଅଟେ।

୨୪- ଅନ୍ତଃକରଣ ଶୁଦ୍ଧ ନ ହେଲେ ରାଗ-ଦ୍ୱେଷ, ସୁଖ-ଦୁଃଖ, ଶୋକ-ମୋହ ଆଦି ମନୁଷ୍ୟଠାରେ ନିଶ୍ଚିତରୂପେ ଦେଖା ଦେବ। ସଂସାରର ଅସ୍ତିତ୍ୱ କ୍ଷୀଣ ହେବ ନାହିଁ। ଭଜନ, ଧ୍ୟାନ, ସତ୍‌ସଙ୍ଗ ଏବଂ ନିଷ୍କାମ କର୍ମ କଲେ ଏବଂ ଭଗବାନ୍‌ଙ୍କର ପ୍ରେମ, ଭକ୍ତି ଓ ଜ୍ଞାନର ବିଷୟ ପାଠ କଲେ ଅନ୍ତଃକରଣ ଶୁଦ୍ଧ ହୋଇଯାଏ।

୨୫- ବଡିମା କରୁଥିବା ବ୍ୟକ୍ତି ନିଜକୁ ସବୁଆଡୁ ଠକାଏ। ବାହାରର ଧନ ଓ ତଜ୍ଜନିତ ପ୍ରସନ୍ନତା ମନୁଷ୍ୟର ପରମାର୍ଥ ଧନ ଓ ପ୍ରସନ୍ନତାକୁ ହରଣ କରିନିଏ ।

୨୬- ଆତ୍ମାର ସଦ୍‌ଗତିରେ ତମାଖୁ ସେବନ ଅତ୍ୟନ୍ତ କ୍ଷତି କରେ।

୨୭- ଏହି ଚେଷ୍ଟା କର ଯେପରି କି ଶସ୍ୟରେ ପୋକ ନ ଲାଗିବେ।

୨୮- ଯେତେ ବଡ ପାପୀ ହେଲେ ମଧ୍ୟ ତାହାର କଲ୍ୟାଣ ହୋଇପାରେ। ସାହସ ରଖ।

୨୯- ଭଗବାନ୍‌ଙ୍କ ନାମଜପ ଏବଂ ସ୍ୱରୂପର ଧ୍ୟାନ ଏବଂ ସ୍ୱାର୍ଥରହିତ ହୋଇ ଦୁଃଖୀ ପ୍ରାଣୀମାନଙ୍କ ସେବା କଲେ ଏବଂ ନ୍ୟାୟୋଚିତ ଧନଦ୍ୱାରା

ଜୀବିକା ନିର୍ବାହ କଲେ ଅନ୍ତଃକରଣ ପବିତ୍ର ହୁଏ। ତାହାଦ୍ୱାରା ଶ୍ରଦ୍ଧା, ଭକ୍ତି ଓ ପ୍ରେମର ବିକାଶ ହୁଏ। ଏହାର ବୃଦ୍ଧି ହେଲେ ବିଷୟାସକ୍ତି ନାଶ ହୁଏ। ବିଷୟାସକ୍ତିର ବିନାଶ ହେଲେ କାମ-କ୍ରୋଧାଦି ଷଡ଼ରିପୁ ଆଦୌ ଉତ୍ପନ୍ନ ହୁଅନ୍ତି ନାହିଁ ।

୩୦- ପରମେଶ୍ୱରଙ୍କ ଦୟାରୁ ସତ୍ୟଯୁଗ ଆସେ ଏବଂ ପ୍ରକୃତିର ସଙ୍ଗ ଲାଭ କରି ଅଧୋଗାମୀ ହୁଏ। ଠିକ୍ ଏହିପରି ଜୀବମାନଙ୍କର ମଧ୍ୟ ଅଧଃପତନ ସହଜରେ ହୋଇଥାଏ; କିନ୍ତୁ ଊର୍ଦ୍ଧ୍ୱଗତି ପାଇଁ ପୁରୁଷାର୍ଥ କରିବାକୁ ପଡ଼େ।

୩୧- ପତିବ୍ରତା ନିଜ ସ୍ୱାମୀଠାରେ ମନ ରଖି ସଂସାରର କାର୍ଯ୍ୟ କରେ । ଏହିପରି କଲେ ସାଧନା ପରିପକ୍ୱ ହୁଏ।

୩୨- ନିଜ ମଧ୍ୟରେ ପୁରୁଷାର୍ଥର ନ୍ୟୂନତା ଲକ୍ଷ୍ୟ କରି ନିରାଶ ହେବା ଉଚିତ ନୁହେଁ।

୩୩- ଚଉରାଶୀ ଲକ୍ଷ ଯୋନି ଭୋଗ ହେବା ପରେ ବହୁ କଷ୍ଟରେ ଏହି ମନୁଷ୍ୟ ଶରୀର ଆମକୁ ମିଳିଅଛି। ତେଣୁ ମନୁଷ୍ୟ ଜନ୍ମର ବାସ୍ତବିକ ଉଦ୍ଦେଶ୍ୟ ବୁଝି ଜଗତର ମିଥ୍ୟା ପ୍ରପଞ୍ଚକୁ ତ୍ୟାଗ କରିବା ଉଚିତ।

୩୪- ଶରୀର, ମନ, ଧନଦ୍ୱାରା ସେବା କରିବା ବିଷୟ—

(୧) ଗୋଟିଏ ଦିନ ଭଗବାନ୍‌ଙ୍କ ଭଜନ କରିବା (ଶରୀର),

(୨) ଗୋଟିଏ ମିନିଟ ମନ ଲଗାଇ ଭଗବାନ୍‌ଙ୍କୁ ସ୍ମରଣ କରିବା (ମନ),

(୩) ଦଶ ହଜାର ଟଙ୍କା ଲଗାଇବା (ନିଷ୍କାମ ଧନ)—

ଏହି ତିନୋଟିର ଫଳ ସମାନ ଅଟେ।

୩୫- ମନ ଯେଉଁ ଯେଉଁ ଆଡକୁ ଯାଏ, ସେହି ସେହିଠାରେ ଭଗବାନ୍‌ଙ୍କ ସ୍ୱରୂପକୁ ସ୍ମରଣ କରିବାର ଅଭ୍ୟାସ ଆବଶ୍ୟକ।

୩୬- ମନ ଯେଉଁ ଯେଉଁ ଆଡକୁ ଯାଏ, ସେହି ସେହି ସ୍ଥାନରୁ ମନକୁ ଟାଣି ଟାଣି ଭଗବାନ୍‌ଙ୍କ ସ୍ୱରୂପରେ ଲଗାଇବା ଉଚିତ।

୩୭- ସଂସାର, ଶରୀର ଓ ଭୋଗ—ଏସବୁ କ୍ଷଣଭଙ୍ଗୁର ଅଟେ। ଦେଖୁ ଦେଖୁ ନାଶ ହୋଇଯାଏ। ଯଦି ମୂର୍ଖତା କାରଣରୁ ଏଗୁଡ଼ିକୁ କେହି ସତ୍ୟ ମନେ କରେ ତଥାପି ଏଥିରେ ଟିକିଏ ହେଲେ ସୁଖ ନ ଥାଏ। ଯାହାକୁ ଏଗୁଡ଼ିକ ସୁଖରୂପେ ପ୍ରତୀୟମାନ ହୁଏ, ସେ ଯଦି ବିଗ୍ଭର କରି ଦେଖେ ସେଥିରେ ଦୁଃଖ ଓ ଶୋକର ଭଣ୍ଡାର ଭରିଥାଏ।

୩୮- ମନ୍ତ୍ରଜପକାରୀ ବିଷ୍ଣୁଭକ୍ତପାଇଁ ଏକାନ୍ତରେ **"ଓଁ ନମୋ ଭଗବତେ**

**ବାସୁଦେବାୟ**" ଏବଂ ସର୍ବଦା "ରାମ" ନାମ ଜପ କରିବା ଉତ୍ତମ ଅଟେ। ଯାହାର ଭକ୍ତି ଶିବଙ୍କଠାରେ ଥାଏ, ସେମାନେ ଏକାନ୍ତରେ "**ଓଁ ନମଃ ଶିବାୟ**" ଏବଂ ସର୍ବଦା "ଶିବ" ନାମ ଜପ କରିବା ଉତ୍ତମ ଅଟେ।

୩୯- ସମୟ ବିତିଯାଉଅଛି। ଯିଏ ସମୟକୁ ଅମୂଲ୍ୟ ଜାଣିପାରିବ, ସେ ଏକ ମୁହୂର୍ତ୍ତ ମଧ୍ୟ ବ୍ୟର୍ଥ କାର୍ଯ୍ୟରେ ନଷ୍ଟ କରିବ ନାହିଁ। ଭଗବତ୍-ଚିନ୍ତନ ବିନା ଯେ କୌଣସି ଅନ୍ୟକାମରେ ସମୟ ବିତାଇଲେ ତାହା ବ୍ୟର୍ଥ ହୁଏ।

୪୦- ସମୟ ବଡ ଅମୂଲ୍ୟ ଅଟେ। ଏ ପ୍ରକାର ସୁଯୋଗ ମିଳିବା ବଡ କଠିନ ଅଟେ। ଯିଏ ଏପରି ହୃଦୟଙ୍ଗମ କରେ, ସେ ନିଜ ସମୟକୁ ଅମୂଲ୍ୟ କାମରେ ହିଁ ଲଗାଏ।

୪୧- ଭଜନ ବିନା କୌଣସି ଉପାୟ ନାହିଁ।

୪୨- ସତ୍‌ସଙ୍ଗ, ପ୍ରେମ ଓ ପୁରୁଷାର୍ଥର ଅଭାବରୁ ଭଜନ ହୁଏ ନାହିଁ।

୪୩- ପୁରୁଷାର୍ଥହୀନ ପୁରୁଷକୁ ଭଗବାନ୍ ମଧ୍ୟ ଉଦ୍ଧାର କରି ପାରନ୍ତି ନାହିଁ।

୪୪- ଯେଉଁମାନେ ପ୍ରଭୁଙ୍କୁ ନିରାକାର ରୂପେ ଭକ୍ତି କରନ୍ତି, ସେମାନଙ୍କ ପାଇଁ "ଓଁ" ମନ୍ତ୍ରର ଜପ ଉତ୍ତମ ଅଟେ।

୪୫- ମାନ, ବଡିମା ଆଦି କାମନାକୁ ଜୟ କରିଥିବା ପୁରୁଷ ଦୁର୍ଲଭ ଅଟନ୍ତି।

୪୬- କେତେବେଳେ ହେଲେ ଏହି କଳ୍ପିତ ସଂସ୍କାରର ସତ୍ତା ଉପରେ ବିଶ୍ୱାସ କରିବା ଉଚିତ ନୁହେଁ। ଏହି ଖେଳକୁ ଯେଉଁ ମନୁଷ୍ୟ ସତ୍ୟ ମଣି ନିଏ, ସେ ଠକି ଯାଏ।

୪୭- ସମୟ ଅମୂଲ୍ୟ ବୋଲି ଜାଣିବା ଉଚିତ। ଏପରି ଜାଣିଥିବା ବ୍ୟକ୍ତି ଏକ ପଲକ ବ୍ୟର୍ଥକାର୍ଯ୍ୟରେ ବିତାଇବ ନାହିଁ। ଯିଏ ମିଥ୍ୟା ଓ ବୃଥା କାମରେ ସମୟ ବିତାଏ, ସେ ସମୟର ମୂଲ୍ୟ ବୁଝି ନାହିଁ।

୪୮- ପ୍ରାଣୀମାନଙ୍କୁ ଏ ସଂସାରରେ ସୁଖ ତ ଦେଖିବାକୁ ମିଳେ ନାହିଁ। ପୁଣି ଏମାନେ ଏ ସଂସାରରେ ବାଟବଣା ହୋଇ ବୁଲୁଛନ୍ତି କାହିଁକି? ମୂର୍ଖତା ଓ ଅଜ୍ଞାନତା କାରଣରୁ ପ୍ରାଣୀ ସଂସାରରେ ବାଟବଣା ହୋଇ ବୁଲୁଛି। ସେ ଭୁଲବଶତଃ ସଂସାରକୁ ସୁଖମୟ ମନେ କରିଅଛି। ମୃଗତୃଷ୍ଣାର ଜଳ ପରି ସଂସାରରେ ମିଥ୍ୟାରୂପୀ ସୁଖ ପ୍ରତୀୟମାନ ହେଉଅଛି। ଏହାଦ୍ୱାରା ଭ୍ରମରେ ପଡି ମୃଗପରି ଏଣେ ତେଣେ ଘୂରି ବୁଲୁଛି।

୪୯- ଆରାମ, ସ୍ୱାଦ ଓ ବିଳାସ ଆଦି ଇନ୍ଦ୍ରିୟଗୁଡିକର ଯାବତୀୟ ଭୋଗ ବିଷବତ୍ ତ୍ୟାଗ କରିବା ଉଚିତ। ସଂସାରର ସମସ୍ତ ଭୋଗ-ବିଳାସ ମିଥ୍ୟା ଅଟେ। ଯଦି ତାହାକୁ ମିଥ୍ୟା ନ ମଣୁଛ, ତେବେ ତାହା ନିଶ୍ଚିତରୂପେ କ୍ଷଣଭଙ୍ଗୁର ଓ ପରିଶେଷରେ ଦୁଃଖଦାୟକ ହିଁ ଅଟେ। ଏହିପରି ବୁଝି ଭୋଗରୁ ଦୂରେଇ ରହିବା ଉଚିତ। ଏହି ବିଷୟ ଭୋଗ କଲ୍ୟାଣମାର୍ଗ ପ୍ରତି ହାନିକାରକ ଅଟେ। ଏହିପରି ଭାବି ତାହାକୁ ମନରୁ ପୋଛି ଦେବା ଉଚିତ।

୫୦- ଶୁଦ୍ଧ ଆୟୁର୍ବେଦ ଔଷଧ ସେବନ କରିବା ଉଚିତ। ଡାକ୍ତରୀ ଔଷଧ ପ୍ରାଣ ଗ୍ଲିଗଲେ ମଧ୍ୟ ସେବନ କରିବା ଉଚିତ ନୁହେଁ। ବାପା ମାଆ କହିଲେ ମଧ୍ୟ ତାହା ସେବନ କରିବ ନାହିଁ। କାରଣ—ତ୍ୟାଜ୍ୟ ବସ୍ତୁ କେବେ ହେଲେ ଗ୍ରାହ୍ୟ ନୁହେଁ।

୫୧- ଭଗବାନ୍‌ଙ୍କ ବିନା ଇଚ୍ଛାରେ କୌଣସି କର୍ମ ହୁଏ ନାହିଁ। ତାଙ୍କ ଆଜ୍ଞା ବିନା ଏକ ପତ୍ର ମଧ୍ୟ ହଲି ପାରେ ନାହିଁ। ଯିଏ ଏହିପରି ବୁଝିଥାଏ ସେ ମାଲିକର ପ୍ରସନ୍ନତାରେ ପ୍ରସନ୍ନ ହୋଇ ସର୍ବଦା ଆନନ୍ଦରେ ମଗ୍ନ ରହେ।

୫୨- ଚିନ୍ତା, ଶୋକ, ଭୟ କଦାପି କରିବା ଉଚିତ ନୁହେଁ। ଯେଉଁ ମନୁଷ୍ୟ ଏହା କରେ, ସେ ମୂର୍ଖ ଅଟେ।

୫୩- ସାଂସାରିକ ଭୋଗ-ବିଳାସ, ଧନ, ସ୍ତ୍ରୀ ଓ ପୁତ୍ରାଦିର ବୃଦ୍ଧି ଦେଖି ଯିଏ ପ୍ରସନ୍ନ ହୁଏ, ସେ ମଧ୍ୟ ମୂର୍ଖ ଅଟେ ଓ ସାଂସାରିକ ବସ୍ତୁଗୁଡିକର ହାନି ଦେଖି ଯିଏ ଚିନ୍ତା କରେ, ସେ ମଧ୍ୟ ମୂର୍ଖ ଅଟେ।

୫୪- ଆରାମ, ମଉଜ, ଶୋକ ଓ ବିଳାସ ଆଦି ସଂସାରର ସକଳ ଭୋଗାସକ୍ତି ମନରୁ ତ୍ୟାଗ କରିବା ଉଚିତ। ଏପରି କଲେ ହିଁ ସୁଖ ସମ୍ଭବପର ହୁଏ।

୫୫- ଭଗବାନ୍‌ଙ୍କ ଭକ୍ତ ଏକ ପ୍ରକାର ନିପୁଣ ବୈଦ୍ୟ ଅଟେ। ବେଦ, ଶାସ୍ତ୍ର ଓ ଭକ୍ତି ସମ୍ବନ୍ଧୀୟ ଗ୍ରନ୍ଥଗୁଡିକ କବିରାଜୀ ଶାସ୍ତ୍ର ଅଟେ। ଉତ୍ତମ କର୍ମ ତଥା ଉତ୍ତମ ଆଚରଣ ସୁପଥ୍ୟ ଅଟେ ଓ ପାପାଚରଣ କୁପଥ୍ୟ ଅଟେ।

୫୬- ସମୟକୁ ମୂଲ୍ୟବାନ୍ ମନେ କରିବା ଉଚିତ। ସମୟର ଅମୂଲ୍ୟତାର ରହସ୍ୟ ବୁଝିବା ପରେ ଆଉ କିଛି ବୁଝିବା ବାକି ରହେ ନାହିଁ।

୫୭- କେବଳ ସତ୍ତ୍ୱଗୁଣୀ ବୃତ୍ତିଦ୍ୱାରା କଲ୍ୟାଣ ହୁଏ ନାହିଁ, ଯେପରି ସତ୍ୟଯୁଗରେ ମଧ୍ୟ କଲ୍ୟାଣ ସାଧନାଦ୍ୱାରା ହିଁ ହୁଏ।

୫୮- ଯେପରି ରେଲଷ୍ଟେସନରେ ଟିକେଟ କିଣି ଗାଡିରେ ବସିବା ପାଇଁ ଅପେକ୍ଷା କରାଯାଏ, ସେହିପରି ସବୁକାମ ଶେଷ କରି ପ୍ରସ୍ତୁତ ରହିବାକୁ ହେବ। ତେବେ ଆଉ କୌଣସି ଚିନ୍ତା ରହିବ ନାହିଁ।

୫୯- ଯିଏ ମୃତ୍ୟୁକୁ ପ୍ରତିକ୍ଷଣ ସମ୍ମୁଖରେ ଦଣ୍ଡାୟମାନ ହେବା ଦେଖେ, ଯେବେ ଗ୍ରହିଁବ, ତେବେ ନେଇଯିବ। ଏହିପ୍ରକାର ଯିଏ ପ୍ରସ୍ତୁତ ରହେ, ସେ କୃତକୃତ୍ୟ ହୁଏ।

୬୦- ଯିଏ ପ୍ରତିକ୍ଷଣ ସଂସାରକୁ ମୁଠେଇ ଧରିଛି, ତାହାଦ୍ୱାରା ଭଗବାନ୍‌ଙ୍କ ଚିନ୍ତନ କିପରି ହୋଇପାରିବ?

୬୧- ଅନିତ୍ୟ ବସ୍ତୁପାଇଁ ନିତ୍ୟ ବସ୍ତୁକୁ ତ୍ୟାଗ କରୁଥିବା ପୁରୁଷପରି ଆଉ କେହି ମୂର୍ଖ ନାହାନ୍ତି।

୬୨- ଯେଉଁ ସାଧନ ନିରନ୍ତର ବିଶେଷ କାଳ ପର୍ଯ୍ୟନ୍ତ ଆଦର ପୂର୍ବକ କରାଯାଏ, ତାହା ମହତ୍ତ୍ୱପୂର୍ଣ୍ଣ ହୁଏ।

୬୩- ସାଧୁକୁ କନ୍ୟାଦାନ କଲେ ଉଭୟ ନର୍କଗାମୀ ହୁଅନ୍ତି। ତାମସିକ ଦାନ ନେଇଥିବା ଓ ଦେଇଥିବା ବ୍ୟକ୍ତି ଉଭୟ ନର୍କଗାମୀ ହୁଅନ୍ତି। କୌଣସି କଂସେଇକୁ ଗୋଦାନ କଲେ ଯେପରି ଫଳ ହୁଏ ସେହିପରି।

୬୪- ଗ୍ରହଣ ସମୟରେ କନ୍ୟାଦାନ କର ନାହିଁ। ସେହି ସମୟରେ ଭୋକିଲାକୁ ଅନ୍ନଦାନ କରାଯାଏ।

୬୫- ଗାଈର ଦୁଧ, ଘିଅ ଓ ଖୁଆ ଆଦି ସାତ୍ତ୍ୱିକ ଖାଦ୍ୟ ଅଟେ ତଥା ମଇଁଷି ଓ ଛେଳି ଦୁଧାଦି ୨ ନମ୍ବର ଅଟେ।

୬୬- ଏକ ମହତ୍ତ୍ୱପୂର୍ଣ୍ଣ କଥା କୁହାଯାଉଅଛି, ଯାହାକୁ ମାନିଲେ ତୁମର କଲ୍ୟାଣ ହେବ—

ଯାହା କିଛି ପୁଣ୍ୟକର୍ମ କରାଯାଇଅଛି, ତାହା ସବୁ ପରମାତ୍ମାଙ୍କୁ ଅର୍ପଣ କରିଦେଲେ ତାହା ଉପରେ ପଞ୍ଚକାମର ପ୍ରଭାବ ପଡେ ନାହିଁ। ଯେତେ କର୍ମ ହୋଇ ସାରିଛି, ସେଗୁଡିକୁ ଭଗବାନ୍‌ଙ୍କୁ ଅର୍ପଣ କରାଯାଇଅଛି ଏବଂ ଆଗକୁ ଯାହା କରିବ, ତାହା ଗୀତା ଅଧ୍ୟାୟ ୧୨ ଶ୍ଳୋକ ୧୦ ଅନୁସାରେ ଭଗବଦର୍ଥ କର। ଯଦି ଭଗବଦର୍ଥ କର୍ମ କରି ନ ପାର, ତେବେ ତାହା ଗୀତା ଅଧ୍ୟାୟ ୧୨ ଶ୍ଳୋକ ୧୧ ଅନୁସାରେ ଭଗବଦର୍ପଣ କରିଦିଅ। ଭଗବଦର୍ଥ କର୍ମ କଲେ ଗୀତା ଅଧ୍ୟାୟ ୯ ଶ୍ଳୋକ ୨୮ ଅନୁସାରେ ଶୁଭାଶୁଭକର୍ମରୁ ମୁକ୍ତି ମିଳିଯିବ।

୬୭- କର୍ମ ଅର୍ପଣ ଏହିପରି କରିପାର—

(୧) ମନଦ୍ୱାରା ଆଜି ପର୍ଯ୍ୟନ୍ତ ଯାହା କିଛି ଶୁଭକର୍ମ କରାଯାଇଅଛି, ତାହା ସବୁ ପୂର୍ଣ୍ଣତଃ ଆପଣଙ୍କ ପ୍ରେରଣାରୁ ହୋଇଅଛି ଓ ତାହା ଆପଣଙ୍କୁ ଅର୍ପଣ କରାଯାଇଅଛି । ମୁଁ ସେଗୁଡିକର ଫଳ ଆଦୌ ଗ୍ରହୁଁ ନାହିଁ । ଯେଉଁ ସବୁ ଦୁଷ୍କର୍ମ କରାଯାଇଅଛି, ତାହାର ଫଳାଫଳ ମୋତେ ଭୋଗିବାକୁ ଦିଅ କିମ୍ବା କ୍ଷମା କରିଦିଅ ।

(୨) ସୁକର୍ମ ଭଗବାନ୍‌ଙ୍କୁ ଅର୍ପଣ କରିଦେବା ପରେ ଦୁଷ୍କର୍ମର ଫଳ ତାହାକୁ ଭୋଗିବାକୁ ପଡେ ନାହିଁ ।

**ପ୍ରଶ୍ନ**- ସାଧକ ତାହାର ସକଳ କର୍ମ ଭଗବାନ୍‌ଙ୍କୁ ଅର୍ପଣ କରିଦେବା ପରେ ପୁଣି ଆସକ୍ତିଜନିତ କାରଣରୁ ତାହାଦ୍ୱାରା ଯଦି ଶାସ୍ତ୍ରବିରୁଦ୍ଧ କର୍ମ ହୁଏ, ସେ କ'ଣ କରିବ ?

**ଉତ୍ତର**- ତୁମଦ୍ୱାରା ହେଉଥିବା କର୍ମଗୁଡ଼ିକ ନିୟମିତରୂପେ ଭଗବାନ୍‌ଙ୍କୁ ଅର୍ପଣ କରିବା ଅଭ୍ୟାସ କଲେ ଶାସ୍ତ୍ରବିରୁଦ୍ଧ କର୍ମ ସ୍ୱତଃ ତୁମଦ୍ୱାରା ସମ୍ପାଦିତ ହେବା ବନ୍ଦ ହୋଇଯିବ । ଅନ୍ୟପକ୍ଷରେ ଯଦି କେହି ଜାଣି ଶୁଣି ପାପ କରେ ଓ ତାହାକୁ ଭଗବାନ୍‌ଙ୍କୁ ଅର୍ପଣ କରିଦିଏ, ତେବେ ତାହାର ଫଳ ଭୋଗିବାକୁ ହିଁ ପଡିବ ।

୬୮- ସାଧନା ବୃଦ୍ଧି କର, କିନ୍ତୁ କର୍ମ ତ୍ୟାଗ କର ନାହିଁ । ସାଧନା ଧୀରେ ଧୀରେ ବୃଦ୍ଧି କର ।

୬୯- ଆରାମଠାରୁ ଯିଏ ଯେତେ ଦୂରରେ ରହେ, ଭଗବାନ୍‌ଙ୍କର ସେ ସେତେ ନିକଟରେ ଥାଏ ।

୭୦- ନାସ୍ତିକ ମଧ୍ୟ ନିଜ ତ୍ୟାଗ ପାଇଁ ଆଦୃତ ହୁଏ, ଏହା ହିଁ ତ୍ୟାଗର ମହିମା ଅଟେ ।

୭୧- କଳିଯୁଗରେ ବର୍ତ୍ତମାନ ସଂନ୍ୟାସ-ଆଶ୍ରମ ସୁଗମତା ପୂର୍ଣ୍ଣ ନୁହେଁ ।

୭୨- ଏକମାତ୍ର ଗୃହସ୍ଥାଶ୍ରମରେ ହିଁ ବିନା ଚିନ୍ତାରେ ଭଜନ-ଧ୍ୟାନ କରାଯାଇପାରେ ।

୭୩- ମୁଁ କିଏ, ମୁଁ କେଉଁଠାରୁ ଆସିଛି, କ'ଣ କରୁଛି, କ'ଣ କରିବା ଉଚିତ ? ମୁଁ ପରମାତ୍ମାଙ୍କର ଅଂଶ ଅଟେ । ଲକ୍ଷ ଲକ୍ଷ ଯୋନି ଦେଇ ସଂସାର ଚକ୍ରରେ ବୁଲି ବୁଲି ଆସିଅଛି। ନିଜ ସ୍ୱରୂପକୁ ଚିହ୍ନିବା ମୋର କର୍ତ୍ତବ୍ୟ ଅଟେ । ଏହି କଥାଗୁଡ଼ିକୁ ସର୍ବଦା ବିଗ୍ଭର କର ।

୭୪- ଯେଉଁ କଥା ଆତ୍ମାପାଇଁ ଯୁକ୍ତିସଙ୍ଗତ ଓ ହିତକାରୀ, ତାହା ସ୍ଥିର କରି ତାହାକୁ ଦୃଢ଼ତାର ସହିତ କାର୍ଯ୍ୟରେ ପରିଣତ କର। ତାହାଦ୍ୱାରା ନିମ୍ନଲିଖିତ ଲାଭ ପ୍ରାପ୍ତ ହେବ—ପ୍ରତ୍ୟକ୍ଷ ରୂପେ ପରମାତ୍ମା ପ୍ରାପ୍ତ ହୋଇପାରନ୍ତି ଏବଂ ଯେଉଁ ବ୍ୟକ୍ତିମାନଙ୍କୁ ପରମାତ୍ମା ଏକ ସୁଦୂର ସ୍ଥିତ ବା ପୂର୍ଣ୍ଣ ଅଦୃଶ୍ୟ ସତ୍ତାରୂପେ ଅନୁଭବ ହେଉଥାଏ, ଏପରି ସାଧନା କଲେ ସେମାନଙ୍କୁ ସେ ପ୍ରତିଲୋମରେ ପ୍ରତି ପତ୍ରାଦିରେ ଦୃଶ୍ୟମାନ ହେବେ, ସଂସାର ଦୁଃଖମୟ ପରିବର୍ତ୍ତେ ସୁଖମୟ ହୋଇଯିବ, ଭଗବତ୍ ସ୍ୱରୂପରେ ନିଷ୍ଠା ରଖିଥିବା ସାଧକକୁ ପରମଶାନ୍ତିର ସାମ୍ରାଜ୍ୟ ଲାଭ ହୋଇଯିବ । ଚତୁଃପାର୍ଶ୍ୱରେ ଶାନ୍ତି ବିରାଜମାନ କରିବ ।

୭୫- ଆଶ୍ରୟ, ଶିକ୍ଷା, ଉପଦେଶ, ପ୍ରେରଣା, ଆଜ୍ଞା, ବରଦାନ ଏକ ଅନ୍ୟଠାରୁ ବଳବାନ୍ ଅଟେ। ପ୍ରେରଣା ଅନୁସାରେ ସାଧନା କଲେ ବରଦାନ ସ୍ୱରୂପ ଫଳ ପ୍ରାପ୍ତ ହୁଏ।

୭୬- କୌଣସି ପୁରୁଷ ବିଷୟରେ ଚିନ୍ତା କଲେ ତାହାର ଗୁଣାବଳୀ ଆମକୁ ପ୍ରଭାବିତ କରେ। ସେହିପରି ଭଗବାନ୍ ଓ ତାଙ୍କର ଭକ୍ତମାନଙ୍କ ବିଷୟରେ ବିଚାର କଲେ ତାଙ୍କର ଗୁଣ ଆମ ହୃଦୟରେ ସଂଚାରିତ ହୁଏ।

୭୭- ଅଗ୍ନି, ଗାଈ, ବ୍ରାହ୍ମଣ, ତୁଳସୀ ଓ ଗଙ୍ଗା—ଏମାନଙ୍କୁ ଦେବତା ପରି ଆଦର ଓ ଭକ୍ତି କରିବା ଉଚିତ।

୭୮- ପରମାତ୍ମାଙ୍କୁ ପ୍ରତିକ୍ଷଣ ମନେ ପକାଇବା ଉଚିତ।

୭୯- ମନକୁ ପଚାରିବା ଦରକାର ମୁଁ ଏ ସଂସାରକୁ ଆସି କ'ଣ କଲି ଓ କ'ଣ କରିବା ଉଚିତ। ଏହିପରି ଯଦି ବାକି ସମୟ ବିତିଯାଏ, ତେବେ ତାହା କିପରି ସାର୍ଥକ ହେବ ? ସମୟକୁ ଅମୂଲ୍ୟ କର୍ମରେ ଲଗାଇବା ଉଚିତ।

୮୦- ଭଗବାନ୍‌ଙ୍କ ଦର୍ଶନପାଇଁ ଅଭିଳାଷ ମଧ୍ୟ ରଖିବା ଉଚିତ ନୁହେଁ । ଯଦି ଦର୍ଶନ ଇଚ୍ଛା ନ ରଖିଲେ ସାଧନାରେ ଢିଲା ହୁଏ, ତେବେ ଭଗବାନ୍‌ଙ୍କ ସହ ମିଳନର ଇଚ୍ଛା ରଖିବା ଉଚିତ।

୮୧- ମନୁଷ୍ୟ ନିଜକୁ ଏପରି ଗଢ଼ିବା ଉଚିତ ଯେପରି ତାର ଜୀବିତାବସ୍ଥାରେ ଭଗବତ୍‌ପ୍ରାପ୍ତି ହୋଇଯିବ ।

୮୨- ବୁଦ୍ଧିକୁ କୁଶାଗ୍ର ଏବଂ ତୀକ୍ଷ୍ଣ କରିବାପାଇଁ ସତ୍‌ପୁରୁଷମାନଙ୍କର ସଙ୍ଗ ଏବଂ ସତ୍ ଶାସ୍ତ୍ରଗୁଡିକର ବିଚାର କରିବା ଉଚିତ । ନିଷ୍କାମ କର୍ମଯୋଗ ଓ ଉପାସନାଦ୍ୱାରା ପବିତ୍ର ହେଲେ ବୁଦ୍ଧି ତୀକ୍ଷ୍ଣ ହୁଏ ଓ ସ୍ମରଣ ଶକ୍ତି ବଢ଼ିଯାଏ । ବ୍ରହ୍ମଚର୍ଯ୍ୟପାଳନ ଏ ଦିଗରେ ଅଧିକ ସହାୟକ ହୁଏ ।

୮୩- ଶୁଦ୍ଧ ଆହାର-ବିହାର ଏବଂ ବ୍ରହ୍ମଚର୍ଯ୍ୟ ପାଳନ ତଥା ଯୋଗ ସାଧନଦ୍ୱାରା ଆୟୁ ବଢ଼ିବା ସମ୍ଭବ ହୁଏ ।

୮୪- ଯିଏ ଭଗବାନ୍‌ଙ୍କୁ ଛାଡି ସଂସାର ଚିନ୍ତାରେ ରହେ ସେ ମୂର୍ଖ ଅଟେ ।

୮୫- ପବିତ୍ର ମନରେ ଭଜନକୁ ସର୍ବୋତ୍ତମ ମାନି ନେଲେ ଅନ୍ୟାନ୍ୟ ଚିନ୍ତା ଆପେ ଆପେ ହ୍ରାସ ପାଏ, ତାହା ମଧ୍ୟ ଅଳ୍ପଦିନପାଇଁ ହେବ । ସାଂସାରିକ ଚିନ୍ତା ଯେତେବେଳେ ଆପଣଙ୍କୁ ଭଲ ନ ଲାଗିବ, ସେତେବେଳେ ଭଗବାନ୍‌ଙ୍କ ଚିନ୍ତନ ହିଁ ଅଧିକ ହେବ ।

୮୬- ସଂସାର ଚିନ୍ତା ଆମପାଇଁ ବଡ ବାଧକ ଅଟେ । ଯିଏ ସଂସାର ଚିନ୍ତା କରୁ କରୁ ମରେ ତାକୁ ସଂସାର ହିଁ ପ୍ରାପ୍ତ ହୁଏ । ଯିଏ ଭଗବତ୍ ଚିନ୍ତା କରୁ କରୁ ମରେ ତାକୁ ଭଗବାନ୍ ହିଁ ପ୍ରାପ୍ତ ହୁଅନ୍ତି । ଯିଏ ଏହି ପାର୍ଥକ୍ୟ ବୁଝିନେବ, ସେ ସାଂସାରିକ ଚିନ୍ତନ ସହନ କରି ପାରେ ନାହିଁ ।

୮୭- ସାଂସାରିକ ଚିନ୍ତନର ଦଂଶନପୀଡା ଯେତେବେଳେ ମନୁଷ୍ୟ ଠିକ୍‌ରୂପେ ହୃଦୟଙ୍ଗମ କରେ, ସେତେବେଳେ ତାହାର ଚେତା ଆସେ । ଆମେ ଯଦି ଅଧିକ ଦଂଶନ ସହିଗ୍ଲଲିବା, ତେବେ ଆମକୁ ଅଧିକ ଦଂଶନ ମିଳିବ ।

୮୮- ସମୟର ମୂଲ୍ୟ ଜାଣିବା ପରେ ସଫଳତାରେ ବିଳମ୍ବ ହୁଏ ନାହିଁ ।

୮୯- ମିଥ୍ୟା କହିଲେ ନିଶ୍ଚିତରୂପେ ପାପ ହୁଏ ଏବଂ କୌଣସି ଲାଭ ହୁଏ ନାହିଁ । ଅତଃ ସତ୍ୟ କହିବା ହିଁ ଉଚିତ । ସେଥିପାଇଁ ଗାଳି ଶୁଣିବାକୁ ହେଲେ ମଧ୍ୟ ସେଥିରେ କୌଣସି ଅସୁବିଧା ନାହିଁ ।

୯୦- ଅର୍ଜୁନ ଭଗବାନ୍‌ଙ୍କର ଉତ୍ତମ ଭକ୍ତ ଥିଲେ । ଭଗବାନ୍‌ଙ୍କୁ ଚିହ୍ନିବାରେ ତାଙ୍କର କିଛି ତ୍ରୁଟି ଥିଲା । ଏପରି ଭକ୍ତଙ୍କର ମଧ୍ୟ ବଂଶ ମୋହ ଆସିଲା, ମାୟା ଏପରି ଯେ ତାହା ଅଦ୍ଭୁତ ଘଟଣା ଘଟାଇ ଦିଏ ।

୯୧- ପ୍ରଶ୍ନୋତ୍ତର—

୧. ପ୍ରଶ୍ନ– କାମନା ତ୍ୟାଗ ପରେ ଆଉ କିଛି ବାକି ରହିଯାଏ କି?
ଉତ୍ତର–ଅନେକ କିଛି ସମାଧାନ ହୋଇଯାଏ, ତଥାପି କିଛି ବାକି ରହେ (ଗୀତା ୨ । ୭୧) ।

୨. ପ୍ରଶ୍ନ–ସର୍ପ ଆଦି ହିଂସ୍ରକ ପ୍ରାଣୀଙ୍କୁ ମାରିଲେ ପାପ ହୁଏ ନା ପୁଣ୍ୟ ହୁଏ ?

ଉତ୍ତର– କ୍ଷତ୍ରିୟପାଇଁ ପୁଣ୍ୟ ଅଟେ, ଅନ୍ୟମାନଙ୍କ ପାଇଁ ପାପ ଅଟେ ।

୩. ପ୍ରଶ୍ନ–ଯଦି ସେ ଦଂଶନ କରିବାକୁ ଆସେ ?

ଉତ୍ତର–ମାରିବାରେ ପାପ ହୁଏ ନାହିଁ ।

୯୨- ଯେଉଁ ବ୍ୟକ୍ତିମାନେ ଧର୍ମକାର୍ଯ୍ୟପାଇଁ ଅର୍ଥଦାନ କରନ୍ତି, ସେମାନେ ନିଜର ନାମ ବା ପ୍ରଶଂସାପାଇଁ ଦେଲେ ପାପ ହୁଏ, କାରଣ ସେ ଧନ ତାହାର ନିଜର ନୁହେଁ ।

୯୩- ମଠ, ଗୋଶାଳା ଆଦିରୁ ଲବ୍ଧ ଧନ ସେହି ମଠ ଓ ଗୋଶାଳା ଆଦିରେ ଖର୍ଚ୍ଚ ହେବା ଉଚିତ, ଅନ୍ୟତ୍ର ଲଗାଇବା ପାପ ଅଟେ ।

୯୪- ଶ୍ରୀ ମଙ୍ଗଳନାଥଜୀ ମହାରାଜ ଗୋରଖପୁରରେ କହିଥିଲେ— ନିଷ୍କପଟ, ନିରଭିମାନ ଓ ନିଃସ୍ୱାର୍ଥ ଭାବରେ ଭଗବାନ୍‌ଙ୍କ ଭଜନ ଓ ଧ୍ୟାନ କଲେ ବହୁତ ଶୀଘ୍ର ଫଳ ମିଳେ ।

୯୫- ମାନ ଓ ବଡିମାରୁ ନିଜକୁ ରକ୍ଷା କରିବା ଉଚିତ । ଅଭିମାନଠାରୁ ବଡିମା ଅଧିକ ସୂକ୍ଷ୍ମ ଅଟେ, ଏହା ପ୍ରତି ଅଧିକ ଧ୍ୟାନ ଦେବା ଉଚିତ ।

୯୬- ବିଶ୍ୱାସୀ ଓ ପରିଶ୍ରମୀ ହେବା ଉଚିତ । ଏହିପ୍ରକାର ହେଲେ ସାଂସାରିକ କ୍ଷେତ୍ରରେ ଯେପରି ସଫଳତା ମିଳେ, ସେହିପରି ପରମାର୍ଥ ଦିଗରେ ମଧ୍ୟ ଯଥେଷ୍ଟ ସଫଳତା ମିଳିଥାଏ ।

୯୭- ଯୋଗଦର୍ଶନ ଅନୁଯାୟୀ ସାଧନା କାର୍ଯ୍ୟରେ ପ୍ରତିଦିନ ଘଣ୍ଟେ ଦୁଇ ଘଣ୍ଟା ଲଗାଇବା ଉଚିତ ଯେପରି ଲୋକେ ନୂଆକାମ ଶିଖିବା ସମୟରେ ଲଗାନ୍ତି ।

୯୮- ନିଜର ଅତ୍ୟନ୍ତ ପ୍ରିୟତମ ବସ୍ତୁ ମଧ୍ୟରେ ଭଗବାନ୍‌ଙ୍କୁ ଦେଖିବା ଅଭ୍ୟାସ କଲେ ମନ ସ୍ଥିର ହୋଇଯାଏ ।

୯୯- ଯିଏ ସାମାନ୍ୟ ଭଜନ-ଧ୍ୟାନରେ ଭଗବାନ୍‌ଙ୍କ ଦର୍ଶନ ଆଶା କରେ, ସେ ଭଜନର ରହସ୍ୟ ବୁଝି ନାହିଁ । ସେ ତ ବୋଝବୁହା ଶ୍ରମିକ ସଦୃଶ ଅଟେ । ଯେପରି ବୋଝବୁହା ଶ୍ରମିକକୁ ତାର ପାଉଣା ମିଳେ, ସେହିପରି ତାକୁ ଭଗବଦ୍-ବିଷୟକ ଧନ କିଛି ମିଳେ ଅର୍ଥାତ୍ ଆଧ୍ୟାତ୍ମିକ ଉନ୍ନତି ହୁଏ ।

୧୦୦- ଯେଉଁମାନଙ୍କୁ ଭଗବାନ୍‌ଙ୍କ ଭଜନ ଧ୍ୟାନରେ ସ୍ୱାଦ ଆସିଲାଣି, ସେମାନଙ୍କୁ ସେଥିରେ ସାମାନ୍ୟ ଆନନ୍ଦ ମିଳେ । ବାସ୍ତବରେ ସେମାନେ ଭଜନ, ଧ୍ୟାନର ମର୍ମ ବୁଝିଲେଣି । ଯେଉଁମାନଙ୍କୁ ଭଜନ, ଧ୍ୟାନରୁ ପୂର୍ଣ୍ଣ ଆନନ୍ଦ

ମିଳିଲାଣି, ସେମାନେ ଏପରିକି ଭଗବତ୍‌ପ୍ରାପ୍ତି ମଧ୍ୟ ଚାହାନ୍ତି ନାହିଁ। ବରଂ ଭଜନ, ଧ୍ୟାନ ଉତ୍ତରୋତ୍ତର ବଢୁ, ତାହା ହିଁ ସେମାନେ ଚାହାଁନ୍ତି। ଯଦି ବାରମ୍ବାର ଜନ୍ମ ନେବାକୁ ପଡେ, ତେବେ ମଧ୍ୟ ଏହି କାମରେ ହିଁ ମଗ୍ନ ରହିବାକୁ ଚାହାନ୍ତି।

**ନାଥ ଏକ ବର ମାଗଉଁ ରାମ କୃପା କରି ଦେହୁ।**
**ଜନ୍ମ ଜନ୍ମ ପ୍ରଭୁ ପଦ କମଲ କବହୁଁ ଘଟୈ ଜନି ନେହୁ ॥**

ମୃତ୍ୟୁ ହେବା ପରେ ମାତା, ପିତା, ପୁତ୍ର, ଧନ କେହି କାମରେ ଆସିବ ନାହିଁ, ଏହି ବିଶ୍ୱାସ ଯଦି ତୁମ ମନରେ ଦୃଢ଼ୀଭୂତ ହୋଇଗଲାଣି, ତେବେ ସମୟକୁ କାହିଁକି ନଷ୍ଟ କରୁଅଛ ?

ସାଧନାର ଉପାୟ ଏହିପରି ବାହାର କର । ୨ ମାଳା ସକାଳେ, ୨ ମାଳା ଦ୍ୱିପହରରେ, ୨ ମାଳା ରାତ୍ରିରେ—ଏହିପରି ଧୀରେ ଧୀରେ କିଛି କିଛି ସମୟ ବାହାର କରି ଜପର ଅଭ୍ୟାସ ବଢାଇବା ଉଚିତ ।

୧୦୧- ସଦାବ୍ରତ ବଣ୍ଟନକାରୀ ପରି ଭଗବତ୍‌ପ୍ରାପ୍ତିର ମାର୍ଗ ଅନ୍ୟମାନଙ୍କୁ ଦର୍ଶାଇ ସେମାନଙ୍କୁ ମୁକ୍ତ କରିବାର ଇଚ୍ଛା ପୋଷଣ କରିବା ଉଚିତ। ନିଜେ ଅର୍ଜନ କରି ଭୋଜନ କରିବାକୁ ଚେଷ୍ଟା କରିବା ଉଚିତ, ଭିକାରୀ ସଦୃଶ ନୁହେଁ। ଅର୍ଥାତ୍ ସାଧନ କରିବା ପରେ ହିଁ ଭଗବତ୍‌ପ୍ରାପ୍ତି ଆଶା କରିବା ଉଚିତ।

୧୦୨- ପ୍ରବଚକମାନେ ସଦାଚାରୀ ଓ ବିଦ୍ୱାନ୍ ହେଲେ ଶ୍ରୋତାମାନଙ୍କ ଉପରେ ଭଲ ପ୍ରଭାବ ପଡେ। ସଦାଚାର ମଧ୍ୟରେ ନିଃସ୍ୱାର୍ଥଭାବ ଅତ୍ୟନ୍ତ ଆବଶ୍ୟକ ।

୧୦୩- ମର୍ମପୂର୍ଣ୍ଣ କଥା—ପାଞ୍ଚଜଣ ଲୋକଙ୍କୁ ବେକାର ମନେ କରି ଉପେକ୍ଷିତ ମନରେ ଯଦି ଭୋଜନ ଦିଆଯାଏ, ତାହାର କୌଣସି ଫଳ ମିଳେ ନାହିଁ। ଯଦି ହସି ହସି ସେମାନଙ୍କୁ ଭଗବାନ୍‌ଙ୍କ ସ୍ୱରୂପ ମନେ କରି ଭୋଜନ ଦିଆଯାଏ, ତେବେ ଆପଣ ଈଶ୍ୱରଙ୍କୁ ହିଁ ଭୋଜନ କରାଇବା ସଙ୍ଗେ ସମାନ। ଯଦି ସକାମଭାବ ପୋଷଣ ହୋଇଥାଏ, ତାହା ହେଲେ ସ୍ୱର୍ଗଲାଭ ହୁଏ ଏବଂ ନିଷ୍କାମଭାବ ଥିଲେ ତ ମୁକ୍ତି ମିଳେ।

୧୦୪- ଭାବ ତୀବ୍ର ହେଲେ ଅଧିକ ଲାଭ ହୁଏ।

୧୦୫- ମନୁଷ୍ୟ ଜନ୍ମ ପାଇ ଦୁଷ୍କର୍ମ ଅପେକ୍ଷା ସୁକର୍ମ ନେଇ ଯିବା ଶ୍ରେୟସ୍କର।

୧୦୬- ସବୁଠାରୁ ବଡ କଥା—ଯେଉଁ ମନୁଷ୍ୟ ସମୟର ମୂଲ୍ୟ ଜାଣି ପାରିଛି, ସେ ଧନ୍ୟ ଅଟେ। ପରମାତ୍ମପ୍ରାପ୍ତି ମୁହୂର୍ତ୍ତକ ମଧ୍ୟରେ ହୋଇପାରେ ।

ସେହି ମୁହୂର୍ତ୍ତ ବର୍ତ୍ତମାନ ଯଦି ପଦାର୍ପଣ କରେ, ତେବେ ବର୍ତ୍ତମାନ ହିଁ ପରମାତ୍ମାଙ୍କ ପ୍ରାପ୍ତି ହେବ । ସେହି ମୁହୂର୍ତ୍ତ କିପରି ? ଯାହାଙ୍କୁ ପରମାତ୍ମା ମିଳେ, ସେ କେବଳ ଜାଣନ୍ତି । ସେ ମୁହୂର୍ତ୍ତ ହଠାତ୍ ଆସି ଯାଇପାରେ ।

୧୦୭- ଯଦି କେବେ ଏହି ବିଷୟରେ ଶିକ୍ଷା ଶୁଣିବାକୁ ମିଳିଯାଏ ଏବଂ ତାହା ତୁମର ହୃଦ୍‌ବୋଧ ହୋଇଯାଏ, ତେବେ ସେହି ମୁହୂର୍ତ୍ତରେ ପରମାତ୍ମପ୍ରାପ୍ତି ହୋଇଯାଏ ।

୧୦୮- ନିଜ ଧର୍ମ ପାଳନ କଲେ କଲ୍ୟାଣ ନିଶ୍ଚିତରୂପେ ହୁଏ (—ଗୁରୁ ଗୋବିନ୍ଦ ସିଂହ) ।

୧୦୯- ପ୍ରତ୍ୟେକ ସମୟରେ ଉଦ୍ୟମଶୀଳ ହେବା ଉଚିତ । ୫ ମିନିଟ ମଧ୍ୟ ବେକାର ଯେପରି ନ ଯାଏ । ଉତ୍ତରୋତ୍ତର ତୁମେ ନିଜ ସମୟକୁ ମୂଲ୍ୟବାନ୍ କର । ବେକାର ଲୋକମାନଙ୍କ ସହିତ ବାର୍ତ୍ତାଳାପ କରିବା ଉଚିତ ନୁହେଁ । ସେଥିରେ ସ୍ୱାର୍ଥ କିମ୍ବା ପରମାର୍ଥ ନ ଥାଏ । କର୍ମହୀନ ବା ବେକାର ରହ ନାହିଁ ।

୧୧୦- ତିନି ପ୍ରକାରର ଅର୍ଜନ ଉତ୍ତମ ଅଟେ—(କ) ମାନସିକ ସ୍ତରରେ ଭଜନ ଓ ଧ୍ୟାନ, (ଖ) ବାଣୀଦ୍ୱାରା ସତ୍ୟ ଓ ପ୍ରିୟ ବଚନ ଏବଂ ନାମ ଜପ (ଗ) ଶରୀରଦ୍ୱାରା ପରୋପକାର ।

୧୧୧- ନିମ୍ନଲିଖିତମତେ ସମୟ ଅତିବାହିତ କଲେ ଶୀଘ୍ର ହିଁ କଲ୍ୟାଣ ସାଧିତ ହୁଏ । ଏଗୁଡ଼ିକ ଶାସ୍ତ୍ରଗୁଡ଼ିକର ସାର କଥା ଅଟେ—

(କ) ସହନଶୀଳ ହେବା, କଠିନରୁ କଠିନ ବିପଦକୁ ମଧ୍ୟ ହସି ହସି ସହିବା ।

(ଖ) ଯାବତୀୟ ପ୍ରାଣୀମାନଙ୍କ ଉପରେ ଦୟା କରିବା ।

(ଗ) ନିରନ୍ତର ଭଗବତ୍‌ଚିନ୍ତନ କରିବା ।

ଏହି ତିନୋଟି କଥା ପାଳନ କଲେ ମନୁଷ୍ୟ ଆନନ୍ଦର ପ୍ରତିମୂର୍ତ୍ତିରେ ପରିଣତ ହୁଏ ଓ ଆନନ୍ଦର ଉତ୍ସରେ ପରିଣତ ହୋଇ ଅନ୍ୟମାନଙ୍କୁ ଆନନ୍ଦ ବାଣ୍ଟି ପାରେ ।

୧୧୨- ମହାତ୍ମାମାନଙ୍କ ସଙ୍ଗ ଲାଭ କରି ଜ୍ଞାନଯୋଗ, ଧ୍ୟାନଯୋଗ, ଭକ୍ତିଯୋଗ, କର୍ମଯୋଗ ଆଦିର ତତ୍ତ୍ୱ ବୁଝି ନିଜ ରୁଚି ଓ ଶକ୍ତି ଅନୁଯାୟୀ ମହାତ୍ମାଙ୍କ ନିର୍ଦ୍ଦେଶରେ କୌଣସି ଏକ ଉପାୟକୁ ବିବେକ, ବୈରାଗ୍ୟ ଏବଂ ଧୈର୍ଯ୍ୟଯୁକ୍ତ ବୁଦ୍ଧିଦ୍ୱାରା ଆଜୀବନ ତତ୍ପରତା ସହିତ ଅଭ୍ୟାସ କରିବା ଉଚିତ ।

୧୧୩- ଶାସ୍ତ୍ରୋକ୍ତ ବିଭିନ୍ନ ମାର୍ଗ ମଧ୍ୟରୁ କୌଣସି ମାର୍ଗକୁ ସ୍ଥିର କରି ପ୍ରାଣପଣେ ପ୍ରଯତ୍ନ କରିବା ଉଚିତ। ଭଗବତ୍‌କୃପା ହେଲେ ବିଜୟ ସୁନିଶ୍ଚିତ ଅଟେ। ସଫଳତା ମିଳିବ ହିଁ ମିଳିବ।

୧୧୪- ପରମାତ୍ମା ପ୍ରାପ୍ତିର ଉପାୟଗୁଡ଼ିକ ସୁଗମ ହେଲେ ମଧ୍ୟ ତାହାର ସୁଗମତାରେ ବିଶ୍ୱାସ କଲେ ତାହା ସୁଗମ ହୁଏ ଓ ଦୁର୍ଗମ ମନେ କଲେ ତାହା ଦୁର୍ଗମ ହୁଏ। ଶ୍ରଦ୍ଧାପୂର୍ବକ ତତ୍ତ୍ୱ ଓ ରହସ୍ୟ ବୁଝି ସାଧନ କଲେ ସମସ୍ତ ଉପାୟ ସହଜ ହୁଏ।

୧୧୫- ଭଗବାନ୍ ଓ ସନ୍ଥମାନଙ୍କର ଆଶ୍ରୟ ନେଇ ଭଜନ କଲେ ତାହା ଅବଶ୍ୟ ସଫଳ ହୁଏ। ସେଥିରେ କୁସଙ୍ଗ, ଆସକ୍ତି ଓ ସଞ୍ଚିତ ବାଧା ଦୂର ହୋଇଯାଏ ଏବଂ ସାଧନରେ ଉତ୍ତରୋତ୍ତର ଉନ୍ନତି ହୁଏ। ଶ୍ରଦ୍ଧା ଓ ପ୍ରେମ ବୃଦ୍ଧି ହୁଏ। ବାଧାବିଘ୍ନ ଆଉ ବେଶୀ ସମୟ ରହିପାରେ ନାହିଁ।

୧୧୬- ପ୍ରଭୁଙ୍କଠାରେ ଶ୍ରଦ୍ଧା ଓ ପ୍ରେମ ବଢୁ, ତାଙ୍କର ଚିନ୍ତନ ଅବିରତ ଚାଲୁ ଏକ ପଲକ ନିମିତ୍ତ ତାଙ୍କୁ ବିସ୍ମରଣ ନ କରୁଁ। ଏହି ଲକ୍ଷ୍ୟ ସର୍ବଦା ସ୍ମରଣ ରହୁ।

୧୧୭- ଜ୍ଞାନ କିମ୍ବା ପ୍ରେମ କୌଣସି ଏକ ମାର୍ଗକୁ ଅବଲମ୍ବନ କରି ଉତ୍ତରୋତ୍ତର ଉନ୍ନତି ପଥରେ ଅଗ୍ରସର ହୁଅ । କାଲି ଅପେକ୍ଷା ଆଜି ସାଧନାରେ କିଛି ନା କିଛି ଉନ୍ନତି ହେଉ। ଏହିପରି ନିରନ୍ତର ଉନ୍ନତି କରି ଚାଲ। ଚଲା-ବୁଲା, ବସିବା-ଉଠିବା, କୌଣସି ସମୟରେ ମଧ୍ୟ ଏକ ମିନିଟପାଇଁ ଭଗବାନ୍‌ଙ୍କୁ ଭୁଲି ଯାଅ ନାହିଁ। ଭଗବାନ୍ କହନ୍ତି—

**ତସ୍ମାତ୍ ସର୍ବେଷୁ କାଲେଷୁ ମାମନୁସ୍ମର ଯୁଧ୍ୟ ଚ।** (ଗୀତା ୮।୭)

୧୧୮- ଶୁଦ୍ଧ ତଥା ନିର୍ମଳ ସୁଖ ପାଇବାର ସରଳ ଏବଂ ସୁଲଭ ଉପାୟ ପରମାତ୍ମାଙ୍କ ସ୍ୱରୂପକୁ ନିରନ୍ତର ଚିନ୍ତନ କରିବା।

୧୧୯- ଜୀବନର ଅମୂଲ୍ୟ ସମୟର ଏକ କ୍ଷଣ ମଧ୍ୟ ଭଗବତ୍ ସ୍ମରଣବିହୀନ ନ ହେଉ । ଜୀବନକାଳ ମଧ୍ୟରେ ଯେପରି ଅଭ୍ୟାସ କରାଯାଇ ଥାଏ, ଅନ୍ତିମକାଳରେ ମଧ୍ୟ ତାହାର ସ୍ମୃତି ରହିଯାଏ ଏବଂ ଏହି ସ୍ମୃତି ଅନୁସାରେ ତାହାର ଗତି ହୁଏ।

୧୨୦- ମନ ଭଜନ-ଧ୍ୟାନ ପ୍ରତି ଆକୃଷ୍ଟ ନ ହେଲେ ମଧ୍ୟ ତାହାକୁ ଏଥିରେ ପ୍ରବୃତ୍ତ କରିବାପାଇଁ ଆମର ଉଦ୍ୟମ ଜାରି ରହୁ। ଧୀରେ ଧୀରେ ଏଥିରେ ରୁଚି ସୃଷ୍ଟି ହୋଇ ଭଜନ-ଧ୍ୟାନ ସୁଚାରୁରୂପେ ଚାଲେ।

୧୨୧- ସାଧକ କେବେହେଲେ ଭାବିବା ଉଚିତ ନୁହେଁ ଯେ ତାକୁ ଦିନେ ଏହି ସାଧନା ଛାଡିବାକୁ ହେବ। ସେ ବୁଝିବା ଉଚିତ ଯେ ଏହି ସାଧନା ହିଁ ମୋର ପରମ ଧନ, ପରମ କର୍ତ୍ତବ୍ୟ, ପରମ ସୁଖ ଓ ମୋ ପ୍ରାଣର ପରମ ଆଧାର ଅଟେ।

୧୨୨- ଯିଏ ଭାବେ ଯେ ମୋର ପରମାତ୍ମା ଜ୍ଞାନ ହେବା ପରେ ଆଉ ସାଧନାର ଆବଶ୍ୟକତା ନାହିଁ, ତାହା ଭୁଲ ଅଟେ। ଯେଉଁ ସାଧନାଦ୍ୱାରା ଅନ୍ତଃକରଣ ଶାନ୍ତି ଲାଭ କରେ, ସେ କାହିଁକି ତାହା ଛାଡିବ।

୧୨୩- ଶ୍ରଦ୍ଧା ଓ ଭକ୍ତି ସହିତ ସାଧନା କଲେ ସାଧକର ଦୁର୍ଗୁଣ, ପାପ ଓ ଦୁଃଖ ଆଦି ସମ୍ପୂର୍ଣ୍ଣ ନାଶ ହୁଏ ଏବଂ ସେ କୃତକୃତ୍ୟ ହୋଇ ସର୍ବଦା ପରମ ଆନନ୍ଦ ଓ ଶାନ୍ତି ପ୍ରାପ୍ତ ହୁଏ।

୧୨୪- ପରମେଶ୍ୱର ଓ ତାଙ୍କର ପ୍ରାପ୍ତିରେ ଶ୍ରଦ୍ଧାର ଅଭାବ ହେଲେ ସାଧନା କରିବାରେ ଉତ୍ସାହ ରହେ ନାହିଁ।

୧୨୫- କଲ୍ୟାଣ ଲାଭ କରିବାର ଶହ ଶହ ଉପାୟ ଅଛି । ସେଗୁଡିକରୁ କିଛି ନା କିଛି ସାଧନା ନ କଲେ କଲ୍ୟାଣ କେଉଁଠୁ ମିଳିବ।

୧୨୬- ଆମର ସୁଖଲାଭ କରିବାରେ ତିନୋଟି ବାଧକ ଶତ୍ରୁ ଅଛନ୍ତି । ଏହି କାରଣରୁ ଆମେ ସୁଖ ନିକଟରେ ପହଞ୍ଚି ପାରୁ ନାହୁଁ। ସେଗୁଡ଼ିକ ହେଲା— ମଳ, ବିକ୍ଷେପ ଓ ଆବରଣ। ମନର ମଳିନତା ହିଁ ମଳ ଅଟେ। ମନର ଚଞ୍ଚଳତା ହିଁ ବିକ୍ଷେପ ଅଟେ ଓ ଅଜ୍ଞାନର ପରଦା ଆବରଣ ଅଟେ। ଯେପର୍ଯ୍ୟନ୍ତ ଏହି ତିନୋଟିର ନାଶ ହୋଇ ନାହିଁ, ସେପର୍ଯ୍ୟନ୍ତ ଯଥାର୍ଥ ସୁଖ ପାଇବା ଅସମ୍ଭବ ଅଟେ।

୧୨୭- ମଳ-ଦୋଷ ନାଶପାଇଁ କେତେଗୁଡିଏ ଉପାୟ କୁହାଯାଇଛି। ତାହା ମଧ୍ୟରୁ ପ୍ରଧାନ ଦୁଇଟି—ଭଗବାନ୍‌ଙ୍କ ନାମ ଜପ ଏବଂ ନିଷ୍କାମ କର୍ମ। ସାଧନାର ସଫଳତା ମନ ଓ ବୁଦ୍ଧିର ପବିତ୍ରତା ଓ ଦୃଢତା ଉପରେ ହିଁ ଆଧାରିତ। ସାଧନାର ବୃଦ୍ଧିରେ କ୍ରମେ କ୍ରମେ ଯେପରି ଅନ୍ତଃକରଣର ପବିତ୍ରତା ଓ ଏକାଗ୍ରତା ବଢେ, ସେମିତି କ୍ରମେ କ୍ରମେ ନିର୍ମଳ ଆନନ୍ଦର ଉତ୍ତରୋତ୍ତର ବୃଦ୍ଧି ହୁଏ। ନିଷ୍ଠାପର ସାଧନାଦ୍ୱାରା ଏହା ସମ୍ଭବ ହୁଏ । ମନ ଓ ଇନ୍ଦ୍ରିୟଗୁଡିକ ଶୁଦ୍ଧ ଓ ସ୍ଥିରତା ଲାଭ କରି ଭଗବତ୍‌ତତ୍ତ୍ୱରେ ପ୍ରବେଶ କରିଗଲେ କଥା ସରିଲା। ଯେପର୍ଯ୍ୟନ୍ତ ସେଗୁଡିକ ବଶ ହୋଇ ନାହାନ୍ତି, ଭଗବଦ୍‌ପ୍ରାପ୍ତି ଅସମ୍ଭବ।

୧୨୮- ଭଗବତ୍‌ପ୍ରାପ୍ତି ତଥା ପରମ ସୁଖ-ଶାନ୍ତିର ପ୍ରାପ୍ତି ନିମିତ୍ତ ସାଧନା କରିବାରେ କିଞ୍ଚିତ୍ ମାତ୍ର ବିଳମ୍ବ କରିବା ଉଚିତ ନୁହେଁ। ଏହା ହିଁ ମନୁଷ୍ୟ ଜନ୍ମର ପରମ କର୍ତ୍ତବ୍ୟ। ଏହାହିଁ ସବୁଠାରୁ ବଡ ଓ ସତ୍‌ସୁଖ ଅଟେ।

୧୨୯- ସାଧକ ବୁଝିପାରେ ଯେ ମୋର ସାଧନାରେ ବାଧା ହେଉଥିବା ଆସକ୍ତି ଏବଂ ଅଜ୍ଞାନ ଆଦି ଦୋଷ କେବେ ଦୂରୀଭୂତ ହେବ ଏବଂ କେବେ ମୁଁ ପରମ ଧନ ପରମାତ୍ମାଙ୍କୁ ପାଇପାରିବି। ଯେତେ ଏହି କ୍ରିୟାରେ ବିଳମ୍ବ ହୁଏ, ତାହାର ବ୍ୟାକୁଳତା ଓ ଉତ୍କଣ୍ଠା ସେହି ପରିମାଣରେ ବଢିଚାଲେ ଓ ସେ ବିଳମ୍ବକୁ ସହିପାରେ ନାହିଁ।

୧୩୦- ଇଚ୍ଛା କରିବାମାତ୍ରେ କେବଳ ଭଗବାନ୍ ହିଁ ପ୍ରାପ୍ତ ହୁଅନ୍ତି। ପୃଥିବୀରେ ଲୋକ ନାନାପ୍ରକାର ପଦାର୍ଥ ପାଇବାପାଇଁ କାମନା କରନ୍ତି । ମାତ୍ର ସେଗୁଡିକ ଇଚ୍ଛା କଲେ ମିଳେ ନାହିଁ। ଇଚ୍ଛା, ପ୍ରାରବ୍ଧର ସଂଯୋଗ ଓ ପ୍ରଯତ୍ନ ହେଲେ ଯାଇ ଭୌତିକ ପଦାର୍ଥ ମିଳେ। ମାତ୍ର ଭଗବତ୍‌ପ୍ରାପ୍ତି ଇଚ୍ଛାଦ୍ୱାରା କେବଳ ସମ୍ଭବ ହୁଏ। ଇଚ୍ଛାହେବା ପରେ ଯେଉଁ ପ୍ରଯତ୍ନ ଆବଶ୍ୟକ, ତାହା ଭଗବାନ୍ ନିଜ ତରଫରୁ କରାଇ ନିଅନ୍ତି। ସାଧକ କେବଳ ନିମିତ୍ତମାତ୍ର ହୋଇଯାଏ।

୧୩୧- ଧନ ଚାହିଁଲେ ମଧ୍ୟ ପ୍ରାରବ୍ଧରେ ନ ଥିଲେ ପ୍ରାପ୍ତ ହୁଏ ନାହିଁ, ପ୍ରାରବ୍ଧରେ ଥିଲେ ତାହା ମିଳେ। କିନ୍ତୁ ଭଗବାନ୍ ତ ଚାହିଁଲା ମାତ୍ରେ ମିଳନ୍ତି, କାରଣ ଭଗବାନ୍ ଧନପରି ଜଡ ପଦାର୍ଥ ନୁହଁନ୍ତି। ଆମେ ଧନ ପାଇବାକୁ ଯେପରି ଇଚ୍ଛା କରୁ, ଧନ ଜଡ଼ ହୋଇଥିବାରୁ ଆମକୁ ପାଇବାକୁ ସେପରି ଇଚ୍ଛା କରିପାରେ ନାହିଁ; ମାତ୍ର ଭଗବାନ୍‌ଙ୍କୁ ଯେ ପାଇବାକୁ ଚାହେଁ, ସେ ନିଜେ ତାକୁ ପାଇବାକୁ ବ୍ୟାକୁଳିତ ହୁଅନ୍ତି।

୧୩୨- ଭକ୍ତ ତାଙ୍କୁ ପାଇବାପାଇଁ ଇଚ୍ଛା କଲେ ସେ ଭକ୍ତକୁ ପାଇବାକୁ ଇଚ୍ଛା କରନ୍ତି।

୧୩୩- ସାଧନା ପଥରେ ଭଗବାନ୍ ପଦେ ପଦେ ଆମକୁ ସାହାଯ୍ୟ କରନ୍ତି।

୧୩୪- ପ୍ରତ୍ୟେକ ସାଧକ ନିଜକୁ ନିଜେ ପରୀକ୍ଷା କରିବା ଉଚିତ । ସୂକ୍ଷ୍ମଦୃଷ୍ଟିରେ ଦେଖିଲେ ନିଜ ଭିତରେ ଛପିଥିବା ଦୋଷ ମଧ୍ୟ ପ୍ରତ୍ୟକ୍ଷ ହୁଏ ।

୧୩୫- ମାନ, ବଡ଼ିମା, ପ୍ରତିଷ୍ଠା ଏବଂ ଇହ କିମ୍ବା ପରଲୋକର କୌଣସି ପଦାର୍ଥ ପାଇବା ପାଇଁ ଇଚ୍ଛା ସାଧକ ମନରେ ନ ରୁହେ। ତ୍ରୈଲୋକ୍ୟର ରାଜ୍ୟପାଇଁ ମଧ୍ୟ ମନରେ ଲାଳସା ନ ରହୁ।

୧୩୬- ସ୍ୱୟଂ ଭଗବାନ୍ ପ୍ରସନ୍ନ ହୋଇ ଭୋଗ୍ୟ ପଦାର୍ଥ ତୁମକୁ ପ୍ରଦାନ କଲେ ମଧ୍ୟ ତାହା ଗ୍ରହଣ କର ନାହିଁ। ଯଦି ଭଗବାନ୍ ତୁମ ପ୍ରତି ରୋଷ ପ୍ରକାଶ କରନ୍ତି, ତଥାପି ମଧ୍ୟ ଅବିଚଳିତ ରହ। ନିଜ ସ୍ୱାର୍ଥ ସମ୍ବନ୍ଧରେ କୌଣସି କଥା ଶୁଣିଲେ ତାହା ପ୍ରତି ବୈରାଗ୍ୟ ପ୍ରଦର୍ଶନ କର।

୧୩୭- ନିଜ ହୃଦୟର ଗୂଢ଼ ତଥା ମର୍ମପୂର୍ଣ୍ଣ ବିଷୟ ଯେକୌଣସି ବ୍ୟକ୍ତିକୁ କୁହ ନାହିଁ ।

୧୩୮- ଗୁପ୍ତ ପାପ ଓ ଗୁପ୍ତ ପୁଣ୍ୟ ଉଭୟର ଫଳ ଅଧିକ ଅଟେ। ଗୁପ୍ତ ସାଧନାଦ୍ୱାରା ଈଶ୍ୱରଙ୍କ ପ୍ରତି ପ୍ରେମ ବୃଦ୍ଧି ପାଏ। ହୃଦୟରେ ଶାନ୍ତି ଓ ପ୍ରସନ୍ନତା ଜାତ ହୁଏ।

୧୩୯- ଯେଉଁ ସାଧନାଗୁଡିକ କୁହାଗଲା, ତାକୁ କଠିନ ମନେ କର ନାହିଁ। ଦୁର୍ଗୁଣ ଓ ଦୁରାଗ୍ରହ କୌଣସି ଉପାୟରେ ତୁମକୁ ଆକ୍ରାନ୍ତ କରି ନ ପାରେ, ଏହିପରି ଦୃଢ ସାହସ ରଖ । ଆମେ ସାବଧାନ ରହିଲେ ଚୋର ଆମ ଘରେ କିପରି ପ୍ରବେଶ କରିବ ?

୧୪୦- ମୁଁ ଯଥେଷ୍ଟ ଉଦ୍ୟମ କରୁଛି—ଏପରି ଭାବିବା ଭୁଲ ଅଟେ। ତୁମେ ସାଧାରଣରୂପେ ଚେଷ୍ଟା କରି ତାହାକୁ ଅଧିକ ମନେ ମନେ ଭାବି ନେଉଛ।

୧୪୧- ସାଧକ ମନରେ ଏହା ଦୃଢ଼ୀଭୂତ ହେବା ଦରକାର ଯେ କର୍ତ୍ତବ୍ୟ ପରାୟଣ ଓ ଭଗବତ୍ ଶରଣାଗତ ବ୍ୟକ୍ତିପାଇଁ କୌଣସି କାର୍ଯ୍ୟ ଦୁଃସାଧ୍ୟ ନୁହେଁ। ସେ ବଡରୁ ବଡ କାର୍ଯ୍ୟ ସହଜରେ କରିପାରେ।

୧୪୨- ଆତ୍ମକଲ୍ୟାଣ ଶକ୍ତି ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ନିଶ୍ଚିତରୂପେ ରହିଅଛି। ଏହି ଆତ୍ମଶକ୍ତିର ଅଭାବ ଭାବିବା ଅର୍ଥ ହିଁ ନିଜକୁ ନିଜେ ନିମ୍ନଗାମୀ କରିବା।

୧୪୩- ଉତ୍ସାହୀ ବ୍ୟକ୍ତିପାଇଁ କଷ୍ଟସାଧ୍ୟ କାର୍ଯ୍ୟ ସହଜସାଧ୍ୟ ହୋଇଯାଏ ।

୧୪୪- ବିଶ୍ୱାସ ହିଁ ବିଷନାଶକ ତଥା ସାଧନାର ନିଷ୍ଠାବର୍ଦ୍ଧକ ଅଟେ।

୧୪୫- ସାଧ୍ୟ ବରଂ ହାତଛଡା ହୋଇଯାଉ ମାତ୍ର ସାଧନାରେ କୋହଳ ନ ହେଉ, ଏପରି ଦୃଢ଼ନିଷ୍ଠ ବ୍ୟକ୍ତି ହାତରୁ ସାଧନା ତଥା ସାଧ୍ୟ କେବେହେଲେ ଛାଡିଯାଏ ନାହିଁ। ସାଧ୍ୟ ବାସ୍ତବରେ ତାହାର ଶ୍ରଦ୍ଧା ଓ ପ୍ରେମକାରଣରୁ ତାହା ପଛେ ପଛେ ଅନୁସରଣ କରେ। ସାଧନା ନିଷ୍ଠାର ଏହାହିଁ ମହିମା ଅଟେ।

୧୪୬- ପରମ ଶାନ୍ତି, ପରମ ଆନନ୍ଦ ଓ ପରମ ପ୍ରେମରୂପ ପରମାତ୍ମା

ପ୍ରାପ୍ତିର ସାଧନାରେ ଏହି ଜୀବନକୁ ବିତାଇବା ପାଇଁ ପ୍ରାଣପର୍ଯ୍ୟନ୍ତ ତତ୍ପରତା ଦେଖାଇବା ଉଚିତ।

୧୪୭- ଯିଏ ପରମାତ୍ମା ପ୍ରାପ୍ତି କରିବାକୁ ବ୍ୟାକୁଳିତ, ତାହାକୁ ବାସ୍ତବିକ ସାଧନା ତତ୍ତ୍ୱ ବୁଝିବାକୁ ହିଁ ପଡିବ।

୧୪୮- ଦୁଃଖରୂପ ସଂସାରରୁ ରକ୍ଷା ପାଇବାର ସର୍ବୋତ୍ତମ ଉପାୟ ପରମାତ୍ମାଙ୍କ ଶରଣାପନ୍ନ ହୋଇ ବିବେକ ଓ ବୈରାଗ୍ୟଯୁକ୍ତ ବୁଦ୍ଧିଦ୍ୱାରା ଶୋକ, ଦୁଃଖ, ଭୟ ଓ ଚିନ୍ତାକୁ ତ୍ୟାଗ କରିବା।

୧୪୯- ଶରଣାଗତି ଭାବକୁ ଆଦର୍ଶ ମନେ କରି ଯେତେଦୂର ସମ୍ଭବ ଭଜନ, ଧ୍ୟାନ, ସେବା, ସତ୍‌ସଙ୍ଗରେ ହିଁ ନିଜର ସମୟ ବିତାଇବା ପାଇଁ ପ୍ରାଣ ପର୍ଯ୍ୟନ୍ତ ଚେଷ୍ଟା କରିବା ଉଚିତ।



# ସତର୍କତା

୧- ପରମ ଆନନ୍ଦ ପ୍ରାପ୍ତି ହିଁ ମନୁଷ୍ୟ ଜୀବନର ଚରମ ଲକ୍ଷ୍ୟ ଅଟେ । ଏହା ହିଁ କେବଳ ପରମାତ୍ମାଙ୍କଠାରେ ନିହିତ । ଅତଏବ ପରମାତ୍ମା ପ୍ରାପ୍ତି ହିଁ ମନୁଷ୍ୟ ଜୀବନର ଏକମାତ୍ର ଉଦ୍ଦେଶ୍ୟ ଅଟେ ।

୨- ଆଳସ୍ୟ ମଧ୍ୟରେ ଅଦ୍ୟାବଧି ବହୁ ସମୟ ନଷ୍ଟ ହୋଇ ସାରିଲାଣି। ବର୍ତ୍ତମାନ ତ ସଚେତନ ହୋଇଯିବା ଉଚିତ। ମନୁଷ୍ୟ ଜୀବନର ଏକମାତ୍ର ଅମୂଲ୍ୟ ମୁହୂର୍ତ୍ତ ମଧ୍ୟ ବ୍ୟର୍ଥତା ମଧ୍ୟରେ ଅତିବାହିତ ନ ହେବା ଉଚିତ। ବିତିଯାଇଥିବା ସମୟ କୌଣସି ଉପାୟରେ ଫେରି ଆସି ନ ପାରେ। ଅତଏବ ଯଥାସାଧ୍ୟ ଓ ଯଥାଶୀଘ୍ର ସତ୍‌ସଙ୍ଗଦ୍ୱାରା ନିଜର କଲ୍ୟାଣପାଇଁ ସାଧନା ଆରମ୍ଭ ହେବା ଉଚିତ।

୩- ମନୁଷ୍ୟ ଜନ୍ମ ପ୍ରାପ୍ତିଦ୍ୱାରା କୌଣସି ଉତ୍ତମ ଲାଭ ହେବା ଉଚିତ। ଭୋଜନ, ପାନ, ଶୟନ, ମୈଥୁନ ଆଦି ସାଂସାରିକ ଭୋଗଜନିତ ସୁଖ ତ ପଶୁ ଓ କୀଟ ଆଦି ନୀଚ ଯୋନିରେ ମଧ୍ୟ ମିଳିପାରେ । ଯଦି ମନୁଷ୍ୟର ଜୀବନକାଳ ଏହି ସୁଖପ୍ରାପ୍ତିରେ ବିତିଯାଏ ତେବେ ମନୁଷ୍ୟ ଜନ୍ମ ପାଇ ଆମେ କ'ଣ କଲେ?

୪- ପ୍ରକୃତ ସୁଖର ଅନୁଭବ ଯେତେବେଳେ ସାମାନ୍ୟ ପରିମାଣରେ ସାଧକ ଲାଭ କରେ, ତାହାକୁ ସେ ସୁଖ ତୁଳନାରେ ତ୍ରିଲୋକ ପ୍ରାପ୍ତିର ସୁଖ ଅତ୍ୟନ୍ତ ତୁଚ୍ଛ ବୋଧ ହୁଏ।

୫- ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମ ସର୍ବଶକ୍ତିମାନ୍ ଆନନ୍ଦକନ୍ଦ ଭଗବାନ୍‌ଙ୍କ ପ୍ରାପ୍ତି ହିଁ ମନୁଷ୍ୟ ଜୀବନର ପରମ କର୍ତ୍ତବ୍ୟ ଅଟେ। ଇହଲୋକ ଏବଂ ପରଲୋକରେ ଏହା ହିଁ ମହାନ୍, ନିତ୍ୟ ଓ ସତ୍ୟ ସୁଖ ଅଟେ। ଏହାକୁ ଛାଡ଼ି ଅନ୍ୟାନ୍ୟ ଯେତେପ୍ରକାରର ସାଂସାରିକ ସୁଖ ଅଛି, ସେଗୁଡ଼ିକ ପ୍ରକୃତରେ ସୁଖ ନୁହେଁ, କେବଳ ମୋହକାରଣରୁ ସେଗୁଡିକ ସୁଖପରି ପ୍ରତୀୟମାନ ହୁଏ। ବାସ୍ତବରେ ସେଗୁଡ଼ିକ ଦୁଃଖ ହିଁ ଦୁଃଖ ଅଟେ।

୬- ପ୍ରଥମତଃ ଜୀବନକାଳ ହିଁ ସ୍ୱଳ୍ପ ଏବଂ ତାହା ମଧ୍ୟ ଅନିଶ୍ଚିତ ଅଟେ । କେବେ ମୃତ୍ୟୁ ଆସିଯିବ ତାହା ବି ଜଣାନାହିଁ । ଯଦି ଆଜି ମୃତ୍ୟୁ ଆସିଯାଏ ଆମପାଖରେ କେଉଁ ଉପାୟ ଅଛି, ଯାହାଦ୍ୱାରା ତାକୁ ଅଟକାଇ ପାରିବା ? ଯଦି ତାହା ହିଁ କରି ନ ପାରିବା, ତେବେ ଅନାଥପରି ଆମେ ତାର ଶିକାର ହେବା। ତେଣୁ ଯେପର୍ଯ୍ୟନ୍ତ ଶରୀରରେ ପ୍ରାଣ ଅଛି, ଆମେ ନିଜ ସମୟ ଉତ୍ତମରୁ ଉତ୍ତମ କାର୍ଯ୍ୟରେ ଲଗାଇବା ଉଚିତ।

୭- ଶରୀର ଓ କୁଟୁମ୍ବର ଭରଣ ପୋଷଣ ତଥା ଧନ ସଂଗ୍ରହ ଯଦି ସମସ୍ତଙ୍କ ମଙ୍ଗଳପାଇଁ ଉଦ୍ଦିଷ୍ଟ, ତେବେ ତାହା କରିବା ଉଚିତ। ଯଦି ତାହା ଆମକୁ ଅସଲି ସୁଖ ପ୍ରଦାନ କରିବାରେ ନ ଲାଗେ, ତାହା କେବଳ ମୂର୍ଖତା ହିଁ ଅଟେ। ମୃତ୍ୟୁପରେ ଧନ, ସମ୍ପତ୍ତି, କୁଟୁମ୍ବ କଥା ଛାଡ; ତୁମର ଏହି ସୁନ୍ଦର ଶରୀର ସହ ତୁମର କୌଣସି ସମ୍ବନ୍ଧ ରହେ ନାହିଁ। ଆମେ ନିଜ ଶରୀର ଓ ସମ୍ପତ୍ତି ପ୍ରଭୃତିକୁ ଆଉ ସଂସାରର ମଙ୍ଗଳାର୍ଥେ ଲଗାଇ ପାରିବା ନାହିଁ। ତେଣୁ ସେ ସବୁ କାମରେ ଆସିବ ନାହିଁ। ସମ୍ପତ୍ତି ଏଇଠି ରହିଯିବ ଏବଂ ଦେହ ପାଉଁଶ ହୋଇଯିବ।

୮- କ୍ଳେଶ, କର୍ମ ଏବଂ ସକଳ ଦୁଃଖରୁ ମୁକ୍ତି, ଅପାର, ଅକ୍ଷୟ ଏବଂ ସତ୍ ସୁଖର ପ୍ରାପ୍ତି ଏବଂ ପୂର୍ଣ୍ଣ ଜ୍ଞାନର କାରଣ ଏହି ମନୁଷ୍ୟଶରୀର ଚଉରାଶୀ ଲକ୍ଷ ଯୋନିଗୁଡିକଠାରୁ ଶ୍ରେଷ୍ଠ ଅଟେ । ଭକ୍ତି, ଜ୍ଞାନ, ବୈରାଗ୍ୟ, ସଦାଚାର, ମୁକ୍ତି ଓ ଶିକ୍ଷାର ପ୍ରଣାଳୀ ସଦା ପ୍ରଚାର ଓ ପ୍ରସାର କରୁଥିବା ଏହି ଭାରତଭୂମି ସର୍ବୋତ୍ତମ ଅଟେ । ସମଗ୍ର ମତ-ମତାନ୍ତରର ଉଦ୍‌ଗମ ସ୍ଥାନ, ବିଦ୍ୟା, ଶିକ୍ଷା-ସଭ୍ୟତାର ଜନ୍ମଦାତା, ସ୍ୱାର୍ଥତ୍ୟାଗ, ଈଶ୍ୱର ଭକ୍ତି, ଜ୍ଞାନ, କ୍ଷମା, ଦୟା ଆଦି ଗୁଣର ଭଣ୍ଡାର, ସତ୍ୟ, ତପ, ଦାନ ଓ ପରୋପକାର ଆଦି ସଦାଚାରର ସାଗର ହୋଇଥିବା କାରଣରୁ ଏହି ବୈଦିକ ସନାତନ ଧର୍ମ ସର୍ବୋତ୍ତମ ଅଟେ। କେବଳ ଭଗବାନ୍‌ଙ୍କ ଭଜନ ଏବଂ କୀର୍ତ୍ତନ ଦ୍ୱାରା ହିଁ ଅଳ୍ପ ସମୟରେ ଓ ସହଜରେ

କଲ୍ୟାଣ ପ୍ରାପ୍ତ ହେଉଥିବାରୁ କଳିଯୁଗ ସବୁ ଯୁଗ ମଧ୍ୟରେ ଉତ୍ତମ ଅଟେ। ଏହି କଳିକାଳରେ ସକଳ ବର୍ଣ୍ଣ, ଆଶ୍ରମ ଓ ପ୍ରାଣୀମାନଙ୍କୁ ପାଳନ ପୋଷଣ କରୁଥିବା ଗୃହସ୍ଥାଶ୍ରମ ସବୁ ଆଶ୍ରମମାନଙ୍କ ମଧ୍ୟରେ ଉତ୍ତମ ଅଟେ। ଏ ସବୁ ପ୍ରାପ୍ତ ହୋଇଥିବା ସତ୍ତ୍ୱେ ଯିଏ ନିଜର ଆତ୍ମାର ଉଦ୍ଧାର କରି ନ ପାରିଲା, ସେ ମହାନ୍ ପାମର ଏବଂ ମନୁଷ୍ୟରୂପୀ ପଶୁ ହିଁ ଅଟେ।

୯- ସମଗ୍ର ସଂଯୋଗ ଈଶ୍ୱରଙ୍କର ଅପାର ଦୟାରୁ ହିଁ ମିଳେ, କାରଣ ଜୀବମାନଙ୍କ ସଂଖ୍ୟାଦୃଷ୍ଟିରୁ ଯଦି ସୂକ୍ଷ୍ମ ହିସାବ କରାଯାଏ, ତେବେ ଏହି ଜୀବଟିକୁ ପୁଣି ମନୁଷ୍ୟ ଶରୀର ପାଇବାକୁ ହେଲେ ଲକ୍ଷ ଲକ୍ଷ କୋଟି କୋଟି ବର୍ଷ ଲାଗିଯିବ। ବର୍ତ୍ତମାନ ମନୁଷ୍ୟର ଆଚରଣକୁ ଧ୍ୟାନ ଦେଲେ ଏହି ସବୁ କଥା ପ୍ରତୀତ ହୁଏ।

୧୦- ଏପରି କ୍ଷଣିକ, ଅଳ୍ପାୟୁ, ଅନିତ୍ୟ ଏବଂ ଦୁର୍ଲଭ ଶରୀର ପାଇଁ ଯିଏ ନିଜ ଅମୂଲ୍ୟ ସମୟର ଏକ ମୁହୂର୍ତ୍ତ ବ୍ୟର୍ଥତାରେ ଅତିବାହିତ ନ କରେ, ଯାହାର ଶରୀର-ମନ-ଧନ-ଜନ ଓ ସମୟ କେବଳ ସକଳ ଲୋକଙ୍କ କଲ୍ୟାଣପାଇଁ ନିୟୋଜିତ ହୁଏ, ସେହି ବ୍ୟକ୍ତି ଧନ୍ୟ ଅଟେ। ସେ ଦେବତାମାନଙ୍କର ମଧ୍ୟ ପୂଜନୀୟ ଅଟେ।

୧୧- ପ୍ରଥମତଃ ମନୁଷ୍ୟ ଜୀବନ ମିଳିବା କଠିନ ଅଟେ ଏବଂ ଯଦି ତାହା ମିଳିଯାଏ, ତେବେ ଭାରତଭୂମିରେ ଜନ୍ମ ହେବା, କଳିଯୁଗରେ ଜନ୍ମ ହେବା ଓ ବୈଦିକ ସନାତନ ଧର୍ମ ଲାଭ କରିବା ମଧ୍ୟ ଦୁର୍ଲଭ ଅଟେ । ଶାସ୍ତ୍ରଗୁଡ଼ିକର ତତ୍ତ୍ୱ ଓ ରହସ୍ୟ ବ୍ୟାଖ୍ୟାନ କରୁଥିବା ପୁରୁଷମାନଙ୍କର ସଙ୍ଗ ଲାଭ ଏହାଠାରୁ ମଧ୍ୟ ଦୁର୍ଲଭ ଅଟେ । ତେଣୁ ଯେଉଁ ବ୍ୟକ୍ତିମାନଙ୍କୁ ଉପର୍ଯ୍ୟୁକ୍ତ ସଂଯୋଗ ପ୍ରାପ୍ତ ହୋଇଅଛି, ସେମାନେ ଯଦି ଶାନ୍ତି ଓ ପରମ ଆନନ୍ଦଦାୟକ ପରମାତ୍ମାଙ୍କ ପ୍ରାପ୍ତିରୁ ବଞ୍ଚିତ ହୁଅନ୍ତି, ତେବେ ତାଠାରୁ ବଳି ମୂର୍ଖତା କ'ଣ ହୋଇପାରେ ?

୧୨- କ୍ଷଣକୁ କ୍ଷଣ ଆୟୁ କ୍ଷୀଣ ହେଉଅଛି । ପୁଣି ଏପରି ସୁଯୋଗ ଆଉ ଆସିବ ନାହିଁ। ବିତିଯାଉଥିବା ସମୟ ଫେରିବ ନାହିଁ । ତେଣୁ ଏପରି ଅମୂଲ୍ୟ ମନୁଷ୍ୟ ଜୀବନକୁ ବିଷୟ ଭୋଗରେ, ମୋହମାୟାରେ, ଆଳସ୍ୟ ଓ ପ୍ରମାଦରେ ବ୍ୟର୍ଥ ବିତାଇବା ଅନୁଚିତ।

୧୩- ସଂସାରରେ ଏପରି କୌଣସି ଯୋନି ନାହିଁ, ଯାହା ଆମକୁ ନ ମିଳିଛି।

୧୪- "ଯେପର୍ଯ୍ୟନ୍ତ ଏ ଶରୀରରୂପୀ ଘର ସୁସ୍ଥ ଅଛି, ବୃଦ୍ଧାବସ୍ଥା ଆସି ନାହିଁ, ଇନ୍ଦ୍ରିୟମାନେ ଶକ୍ତିଶାଳୀ ଅଛନ୍ତି, ଆୟୁର ମଧ୍ୟ ବିଶେଷ କ୍ଷୟ ଘଟି

ନାହିଁ, ସେହି ସମୟ ମଧ୍ୟରେ ବିଦ୍ୱାନ୍ ପୁରୁଷମାନେ ନିଜର କଲ୍ୟାଣପାଇଁ ପ୍ରଯତ୍ନ କରିଦେବା ଉଚିତ; ନୋଚେତ ଘରେ ନିଆଁ ଲାଗିଗଲା ପରେ କୂଅ ଖୋଳି କି ଲାଭ ହେବ ?''

୧୫- ଏହି ଜୀବନକାଳ ସ୍ୱଳ୍ପ ଓ ମୃତ୍ୟୁ ଆମ ବାଟକୁ ଚ୍ୱହିଁ ରହିଛି, ଖବର ନ ଦେଇ ହଠାତ୍ ସେ ପହଞ୍ଚିଯାଏ । ତେଣୁ ଯେପର୍ଯ୍ୟନ୍ତ ଏ ଶରୀରରେ ପ୍ରାଣ ଅଛି, ଏ ଶରୀର ଉପରେ ତୁମର ଅଧିକାର ଅଛି, ତାହାରି ଭିତରେ ନିଜର କର୍ତ୍ତବ୍ୟ ଶୀଘ୍ରାତିଶୀଘ୍ର ପାଳନ କରି ନେବା ଉଚିତ ।

୧୬- ମହାନ୍ ଐଶ୍ୱର୍ଯ୍ୟଶାଳୀ ମାନ୍ଧାତା ଏବଂ ଯୁଧିଷ୍ଠିର ପରି ଧର୍ମାତ୍ମା ଚକ୍ରବର୍ତ୍ତୀ ରାଜା, ହିରଣ୍ୟକଶିପୁ ପରି ଦୀର୍ଘାୟୁ, ରାବଣ ଓ କୁମ୍ଭକର୍ଣ୍ଣ ପରି ବଳବାନ୍ ପ୍ରତାପଶାଳୀ ଦୈତ୍ୟ, ବରୁଣ, କୁବେର ଓ ଯମରାଜଙ୍କ ପରି ଲୋକପାଳକ ଏବଂ ଇନ୍ଦ୍ରପରି ଦେବତାମାନଙ୍କର ରାଜା ସଂସାରରେ ଜନ୍ମ ହୋଇ ଏହି ଶରୀର ଏବଂ ଐଶ୍ୱର୍ଯ୍ୟକୁ ଏହିଠାରେ ତ୍ୟାଗ କରି ଚ୍ୱଲିଗଲେ । କାହାରି ସହିତ ଟିକିଏ କିଛି ଯାଇ ପାରିଲା ନାହିଁ । ତେଣୁ ଏହି ଶରୀର-ମନ-ଧନ, କୁଟୁମ୍ବ ଏବଂ ଐଶ୍ୱର୍ଯ୍ୟ ଆଦି ସହିତ ସ୍ୱଳ୍ପ ଆୟୁବିଶିଷ୍ଟ ଆମେ ସବୁ ମନୁଷ୍ୟମାନଙ୍କର ସମ୍ବନ୍ଧ କେତେ ଦିନର ?

୧୭- ହଜାର-ହଜାର, ଲକ୍ଷ-ଲକ୍ଷ ବ୍ରହ୍ମା, କୋଟି-କୋଟି ଇନ୍ଦ୍ର ଅବତୀର୍ଣ୍ଣ ହୋଇ ବିଦାୟ ନେଲେଣି ତଥା ଆମ୍ଭମାନଙ୍କର ମଧ୍ୟ ଅନନ୍ତ ଜନ୍ମ ହୋଇସାରିଲାଣି । ଏପରିକି ପୃଥିବୀର ଅଣୁସଂଖ୍ୟା ହୁଏତ ଗଣା ଯାଇପାରିବ, କିନ୍ତୁ ଆମର ଜନ୍ମ କେତେ ଥର ହୋଇଛି ତାହା ଗଣାଯାଇ ପାରିବ ନାହିଁ । ଏହିପରି ଆହୁରି ଲକ୍ଷ ଲକ୍ଷ କୋଟି କୋଟି ଜନ୍ମ ବିତିଗଲେ ମଧ୍ୟ ବିନା ସାଧନାରେ ପରମାତ୍ମପ୍ରାପ୍ତି ହୋଇ ନ ପାରେ ଓ ପରମାତ୍ମପ୍ରାପ୍ତି ବିନା ଏ ବୁଲିବା ମଧ୍ୟ ଶେଷ ହେବ ନାହିଁ ।

୧୮- ପିମ୍ପୁଡ଼ିଠାରୁ ଦେବରାଜ ଇନ୍ଦ୍ରପଦ ଆମେ ଭୋଗ କରିସାରିଲୁଣି । କିନ୍ତୁ ସାଧନା ଅଭାବରୁ ଏ ଜୀବନ-ମୃତ୍ୟୁ ଚକ୍ରରେ ଘୂର୍ଣ୍ଣନ ବନ୍ଦ ହୋଇ ନାହିଁ । ଯେପର୍ଯ୍ୟନ୍ତ ତତ୍ପର ହୋଇ ନିଜର କଲ୍ୟାଣ ନିମିତ୍ତ ସାଧନା ନ କରିବା, ସେ ଘୂର୍ଣ୍ଣନ ପ୍ରକ୍ରିୟା ଚ୍ୱଲିଥିବ ।

୧୯- ଏହି ବିନାଶଶୀଳ, କ୍ଷଣଭଙ୍ଗୁର ତୁଚ୍ଛ ଭୌତିକ ସୁଖକୁ ଦୁଃଖ ଓ ବିଘ୍ନକାରୀ ମନେ କରି ତାହାକୁ ପଦାଘାତପୂର୍ବକ ଅସଲି ସୁଖପାଇଁ ଦୃଢ଼ତାର ସହିତ କଟିବଦ୍ଧ ହୋଇ ପ୍ରାଣ ପର୍ଯ୍ୟନ୍ତ ପ୍ରଯତ୍ନ କରିବା ଉଚିତ । ଏହିପରି ଚେଷ୍ଟା କଲେ ପରମେଶ୍ୱରଙ୍କ କରୁଣାରୁ ତାଙ୍କୁ ପାଇପାରିବ ।

୨୦- କୌଣସି ବ୍ୟକ୍ତି ନିଜର ସ୍ୱପ୍ନରାଜ୍ୟକୁ ଯଦି ବିକିବାକୁ ଚ୍ୱାହେଁ, ତେବେ ତାହାର ମୂଲ୍ୟ ଏକ ପଇସା ବି ହେବ ନାହିଁ, କାରଣ ଜାଗୃତି ପରେ ସେହି ସ୍ୱପ୍ନରାଜ୍ୟର କୌଣସି ନାମ-ଗନ୍ଧ ରହେ ନାହିଁ । ସେହିପରି ପରମାତ୍ମାଙ୍କୁ ପାଇବା ପରେ ଏହି ସଂସାର ଓ ସାଂସାରିକ ସୁଖର ମଧ୍ୟ ନାମ-ଗନ୍ଧ ରହେ ନାହିଁ । ତେଣୁ ଏପରି ଅନନ୍ତ ସୁଖକୁ ଛାଡି ଯେ କ୍ଷଣଭଙ୍ଗୁର ନଷ୍ଟଶୀଳ ମିଥ୍ୟା ସୁଖପାଇଁ ପ୍ରଯତ୍ନ କରେ, ତାହାଠାରୁ ମୂର୍ଖ କିଏ ଅଛି ?

୨୧- ଯେଉଁ ମନୁଷ୍ୟ ନିଜେ ନିଜର ଦୁଃଖର କାରଣ ହୁଏ, ସେ ହିଁ ମୂର୍ଖ ଅଟେ।

୨୨- ନିଜର ବିଚ୍ୱର ଦ୍ୱାରା ବିଷୟଗୁଡିକ ମଧ୍ୟରେ ଯିଏ ଦୁଃଖ ଓ କେବଳ ଦୁଃଖ ହିଁ ଦେଖେ, ସେ ବୁଦ୍ଧିମାନ୍ ଅଟେ ।

୨୩- ସବୁ କଥା ବିଚ୍ୱର କରି ଆମେ ନିଜର ସବୁ ବସ୍ତୁକୁ ଏପରି କାମରେ ଲଗାଇବା, ଯେପରି ପରେ ଅନୁତାପ କରିବାକୁ ନ ପଡେ ।

୨୪- ମନୁଷ୍ୟ ଜନ୍ମ ସବୁଠାରୁ ଉତ୍ତମ ତଥା ଦୁର୍ଲଭ ଯାହାକି ଭଗବାନଙ୍କ କୃପାରୁ ମିଳେ। ଏପରି ଅମୂଲ୍ୟ ଜୀବନକୁ ପାଇ ଯେଉଁ ମନୁଷ୍ୟ ଆଳସ୍ୟ, ଭୋଗ, ପ୍ରମାଦ ଓ ଦୁରାଚ୍ୱରରେ ନିଜର ସମୟ ବିତାଇଦିଏ, ସେ ଅତ୍ୟନ୍ତ ମୂଢ଼ ଅଟେ । ତାକୁ ଅନେକ ଅନୁତାପ କରିବାକୁ ପଡିବ।

୨୫- ସମୟ ଅତ୍ୟନ୍ତ ମୂଲ୍ୟବାନ୍ ଅଟେ। ଭଗବାନ୍‌ଙ୍କ ଦୟାରୁ ଏ ମନୁଷ୍ୟ ଶରୀର ମିଳିଅଛି। ଏବେ ମଧ୍ୟ ଯଦି ଭଗବତ୍‌ପ୍ରାପ୍ତିରୁ ବଞ୍ଚିତ ରହିଯିବା, ତେବେ ଆମପରି ମୂର୍ଖ ଆଉ କିଏ ଅଛି ? ଆମେ ଆମର ଅମୂଲ୍ୟ ସମୟକୁ କେବଳ ଅମୂଲ୍ୟ କାର୍ଯ୍ୟରେ ଲଗାଇବା ଉଚିତ। ଭଗବାନ୍‌ଙ୍କର ସ୍ମରଣ ଅମୂଲ୍ୟ ଅଟେ। ଏହି ପ୍ରକାର ନିତ୍ୟ ବିଚ୍ୱର କରିବା ଉଚିତ।

୨୬- ମୃତ୍ୟୁ କେବେ ଆସିବ ଜଣା ନାହିଁ। ସେ ପ୍ରତିକ୍ଷଣ ଆମ ସମ୍ମୁଖରେ ପାଟି ଆଁ କରି ଠିଆ ହୋଇଅଛି। ତେଣୁ ନିରନ୍ତର ଭଜନ ନ କଲେ ଭୟାନକ ବିପଦରେ ପଡିଯିବା।

୨୭- ବିଭିନ୍ନ ପ୍ରକାର ଯୋନି ମଧ୍ୟ ଦେଇ ଘୂରି ଘୂରି ଏହି ଜୀବ ଯେତେବେଳେ ଥକି ଯାଏ, ଭଗବାନ୍ ଦୟାପରବଶ ହୋଇ ତାକୁ ମନୁଷ୍ୟ ଜନ୍ମ ଦେଇଥାଆନ୍ତି। ଏହି ଉପାୟରେ ତାକୁ ଜନ୍ମ-ମୃତ୍ୟୁ ଚକ୍ରରୁ ଉଦ୍ଧାର ପାଇବାପାଇଁ ସୁଯୋଗ ଦିଅନ୍ତି। କିନ୍ତୁ ଏହି ମନୁଷ୍ୟ କୃତଘ୍ନ ହୋଇ ଏହି ସୁଯୋଗକୁ ହାତ ଛଡା କରି ଦିଏ ଓ ଶେଷରେ ଅନୁତାପ କରେ। କିନ୍ତୁ ସେତେବେଳେ ଅନୁଶୋଚନା କଲେ ଲାଭ କ'ଣ ?

୨୮- ଶାଶ୍ୱତ ସୁଖର ପ୍ରାପ୍ତି ତଥା ଦୁଃଖରୁ ଚିର ମୁକ୍ତି ପାଇବା ହିଁ ଜୀବର ପରମ ଧ୍ୟେୟ ଅଟେ । ଏଥିପାଇଁ ମନୁଷ୍ୟ ପ୍ରଯତ୍ନବାନ୍ ହେବା ଉଚିତ ।

୨୯- ଏହି ମନୁଷ୍ୟ ଜନ୍ମ ଆମ୍ଭମାନଙ୍କୁ ଈଶ୍ୱର ଉପାସନା ନିମିତ୍ତ ମିଳିଅଛି । ସଂସାରର ଭୋଗ ଆମେ ତ ଅନ୍ୟାନ୍ୟ ଯୋନି ମାଧ୍ୟମରେ ପାଇପାରିବା । କିନ୍ତୁ ଭଗବତ୍ ଜ୍ଞାନ ଓ ତାହାଙ୍କର ଆରାଧନାପାଇଁ ଅଧିକାର କେବଳ ମନୁଷ୍ୟ ଯୋନିରେ ହିଁ ମିଳିଅଛି ।

୩୦- ମନୁଷ୍ୟମାନଙ୍କ ମଧ୍ୟରେ ଯେଉଁମାନଙ୍କର ଦ୍ୱିଜାତି-ସଂସ୍କାର ହୋଇଅଛି, ଅର୍ଥାତ୍ ଯେଉଁମାନଙ୍କୁ ବେଦାଧ୍ୟୟନଦ୍ୱାରା ଭଗବତ୍ ଜ୍ଞାନ ଲାଭ କରିବାର ଅଧିକାର ମିଳିଅଛି, ସେମାନେ ଯଦି ନିୟମିତ ଈଶ୍ୱର ଉପାସନା ନ କରନ୍ତି, ସେମାନେ ନିଜକୁ ଦ୍ୱିଜ କହିବାର କି ଅଧିକାର ଅଛି ?

୩୧- ଯେଉଁମାନେ ମନୁଷ୍ୟ ଜନ୍ମ ପାଇ ମଧ୍ୟ ଭଗବଦୁପାସନା ପ୍ରତି ବିମୁଖ ହୁଅନ୍ତି, ସେମାନଙ୍କର ମୃତ୍ୟୁପରେ ତାଙ୍କୁ ମନୁଷ୍ୟଯୋନିଠାରୁ ନୀଚତର ଯୋନିକୁ ଖସାଇ ଦିଆଯାଏ । ଫଳରେ ଈଶ୍ୱରଙ୍କ ଦୟାରୁ ଜନ୍ମ-ମୃତ୍ୟୁ ଚକ୍ରରୁ ମୁକ୍ତିଲାଭ ପାଇଁ ଯେଉଁ ସୁଯୋଗ ମିଳିଥିଲା, ତାହା ନିଜ ମୂର୍ଖତା କାରଣରୁ ହରାଇ ବସନ୍ତି ।

୩୨- ଏହି ମନୁଷ୍ୟ ଶରୀର ସମସ୍ତ ଶୁଭଫଳ ଲାଭ କରିବାର ଆଦି କାରଣ ଓ ଅତ୍ୟନ୍ତ ଦୁର୍ଲଭ ହେଲେହେଁ ଈଶ୍ୱରଙ୍କ କୃପାରୁ ଆମପାଇଁ ତାହା ସୁଲଭ ହୋଇଅଛି । ଏହା ଏହି ସଂସାରରୂପୀ ସାଗରରୁ ପାର ହେବାପାଇଁ ଏକ ସୁଦୃଢ ନୌକା ଅଟେ, ଯାହାକୁ ଗୁରୁରୂପୀ ନାବିକ ଚଳାନ୍ତି ଏବଂ ଭଗବାନ ବାୟୁରୂପୀ ହୋଇ ତାହାକୁ ଆଗକୁ ଚଳାଇ ନିଅନ୍ତି । ଏପରି ସୁନ୍ଦର ନୌକା ପାଇ ଯେଉଁ ମନୁଷ୍ୟ ଏହି ଭବସାଗରକୁ ପାର କରେ ନାହିଁ, ସେ ନିଶ୍ଚିତରୂପେ ଆତ୍ମାର ହନନକାରୀ ଓ ତାହାର ପତନର କାରଣ ଅଟେ ।

୩୩- ନିଜର ହିତାହିତ ଦୃଷ୍ଟିରୁ ସଂସାରର କେଉଁ ପଦାର୍ଥ ଗ୍ରହଣୀୟ ଓ କେଉଁ ପଦାର୍ଥ ଅଗ୍ରାହ୍ୟ ତାହାର ନିର୍ଣ୍ଣୟ କର ଏବଂ ଦୃଢତାପୂର୍ବକ ସେଥିରେ ସ୍ଥିର ରୁହ । ଯେଉଁ ମାର୍ଗ ତୁମକୁ ଠିକ୍ ଲାଗେ, ତାହା ଗ୍ରହଣ କରି ନିଅ ଓ ଭୁଲ ମାର୍ଗକୁ ଭୁଲରେ ଦେଖ ନାହିଁ ।

୩୪- ମୁଁ କିଏ, ଏହା ପ୍ରତ୍ୟେକ ମନୁଷ୍ୟ ବିଗ୍ଚର କରୁ । ଏ ସଂସାର କ'ଣ? ଏ ସଂସାର ସହିତ ମୋର ସମ୍ବନ୍ଧ କ'ଣ? ମୁଁ କ'ଣ କରୁଛି? ମୁଁ କ'ଣ କରିବା ଉଚିତ?

୩୫- ଯେଉଁ ପଦାର୍ଥ ସତ୍ ଅଟେ, ତାହାର ବିନାଶ ହୁଏ ନାହିଁ । ତାହା ପ୍ରତି ଯେତେ ଆଘାତ ଲାଗିଲେ ମଧ୍ୟ ତାହା ଅଟଳ ରହେ । ଯାହା ଅସତ୍, ତାହାପାଇଁ ତୁମେ ଯେତେ ପ୍ରଯତ୍ନ କଲେ ମଧ୍ୟ ସେ ରହିବ ନାହିଁ ।

୩୬- କେବଳ ପରମେଶ୍ୱର ଓ ତାଙ୍କ ଆଜ୍ଞା ପାଳନରୂପେ ଧର୍ମ ବ୍ୟତୀତ ତୁମର ଇହ ଓ ପରଲୋକରେ କେହି ସାଥୀ ବା ସହାୟକ ନାହାନ୍ତି ।

୩୭- ନିଜର ଖ୍ୟାତି ପାଇଁ ଭଗବତ୍‌ପ୍ରାପ୍ତି କର ନାହିଁ । ଭଗବତ୍‌ପ୍ରାପ୍ତି ଆମର ପରମ ଧ୍ୟେୟ ଓ ଆଶ୍ରୟ ଅଟେ, କାରଣ ତାହା ମିଳିଯିବା ପରେ ଆଉ ପାଇବାପାଇଁ କିଛି ରହିଯାଏ ନାହିଁ । ଏହାକୁ ହିଁ ମୁକ୍ତି, ପରମପଦ ଏବଂ ନିର୍ମଳ ସୁଖର ପ୍ରାପ୍ତି କୁହାଯାଏ ।

୩୮- ତୁଚ୍ଛ ଲୌକିକ ଖ୍ୟାତିପାଇଁ ଇଚ୍ଛା କରିବା ଏବଂ ତାହା ପାଇଁ ନିଜର ଶରୀର, ମନ, ଧନ ନଷ୍ଟ କରିବା କେତେ ବଡ ମୂର୍ଖତା ଅଟେ ।

୩୯- ଯଦି ଆମର ଜୀବନ ଲୌକିକ ଦୃଷ୍ଟିରୁ କଷ୍ଟରେ ବିତିଲା, ଆମକୁ ଯଶ ମିଳିଲା ନାହିଁ, ସ୍ଥାନେ ସ୍ଥାନେ ଆମ୍ଭେ ତିରସ୍କୃତ ହେଲେ, ଆମ୍ଭଙ୍କୁ କେହି ଆଦର କଲେ ନାହିଁ, କେହି ଆମକୁ ପଗ୍ଚରିଲେ ନାହିଁ, କିନ୍ତୁ ଆମେ ନିଜର ଜୀବନକୁ ସଦୁପଯୋଗ କରିପାରିଲେ, ଯେଉଁ କଥା ପାଇଁ ଆସିଥିଲେ ତାହା ସଫଳତାସହ କରିପାରିଲେ, ତେବେ ଆମର ଜୀବନ ଧନ୍ୟ ହୋଇଗଲା ।

୪୦- ଯଦି ଜୀବନରେ ଅନେକ ଭୋଗ ସାମଗ୍ରୀ ସଞ୍ଚୟ କରିଦେଲେ, ଅନେକ ଯଶ ଖ୍ୟାତି ଅର୍ଜନ କଲେ, ବହୁତ ନାମ ଅର୍ଜନ କଲେ, ହଜାର ହଜାର ଲକ୍ଷ ଲକ୍ଷ ଟଙ୍କା, ବିପୁଳ ସମ୍ପତ୍ତି, ହାତୀ, ଘୋଡ଼ା, ଗ୍ଚକର-ବାକର, ତଥା ବହୁତ ବଡ ପରିବାର ତିଆରି କଲେ; କିନ୍ତୁ ଜୀବନର ବାସ୍ତବିକ ଉଦ୍ଦେଶ୍ୟ ସିଦ୍ଧି ହେଲା ନାହିଁ, ତେବେ ଆମର ସବୁ କିଛି ବେକାର ହେଲା ।

୪୧- ଏ ମନୁଷ୍ୟଶରୀର ଆମକୁ ବାରମ୍ବାର ମିଳିବ ନାହିଁ । ଏପରି ଦୁର୍ଲଭ ସୁଯୋଗକୁ ଆମେ ଯଦି ହାତଛଡା କରିଦେଲେ, ତେବେ ଅନୁତାପ ବ୍ୟତୀତ ଆଉ କିଛି ମିଳିବ ନାହିଁ ।

୪୨- ଏପରି ଦେବଦୁର୍ଲଭ ମନୁଷ୍ୟ ଶରୀର ପାଇ ମଧ୍ୟ ଯଦି ଆମର ନିଜର ପ୍ରକୃତ କାମ କରି ନ ପାରିଲେ, ତେବେ ଆମଠାରୁ ବଳି ମୂର୍ଖ କିଏ ? ଏପରି ମନୁଷ୍ୟକୁ ଶାସ୍ତ୍ରଗୁଡିକରେ କୃତଘ୍ନ ଓ ଆତ୍ମହତ୍ୟାକାରୀରୂପେ ବର୍ଣ୍ଣନା କରାଯାଇ ଅଛି ।

୪୩- ଏ ଦେବଦୁର୍ଲଭ ଶରୀର ଭଗବାନ୍‌ଙ୍କ କୃପାରୁ ହିଁ ମିଳିଅଛି । ଏହି

ଜୀବ ଚଉରାଶୀ ଲକ୍ଷ ଯୋନିଗୁଡ଼ିକରେ ବୁଲି ବୁଲି ହଇରାଣ ହେଲାପରେ ଭଗବାନ୍ ଦୟା କରି ତାହାକୁ ମନୁଷ୍ୟ ଶରୀର ଦାନ କରନ୍ତି ।

୪୪- ଦେବତାମାନେ ମଧ୍ୟ ମନୁଷ୍ୟ ଯୋନିରେ ଜନ୍ମ ପାଇବାପାଇଁ ବ୍ୟାକୁଳ ହୁଅନ୍ତି । ତେଣୁ ଏ ମନୁଷ୍ୟ ଦେହକୁ କ୍ଷଣଭଙ୍ଗୁର କହିବା ସଙ୍ଗେ ସଙ୍ଗେ ଦେବଦୁର୍ଲଭ ମଧ୍ୟ କୁହାଯାଏ ।

୪୫- ଲକ୍ଷେ ଚେଷ୍ଟା କଲେ ମଧ୍ୟ ଏ ସଂସାରର ଗୋଟିଏ ହେଲେ ପଦାର୍ଥ ଆମ ସହିତ ଯାଇପାରିବ ନାହିଁ । ମୃତ୍ୟୁ ମଧ୍ୟ ଦିନେ ନା ଦିନେ ଆସିବ । ତାହାକୁ ଏକ ମୁହୂର୍ତ୍ତପାଇଁ ଟାଳିହେବ ନାହିଁ । ଏପରି ସ୍ଥିତିରେ ଏଠାକାର ପଦାର୍ଥ ସହିତ ସମ୍ବନ୍ଧ ଯୋଡ଼ିବା ଓ ନିଜର ଭାବିବା ଓ ତାହାକୁ ସଂଗ୍ରହ କରିବାରେ ବୟସ ବିତାଇ ଦେବା କେତେଦୂର ବୁଦ୍ଧିମାନ୍‌ର କାର୍ଯ୍ୟ, ଏହା ଆମେ ନିଜେ ଭାବି ପାରିବା ।

୪୬- ପୂର୍ବଜନ୍ମରେ ଆମର ଯେଉଁ ପଦାର୍ଥ ଓ ବ୍ୟକ୍ତିମାନଙ୍କ ସହିତ ସମ୍ବନ୍ଧ ଥିଲା, ସେଗୁଡ଼ିକର ସମ୍ବନ୍ଧ ତ ଦୂରର କଥା, ସ୍ମରଣ ମଧ୍ୟ ଆମର ନାହିଁ । ସେହିପରି ଆମର ଏ ଜନ୍ମରେ ମୃତ୍ୟୁ ହେବାପରେ ପଦାର୍ଥଗୁଡ଼ିକ ସହ କୌଣସି ସମ୍ବନ୍ଧ ରହିବ ନାହିଁ । ଆହୁରି ମଧ୍ୟ ଆମକୁ ତାହା ସ୍ମରଣ ମାତ୍ର ରହିବ ନାହିଁ ।

୪୭- ଏହି ଶରୀର ସହିତ ଆମର ସମ୍ବନ୍ଧ କେବେ ତୁଟିଯିବ, ତାହା ଆମକୁ ଜଣା ନାହିଁ । ଶରୀର-ତ୍ୟାଗ ପରେ ସେହି ସବୁ ପଦାର୍ଥରୁ ଯାହା ସହିତ ଆମର ସମ୍ବନ୍ଧ ରହିଛି, ସ୍ୱୟଂ ଛିନ୍ନ ହୋଇଯିବ ।

୪୮- ଯେଉଁ ମନୁଷ୍ୟ ଶରୀରକୁ ଦେବଦୁର୍ଲଭ କୁହାଯାଇଛି, ତାହାର ସାର୍ଥକତା କ'ଣ ଭୋଗପୂର୍ଣ୍ଣ ଜୀବନ ଯାପନରେ ସମ୍ଭବ ?

୪୯- ଏ ଶରୀର ସାଂସାରିକ ଭୋଗପାଇଁ ଆମକୁ ମିଳିନାହିଁ ।

୫୦- ଭଗବାନ୍ କହନ୍ତି—ଶୀଘ୍ର ସଚେତନ ହୁଅ, କାଳକୁ ଭରସା କରି ବିଷୟ ଭୋଗରେ ଲିପ୍ତ ହୁଅ ନାହିଁ । କେବେହେଲେ ଭାବ ନାହିଁ ଯେ ଶରୀର ସବୁବେଳେ ରହିବ। ଏହା ମଧ୍ୟ ଭାବ ନାହିଁ ଯେ ମୋତେ ଭୁଲି ତୁମେ ଅନ୍ୟତ୍ର ତିଳେମାତ୍ର ସୁଖର ଛାୟା ପାଇପାରିବ। ଏ ମନୁଷ୍ୟଶରୀର ମୁଁ ତ ତୁମକୁ ଦୟାପୂର୍ବକ ପ୍ରଦାନ କରିଅଛି କେବଳ ତୁମକୁ ମୋ ଆଡ଼କୁ ଟାଣି ପରମାନନ୍ଦରୂପ ପରମଧାମକୁ ନେଇଯିବା ପାଇଁ। ଏହା ଅତ୍ୟନ୍ତ ଦୁର୍ଲଭ ଅଟେ, କିନ୍ତୁ ଏହା ଅନିତ୍ୟ, କ୍ଷଣଭଙ୍ଗୁର। ଯିଏ ମୋତେ ଭୁଲିଯାଏ, ତାହାପାଇଁ ଏହା ସୁଖରହିତ ମଧ୍ୟ । ଏହାକୁ ପାଇ କେବଳ ପ୍ରେମପୂର୍ବକ ମୋତେ ଭଜନ କର।

ତେବେ ତୁମେ ଜୀବନର ପରମଲକ୍ଷ୍ୟସ୍ୱରୂପ ମୋତେ ପାଇ ଧନ୍ୟ ହେବ ।

**"ଅନିତ୍ୟମସୁଖଂ ଲୋକମିମଂ ପ୍ରାପ୍ୟ ଭଜସ୍ୱ ମାମ୍ ।"**

(ଗୀତା ୯ । ୩୩)

ବାସ୍ତବରେ ଏହା ଆମପାଇଁ ଅତ୍ୟନ୍ତ ପରିତାପ ଓ ଲଜ୍ଜାର ବିଷୟ, କାରଣ ଆମେ ଏ ପ୍ରକାର ଦୟାଳୁ ଭଗବାନ୍‌ଙ୍କର ଦୟାକୁ ତିରସ୍କାର କରି ନିଜର ମାନବ ଜୀବନକୁ ବ୍ୟର୍ଥତା ମଧ୍ୟରେ ହରାଇ ଦେଉଛୁ । ଏହା ହିଁ ମାନବ ଜୀବନର ସବୁଠାରୁ ବଡ ବିଫଳତା ଓ ବଡ ଭୁଲ ଅଟେ ।

୫୧- ପରମାତ୍ମା ପ୍ରାପ୍ତି ମନୁଷ୍ୟର ଜନ୍ମସିଦ୍ଧ ଅଧିକାର ଅଟେ । ତଥାପି ସେ ନିଜର ଅଯୋଗ୍ୟତା ଓ ବିପରୀତ ଆଚରଣ ଯୋଗୁଁ ନିଜକୁ ସେ ଅଧିକାରରୁ ବଞ୍ଚିତ କରି ଓଲଟା ଦଣ୍ଡ ପାଉଅଛି । ଏହାଠାରୁ ଅଧିକ ଦୁର୍ଭାଗ୍ୟ କ'ଣ ହୋଇପାରେ?

୫୨- ମନୁଷ୍ୟ ଶରୀର ପ୍ରଦାନ କରି ଭଗବାନ୍ ଆମକୁ ମୁକ୍ତିର ଅଧିକାରୀ କରିଅଛନ୍ତି । ଆମେ ଯଦି ତେଣିକି ପାପ ଓ ପ୍ରମାଦ କରିବା, ତାହା ଆମର ବଡ ମୂର୍ଖତା ହେବ ।

୫୩- ଭଗବାନ୍ ଆମକୁ ମୁକ୍ତିର ପାସପୋର୍ଟ ଦେଇ ସାରିଛନ୍ତି । ତେଣୁ ଯାହା କିଛି ଅଭାବ ରହୁଛି, ତାହା କେବଳ ଆମ ତରଫରୁ ଅଟେ ।

୫୪- ଏହି କଳିକାଳ ପାପର ଖଣି ହେଲେ ହେଁ ଆତ୍ମୋଦ୍ଧାର ପାଇଁ ତାହା ପରମ ସହାୟକ ଅଟେ ।

୫୫- ଏପରି ଉତ୍ତମ ଦେଶ, ଜାତି ଏବଂ ଧର୍ମପାଇଁ ଯେଉଁ ବ୍ୟକ୍ତି ସଚେତନ ନୁହେଁ ତାକୁ ଅନେକ ଅନୁତାପ କରିବାକୁ ହେବ ।

**ସୋ ପରତ୍ର ଦୁଖ ପାୱଇ ସିର ଧୁନି ଧୁନି ପଛିତାଇ ।**
**କାଲହି କର୍ମହି ଈସ୍ୱରହି ମିଥ୍ୟା ଦୋସ ଲଗାଇ ॥**

ମନୁଷ୍ୟ ଶରୀର ସକଳ ଶରୀରମାନଙ୍କ ମଧ୍ୟରେ ଉତ୍ତମ ଓ ମୁକ୍ତିଦାୟକ ହୋଇଥିବାରୁ ତାହାକୁ ଅମୂଲ୍ୟ କୁହାଯାଏ ।

୫୬- ପରମଦୟାଳୁ ପରମେଶ୍ୱରଙ୍କ ଦୟା ଅସୀମ ଅଟେ । ସେ ଆମକୁ ଏହି ମନୁଷ୍ୟ ଶରୀର ପ୍ରଦାନ କରି ଅନେକ ଚମତ୍କାର ସୁଯୋଗ ପ୍ରଦାନ କରିଅଛନ୍ତି । ଏପରି ସୁଯୋଗ ପାଇ ଆମେ ପଛକୁ ହଟିବା ଉଚିତ ନୁହେଁ ।

୫୭- କେବଳ ଭଗବାନ୍‌ଙ୍କର ପବିତ୍ର ଗୁଣଗାନ କଲେ ମନୁଷ୍ୟ ପରମପଦ

ଲାଭ କରିପାରେ । ଆତ୍ମୋଦ୍ଧାରପାଇଁ ପ୍ରାରବ୍ଧ ମଧ୍ୟ ବାଧକ ହୁଏ ନାହିଁ । ତେଣୁ ପ୍ରାରବ୍ଧକୁ ଦୋଷ ଦେବା ଉଚିତ ନୁହେଁ, କାରଣ ଈଶ୍ୱରଙ୍କ ଦୟା ତ ଅପାର ଅଟେ ।

୫୮- ପରମ ଲକ୍ଷ୍ୟ ପ୍ରାପ୍ତି ପାଇଁ ଚେଷ୍ଟା କରିବା ହିଁ ମନୁଷ୍ୟ ଜୀବନର କର୍ତ୍ତବ୍ୟ ଅଟେ । ଏହି କର୍ତ୍ତବ୍ୟ ପାଳନ ପାଇଁ ଯାହା କିଛି ତ୍ୟାଗ କରିବାକୁ ପଡ଼ିଲେ ମଧ୍ୟ, ତାହା ଅତ୍ୟନ୍ତ ଗୌଣ ।

୫୯- ପରମାତ୍ମା ପ୍ରାପ୍ତି ଆମର ଲକ୍ଷ୍ୟ ହେବା ଉଚିତ, କାରଣ ପରମାତ୍ମା ହିଁ ଏକମାତ୍ର ପରମସୁଖ ଓ ଶାଶ୍ୱତ ଶାନ୍ତିର କେନ୍ଦ୍ର ଅଟନ୍ତି । ସେ ହିଁ କେବଳ ସର୍ବଶ୍ରେଷ୍ଠ ଓ ସବୁଠାରୁ ବଡ ପ୍ରାପ୍ୟ ବସ୍ତୁ ଅଟନ୍ତି । ତାଙ୍କର ପ୍ରାପ୍ତିରେ ଜୀବନର ପୂର୍ଣ୍ଣ ଓ ଯଥାର୍ଥ ସଫଳତା ମିଳେ ।

୬୦- କିଏ ଜାଣେ ମୃତ୍ୟୁ କେବେ ଆସିଯିବ । ଦୀର୍ଘ ଜୀବନ ପାଇଁ କ'ଣ ପଟା ମିଳିଛି ? କ୍ରମେ କ୍ରମେ ବିଷ ଚରୁଅଛି । ମୃତ୍ୟୁ ରାତ୍ରି ସମୟରେ ଆସିଗଲେ ପୁଣି କ'ଣ ହେବ ? ତେଣୁ ଏହି ମୁହୂର୍ତ୍ତରୁ ଜାଗିପଡି ନିଷ୍ଠାର ସହ ଲାଗିପଡିବା ଉଚିତ ।

୬୧- ବୁଦ୍ଧିମାନ୍ ମନୁଷ୍ୟ ପକ୍ଷରେ ଏହା ଉଚିତ ହେବ ଯେ ସେ ଶାସ୍ତ୍ରରୁ, ଶାସ୍ତ୍ର ନ ବୁଝି ପାରିଲେ କୌଣସି ଭଗବତ୍‌ପ୍ରାପ୍ତ ପୁରୁଷଙ୍କଠାରୁ, ସେ ନ ମିଳିଲେ ଧର୍ମକୁ ଜାଣି ଧର୍ମାଚରଣ କରୁଥିବା କୌଣସି ବ୍ୟକ୍ତିଙ୍କଠାରୁ, ତାହା ଜଣା ନ ପଡିଲେ ନିଜ ଜାଣିବାରେ ଯିଏ ଧର୍ମକୁ ଜାଣିଛି, ତାହାକୁ ପଚ୍ଚରି ନିଜର କର୍ତ୍ତବ୍ୟ ଜାଣିନେବା ଆବଶ୍ୟକ ।

୬୨- ଦୁଃଖ ଓ ଶୋକରୁ ମୁକ୍ତି ପାଇବାକୁ ହେଲେ ମନୁଷ୍ୟ ନିଜର ସମ୍ପୂର୍ଣ୍ଣ ସମୟକୁ ପରମାତ୍ମାଙ୍କର ତତ୍ତ୍ୱଜ୍ଞାନ ସାଧନାରେ ଲଗାଉ ଓ ତାହା ପାଇବାପରେ ବିଶ୍ରାମ ନେଉ ।

୬୩- ଅର୍ଜୁନଙ୍କର ପ୍ରଗାଢ଼ ଭକ୍ତି ଥିଲା । ଏତେ ଭକ୍ତି ଥାଇ ସୁଦ୍ଧା ସାମାନ୍ୟ ଦୁର୍ବଳତା ଥିବାରୁ ସେ ମୋହଗ୍ରସ୍ତ ହୋଇପଡିଲେ । ଏହି କାରଣରୁ ଯେପର୍ଯ୍ୟନ୍ତ ଭଗବତ୍‌ପ୍ରାପ୍ତି ହୋଇ ନାହିଁ, ସେପର୍ଯ୍ୟନ୍ତ ତୀବ୍ର ସାଧନା ଚ୍ଚଳିବା ଆବଶ୍ୟକ । ଯଦି ଅର୍ଜୁନ ଓ ଜଡ ଭରତ ପରି ଦୃଢ଼ ଭକ୍ତମାନଙ୍କ ସହ ଏପରି ହେଲା, ତେବେ ଆମେ ବିଚ୍ଚର କରିବା ଉଚିତ ଯେ ସେମାନଙ୍କ ତୁଳନାରେ ଆମେ କିଛି ନୁହଁ ।

୬୪- ଯେପର୍ଯ୍ୟନ୍ତ ପରମାତ୍ମାଙ୍କ ପ୍ରାପ୍ତି ହୋଇ ନାହିଁ ସେପର୍ଯ୍ୟନ୍ତ ମନୁଷ୍ୟ ସଂସାରରେ ଅଟକିଯିବା କିଛି ବଡ କଥା ନୁହେଁ ।

୬୫- ଭଗବାନ୍ ତାଙ୍କର ଭକ୍ତମାନଙ୍କୁ ଚେତାଇବା ପାଇଁ ତାଙ୍କ ଉପରେ ମାୟା ପ୍ରୟୋଗ କରନ୍ତି । ଅର୍ଜୁନଙ୍କୁ ଭଗବାନ୍ କହିଲେ, ମୋ ଉପସ୍ଥିତିରେ ତୁମର ଏ ମୋହ କିପରି ସୃଷ୍ଟି ହେଲା, କାରଣ ସୂର୍ଯ୍ୟ ସମ୍ମୁଖରେ ଅନ୍ଧକାର ରହି ନ ପାରେ । ଯେହେତୁ ତୁମେ ମୋତେ ଜାଣି ନାହଁ, ତେଣୁ ତୁମକୁ ମାୟା ଘାରୁ ଅଛି । ମୁଁ ଯଦି ତୁମ ପାଖରେ ନ ଥାଆନ୍ତି, ତୁମର ଦଶା କ'ଣ ହୁଅନ୍ତା ।

୬୬- ଭଜନ, ଧ୍ୟାନ ଓ ସତ୍‌ସଙ୍ଗରୂପୀ ଅମୃତକୁ ତ୍ୟାଗ କରି କୌଣସି ମୁହୂର୍ତ୍ତ ଯେପରି ବ୍ୟର୍ଥ ନ ଯାଏ, ତାହା ମନୁଷ୍ୟ ବିଚାର କରିବା ଉଚିତ । ଆନନ୍ଦମୟ ଭଗବାନ୍‌ଙ୍କ ସ୍ମରଣ ବିନା ଯେଉଁ ସମୟ ବ୍ୟତୀତ ହୁଏ, ତାହା କେବଳ ବ୍ୟର୍ଥ ହୁଏ ।

୬୭- ତୁମେ କାହିଁକି ଆସିଅଛ, ଏଠାରେ କ'ଣ କରିବା ଉଚିତ ଓ ତୁମେ କ'ଣ କରୁଅଛ, ଏହି ପ୍ରଶ୍ନ ଉପରେ ତୁମେ ବାରମ୍ବାର ବିଚାର କରିବା ଉଚିତ।

୬୮- କେବଳ ଭଗବାନ୍‌ଙ୍କ ବ୍ୟତୀତ ତୁମର ଆଉ କେହି ନାହିଁ ।

୬୯- ସଂସାର ଚିନ୍ତା ଭଗବତ୍‌ପ୍ରାପ୍ତି ପ୍ରତି ବାଧକ ଅଟେ ଏବଂ ନିଜ ପାଇଁ ଘାତକ ଅଟେ ।

୭୦- ସନାତନ ଧର୍ମରେ ଆପଣ ଜନ୍ମଲାଭ କରିଛନ୍ତି । ତେଣୁ ଆପଣ କେଡେ ଭାଗ୍ୟବାନ୍! ସଂସାରରେ କେତେକ ଧର୍ମ ପୁନର୍ଜନ୍ମରେ ବିଶ୍ୱାସ କରନ୍ତି ନାହିଁ। ପୃଥିବୀରେ ପ୍ରାୟ ତିନିଶହ କୋଟି ମନୁଷ୍ୟ ଅଛନ୍ତି । ସେମାନଙ୍କ ମଧ୍ୟରୁ କେତେକଙ୍କୁ ମୋକ୍ଷ ବିଷୟରେ ଜଣା ନାହିଁ। ଏମାନଙ୍କୁ ପଶୁ ଯୋନିରୂପେ ବୁଝିବାକୁ ହେବ, କାରଣ ପଶୁମାନଙ୍କପାଇଁ ଯେପରି ମୁକ୍ତି ନାହିଁ, ସେମାନଙ୍କର ମଧ୍ୟ ମୁକ୍ତି ନାହିଁ। ଏହି କାରଣରୁ ଆମେ ଚେତିବା ଆବଶ୍ୟକ ଓ ଏହି ଜନ୍ମରେ କଲ୍ୟାଣ ପାଇବା ଆବଶ୍ୟକ, କାରଣ ଏହାପରେ ତୁମର ଜନ୍ମ ଯଦି ଅନ୍ୟ ମତାବଲମ୍ବୀଙ୍କ ଘରେ ହେଲା, ତେବେ ମୁକ୍ତି କଷ୍ଟକର ହେବ।

୭୧- ଭଜନ-ଧ୍ୟାନ ଆଦି କରୁଥିବା ପୁରୁଷପାଇଁ ଋଣୀ ହେବା ଏକ ପ୍ରକାର ପ୍ରତିବନ୍ଧକ ଅଟେ।

୭୨- ମନୁଷ୍ୟମାନଙ୍କର ସମୟର ମୂଲ୍ୟ ଦେବତାମାନଙ୍କର ସମୟର ମୂଲ୍ୟ ତୁଳନାରେ ଅଧିକ । ଏପରି ମନୁଷ୍ୟ ଜନ୍ମଲାଭ କରି କଲ୍ୟାଣଲାଭ ନ କଲେ ତାକୁ ଧିକ୍କାର ।

୭୩- କେବଳ ଗୋଟିଏ ମିଥ୍ୟା କହିଲେ ଶହେ ଜନ୍ମ ନର୍କ ଭୋଗ କରିବାକୁ ପଡେ ।

୭୪- ଯେତେ ଆରାମ ଅଛି, ତାହାର ଲକ୍ଷଗୁଣ ଦୁଃଖ ଅଛି । ଉଦାହରଣସ୍ୱରୂପ ମନୁଷ୍ୟ ଗୋଟିଏ ଜନ୍ମରେ ଯେଉଁ ପାପ କରେ, ତାହାକୁ ଭୋଗ କରିବା ପାଇଁ ଚଉରାଶୀ ଲକ୍ଷ ଯୋନି ମଧ୍ୟ ଦେଇ ଜନ୍ମହେବାକୁ ପଡେ ତଥା ସ୍ତ୍ରୀ ସଂଭୋଗରେ ଯେଉଁ ଏକ ମିନିଟର ଆରାମ ମିଳେ, ତାହାପାଇଁ ଲକ୍ଷ ଲକ୍ଷ ବର୍ଷ ନରକ ଭୋଗ କରିବାକୁ ହୁଏ ।

୭୫- ଶ୍ରୀରାମ, ଶ୍ରୀକୃଷ୍ଣଙ୍କ ସମୟର କିଛି ଲୋକ ଆମ ଭିତରେ ଏ ପର୍ଯ୍ୟନ୍ତ ଅଛନ୍ତି । ସେ ସମୟରେ ସଚେତନ ନ ଥିବାରୁ ଏ ପର୍ଯ୍ୟନ୍ତ ଜନ୍ମ ମୃତ୍ୟୁ ଚକ୍ରରେ ପଡିଅଛନ୍ତି । ବର୍ତ୍ତମାନ ଚେତନା ଆସିଯିବା ଉଚିତ । ଯଦ୍ଦ୍ୱାରା ଭବିଷ୍ୟତରେ ଆଉ ଜନ୍ମ-ମରଣ ଚକ୍ରରେ ପଡିବେ ନାହିଁ ।

୭୬- ପ୍ରାରବ୍ଧ ସମ୍ବନ୍ଧରେ ଅନେକ କିଛି କୁହାଯାଇପାରେ, ଯାହାର କି ଅନ୍ତ ନାହିଁ । ତେଣୁ ଏ ସମ୍ବନ୍ଧରେ ଆଲୋଚନା ନ କରି ବର୍ତ୍ତମାନର କର୍ମର ଆଲୋଚନା ହେବା ଉଚିତ ।

୭୭- ଏ ସଂସାର ଦିନେ ନା ଦିନେ ଭସ୍ମୀଭୂତ ହେବ ।

୭୮- ସମୟ ନାହିଁ କହି ବାହାନା କର ନାହିଁ । ଏଠାରେ କାହାରିକୁ ତ ଫୁରସତ୍ ମିଳୁ ନାହିଁ, କିନ୍ତୁ ମୃତ୍ୟୁ ବେଳକୁ ସମସ୍ତଙ୍କୁ ଫୁରସତ୍ ମିଳିଯାଏ ।

୭୯- ସମୟ ତୀବ୍ର ବେଗରେ ବିତି ଗ୍ଭଲିଛି, ମୃତ୍ୟୁ ଖୁବ୍ ସନ୍ନିକଟ, ତାହାକୁ ଏକ ପଲକ ପାଇଁ ମଧ୍ୟ ଟାଳି ପାରିବ ନାହିଁ । କେବଳ ଭଜନ ହିଁ ସାର ଅଟେ । ତେଣୁ ମନ ଓ ହୃଦୟ ସହିତ ଭଜନରେ ଲାଗିଯାଅ ।

୮୦- ଶରୀର ତ ତ୍ୟାଗ କରିବାକୁ ହେବ । ତେଣୁ ତାହା ପ୍ରତି ଅଭିମାନ ରଖ ନାହିଁ । ପ୍ରଥମରୁ ତାହା ପ୍ରତି ମୋହ ଛାଡି ଦେବା ଉତ୍ତମ ଅଟେ ।

୮୧- ଶରୀର ଥିବା ଅବଧି ମଧ୍ୟରେ ତାହାଠାରୁ କାମ ହାସଲ କରି ନିଅ । ଦିନେ ନା ଦିନେ ତାକୁ ଛାଡିବାକୁ ହେବ ।

୮୨- ଯେପର୍ଯ୍ୟନ୍ତ ଏ ଶରୀର ଉପରେ ତୁମର ଅଧିକାର ଅଛି, ଉତ୍ତମରୂପେ ତାହାଠାରୁ କାମ ନେବା ଉଚିତ । ତାହାଦ୍ୱାରା ଭଜନ, ଧ୍ୟାନ, ସତ୍‌ସଙ୍ଗରୂପୀ ଅମୃତ ଆହରଣ କରି ନିଅ, ଯଦ୍ଦ୍ୱାରା ପରେ ଅନୁତାପ କରିବାକୁ ପଡିବ ନାହିଁ ।

୮୩- ଭଗବାନ୍‌ଙ୍କର ଭଜନ, ଧ୍ୟାନ, ତଥା ସତ୍‌ସଙ୍ଗ ବିନା "ମୁଁ ଓ ମୋର" ଭାବ ସହଜରେ ନାଶ ହୁଏ ନାହିଁ । ଭଗବାନ୍‌ଙ୍କର ଭଜନ ବଡ ମୂଲ୍ୟବାନ୍ ଅଟେ । ତାହା ହିଁ ତୁମର କାମରେ ଆସେ ।

୮୪- ସମୟର ମୂଲ୍ୟ ଶୀଘ୍ର ଜାଣି ନେବା ଉଚିତ । ଦିନ ବିତି ଯାଉଛି । ବିତିଯାଉଥିବା ସମୟ ଆଉ ଲେଉଟେ ନାହିଁ, ଏହା ଜାଣି ଯଥାଶୀଘ୍ର ମହତ୍ କାମରେ ଲାଗିଯିବା ଉଚିତ ଓ ସେହି କାମରେ ସମୟ ବିତାଇବା ଉଚିତ । ଦିନ ବିତିଯିବ, ମୃତ୍ୟୁର ସମୟ ନିକଟ ହୋଇଯିବ, ତା'ପରେ ଆନନ୍ଦ ହିଁ ଆନନ୍ଦ ।

୮୫- ବିଗ୍ୱର କଲେ ଦେଖିବା ଯେ ଆମର ଜନ୍ମ ନିରର୍ଥକ ହୋଇଛି । କେବଳ ମାଆକୁ ଦଶମାସ ବୋଝ ବୋହିବା ହିଁ ସାର ହୋଇଅଛି । ବର୍ତ୍ତମାନ ଚେତି ଯାଅ । ନୋଚେତ ଅନୁତାପ କରିବାକୁ ପଡିବ । ଶେଷରେ ଭଗବାନ୍‌ଙ୍କ ଭଜନ ବିନା କିଛି କାମରେ ଆସିବ ନାହିଁ । ସବୁ କିଛି ଏଇଠି ରହିଯିବ । ଶରୀର ମଧ୍ୟ ସାଥିରେ ଯିବ ନାହିଁ । ଅନ୍ୟାନ୍ୟ କଥା ଛାଡ ।

୮୬- ସମସ୍ତେ ସ୍ୱାର୍ଥରେ ବୁଡି ରହିଛନ୍ତି । ଚେତନା ଆବଶ୍ୟକ । ମନୁଷ୍ୟ ଶରୀରର ପ୍ରକୃତ ଫଳ ପାଇବା ଉଚିତ ।

୮୭- ସମୟ ବିତିଯାଉଛି । ବିତିଯାଇଥିବା ସମୟ ଆଉ ଫେରିବ ନାହିଁ। ତେଣୁ ଏହାକୁ ଅମୂଲ୍ୟ କାମରେ ବିତାଇବା ଉଚିତ । ଉନ୍ନତରୁ ଉନ୍ନତ କର୍ମରେ ସମୟ ଲଗାଇବା ଉଚିତ । ତୁମେ ଯେଉଁ କାରଣରୁ ପୃଥିବୀକୁ ଆସିଛ, ତାହା ପୂର୍ଣ୍ଣ କରିବାପରେ ହିଁ ଅନ୍ୟ କାର୍ଯ୍ୟରେ ଲାଗିବା ଉଚିତ । କେବଳ ଭଗବାନ୍‌ଙ୍କୁ ଛାଡି ଦେଲେ ଆଉ ବାସ୍ତବ ସୁହୃଦ୍ ତୁମର କେହି ନାହାନ୍ତି, ଏହା ଜାଣି ନିରନ୍ତର ଭଜନ ଧ୍ୟାନରେ ମଗ୍ନ ରହିବା ଉଚିତ ।

୮୮- କେବଳ ଭଗବାନ୍‌ଙ୍କୁ ଛାଡି କେହି ତୁମର ନିଜର ନୁହଁନ୍ତି । ମାତା, ପିତା, ଭାଇ, ସ୍ତ୍ରୀ, ପୁତ୍ର, ଗୃହ ଓ ଧନ ସବୁ ବିନାଶଶୀଳ ଅଟେ । କେବଳ କିଛି ଦିନପାଇଁ ଏମାନଙ୍କ ସହ ରହିପାରିବ । ଏମାନଙ୍କ ମଧ୍ୟରୁ କେହି ମଧ୍ୟ ତୁମ ସହିତ ଯିବେ ନାହିଁ । ଏପରିକି ତୁମ ଶରୀର ମଧ୍ୟ ଏଠାରେ ରହିଯିବ ।

୮୯- ସମୟ ବିତି ଯାଉଛି । ବିତିଯାଇଥିବା ସମୟ ଆଉ ଫେରିଆସିବ ନାହିଁ । ତେଣୁ ଯେପର୍ଯ୍ୟନ୍ତ ସ୍ୱାସ୍ଥ୍ୟ ଠିକ୍ ଅଛି, ମୃତ୍ୟୁ ଦୂରରେ ଅଛି, ସେପର୍ଯ୍ୟନ୍ତ ଯାହାକିଛି କରିବା କଥା କରିନିଅ। ଏହାଦ୍ୱାରା ତୁମେ ପରେ ଅନୁତାପ କରିବ ନାହିଁ।

୯୦- କେବଳ ଭଗବାନ୍‌ଙ୍କୁ ଛାଡି ତୁମର କେହି ନାହାନ୍ତି । ତେଣୁ ସେହି ପରମପ୍ରେମୀ ଭଗବାନ୍‌ଙ୍କୁ ଏକ ମୁହୂର୍ତ୍ତ ପାଇଁ ମଧ୍ୟ ଭୁଲିବା ଉଚିତ ନୁହେଁ ।

୯୧- ଶରୀର ଓ ଧନ କେହି ତୁମ ସହିତ ଯିବେ ନାହିଁ । ଏହି ସବୁ ଦେଇ ତା ବଦଳରେ ସାଥିରେ ଯିବା ବସ୍ତୁ କିଣିନେବା ଉଚିତ ।

୯୨- ବଡ ଆଶ୍ଚର୍ଯ୍ୟର କଥା ଯେ ତପ୍ତକୁଣ୍ଡରେ ପଡିଥିବା ମନୁଷ୍ୟପରି ଲୋକ ନିରନ୍ତର ଚିନ୍ତାରୂପକ ଅଗ୍ନିରେ ଜଳୁ ଅଛନ୍ତି। କିନ୍ତୁ ଏହି ଦୁଃଖରୁ ରକ୍ଷାପାଇଁ ଚେଷ୍ଟା କରୁନାହାନ୍ତି। ଏହାଠାରୁ ବଳି ମୂର୍ଖତା ଆଉ କ'ଣ ହୋଇପାରେ?

୯୩- ସଂସାରରେ କୌଣସି କାମରେ ମନ ଲାଖି ଗଲେ ପୁଣି ଜନ୍ମ ନେବାକୁ ପଡେ । ଏହା ବୁଝି ନିଜ କାମ ଶୀଘ୍ର ଶେଷ କରିବା ଉଚିତ ।

୯୪- ତୁମେ ମାଲିକକୁ କାହିଁକି ଭୁଲିଯାଇଛ ? ସ୍ତ୍ରୀ, ପୁତ୍ର ଓ ଧନ କେଉଁ କାମରେ ଆସିବେ ?

୯୫- ପ୍ରାଣ ବାହାରିବା ସମୟରେ କେହି ସାହାଯ୍ୟ କରିପାରିବେ ନାହିଁ। ତୁମ ସାଥିରେ ତୁମ ଶରୀର ମଧ୍ୟ ଯିବ ନାହିଁ । ଯାହା କିଛି କରୁଛ, ତାହା ସାଥିରେ ଯିବ ।

୯୬- ଭଜନ ଓ ଧ୍ୟାନ ମାଧ୍ୟମରେ ଭଗବତ୍ ପ୍ରାପ୍ତିପାଇଁ ଭଗବାନ୍ ଏହି ଶରୀର ପ୍ରଦାନ କରିଅଛନ୍ତି । ସଂସାରର ଭୋଗବିଳାସରେ ତାହାକୁ ନଷ୍ଟ କରିବା ଉଚିତ ନୁହେଁ ।

୯୭- ସଂସାରର ତୁଚ୍ଛ ଭୋଗପାଇଁ ଭୁଲରେ ମଧ୍ୟ ମନ ଦେବା ଉଚିତ ନୁହେଁ । ସାଂସାରିକ ଭୋଗରେ ଯେଉଁ ସମୟ ବିତିଯାଏ, ତାହା ବ୍ୟର୍ଥ ହୁଏ ।

୯୮- ସମୟ ବହୁତ ସୀମିତ। ବହୁତ ଭାବି ଚିନ୍ତି ତାହାକୁ ବିତାଇବା ଉଚିତ। ସାଧନାରେ ସାମାନ୍ୟ ତ୍ରୁଟି ରହିଗଲେ ପୁଣି ଜନ୍ମ ନେବାକୁ ପଡେ। ଅତଏବ ଏପରି ଚେଷ୍ଟା କରିବା ଉଚିତ ଯେପରି ଶୀଘ୍ର ଭଗବତ୍‌ପ୍ରାପ୍ତି ହୋଇଯିବ।

୯୯- ଶରୀର ମିଥ୍ୟା ଓ ନାଶବାନ୍ ଅଟେ। ନିଜ ସହିତ ଏହାର କୌଣସି ସମ୍ବନ୍ଧ ନାହିଁ।

୧୦୦- ସଂସାର, ଭୋଗ ଓ ଶରୀର ମୃତ୍ୟୁର ମୁଖ ନିକଟରେ ସର୍ବଦା ଥାଏ, ଏହିପରି ବିଚାର କରିବା ଉଚିତ।

୧୦୧- ସମୟ ବିତିଯାଉ ଅଛି, ଯାହା କିଛି କରିବା କଥା କରି ଦେବା ଉଚିତ। ତୁମେ କେଉଁ କାରଣରୁ ବିଳମ୍ବ କରୁଅଛ ? ତୁମର କ'ଣ ଆବଶ୍ୟକ ? ତୁମେ କାହାର ଚାପରେ ଦବିଯାଉଅଛ? ନାରାୟଣଙ୍କୁ ଏକ ମୁହୂର୍ତ୍ତ ପାଇଁ

ଭୁଲିଯାଅ ନାହିଁ। ଶେଷରେ ନାରାୟଣଙ୍କୁ ଛାଡି ତୁମର କେହି ହେବେ ନାହିଁ। ଏହି ଅସାର ସଂସାରରେ କିଛି ବି ସାର ନୁହେଁ। ସବୁ ମାୟାର ଖେଳ। ଏହା ବୁଝି ବୁଦ୍ଧିମାନ୍ ତାହାର ଜାଲରେ ପଡେ ନାହିଁ। କିନ୍ତୁ ଅବୁଝା ବ୍ୟକ୍ତି ଏହି ଭୋଗରୂପକ ଦାନାର ସ୍ୱାଦ ଆହରଣ କରି ମାୟାମୋହ ଜାଲରେ ପଡ଼ିଯାଏ।

୧୦୨- ମନୁଷ୍ୟ ଜନ୍ମରେ ହିଁ ଆତ୍ମାର ସଂସ୍କାର ଓ ଉଦ୍ଧାର ହୋଇପାରେ। ଅନ୍ୟ କୌଣସି ଯୋନିରେ ଏହା ସମ୍ଭବପର ନୁହେଁ।

୧୦୩- ଏ ସବୁ ପଦାର୍ଥ କେଉଁ କାମରେ ଆସିବ? ଦିନେ ସବୁ କିଛି ମାଟିରେ ମିଶିଯିବ। ଯାହା କିଛି ନେଇପାରିବ, ତାହା ଶୀଘ୍ର ନେଇଯାଅ। ଅମୂଲ୍ୟ ସମୟକୁ ବ୍ୟର୍ଥତା ମଧ୍ୟରେ ବିତାଅ ନାହିଁ।

୧୦୪- ଯେଉଁ କର୍ମ ପାଇଁ ସଂସାରକୁ ଆସିଅଛ, ତାହା କେବେହେଲେ ଭୁଲିଯାଅ ନାହିଁ ।

୧୦୫- ଯିଏ ସଂସାରର ଦାସ ହେବ, ସେ କେବଳ ସଂସାରକୁ ଗ୍ରହିଁବ। ସାଂସାରିକ ବସ୍ତୁର କାମନା ଯାହାର ଥାଏ, ସେ ହିଁ ସଂସାରରେ ଜନ୍ମ ନିଏ। ଏପରି ପୁରୁଷ ଭଗବାନ୍‌ଙ୍କ ମନର ସ୍ୱାମୀ ହୋଇ ନ ପାରେ।

୧୦୬- ସମୟ ବିତିଯାଉଅଛି । ଏହି ଶରୀର ଅତିଶୀଘ୍ର ମାଟିରେ ମିଶିଯିବ। ଯେତେବେଳେ ଶରୀର ନିଜର ନୁହେଁ, ତେବେ ଟଙ୍କା ଏବଂ ସାଂସାରିକ ଭୋଗର କଥା କ'ଣ କହିବା?

୧୦୭- ଶ୍ରୀଭଗବାନ୍‌ଙ୍କର ବିଚ୍ଛେଦ ତୁମେ କିପରି ସହି ପାରୁଛ?

୧୦୮- ଭଗବାନ୍‌ଙ୍କର ଭଜନ-ଧ୍ୟାନ ବ୍ୟତୀତ ଏକ ମୁହୂର୍ତ୍ତ ବୃଥା କାହିଁକି ବିତିବ? କୌଣସି କାରଣପାଇଁ ବିନା ଭଜନ-ଧ୍ୟାନରେ ଏକ ମୁହୂର୍ତ୍ତ ବିତାଅ ନାହିଁ। କାରଣ ସବୁ ଅନିତ୍ୟ ଅଟେ। ଅନିତ୍ୟ ପାଇଁ ନିଜର ଅମୂଲ୍ୟ ସମୟ ହାତଛଡା କର ନାହିଁ।

୧୦୯- ଯେତେବେଳେ ଶରୀର ଗ୍ଳାନିଯିବ, ସେତେବେଳେ ତୁମର ଶରୀର ଓ ଟଙ୍କା କେଉଁ କାମରେ ଆସିବ? ସବୁ ମାଟିରେ ମିଶିଯିବ।

୧୧୦- ଡେରି କାହିଁକି କରୁଅଛ ? ସମୟ ବିତିଯାଉଅଛି। ସକଳ ବସ୍ତୁକୁ ଛାଡିବାକୁ ହିଁ ପଡିବ। ପଛରେ ଅନୁତାପ କଲେ କୌଣସି ଲାଭ ହେବ ନାହିଁ। ଶ୍ମଶାନକୁ ଦେଖିଲେ ସଂସାରର ଅସାରତା ପ୍ରତ୍ୟକ୍ଷ ଦୃଶ୍ୟମାନ ହୁଏ ।

୧୧୧- ଯେପର୍ଯ୍ୟନ୍ତ ମୃତ୍ୟୁ ଦୂରରେ ଓ ଶରୀର ଆରୋଗ୍ୟ ଅବସ୍ଥାରେ

ଅଛି ତଥା ଅନୁକୂଳ ପରିସ୍ଥିତିରେ ତୁମେ ଅଛ, ତାହା ମଧ୍ୟରେ କିଛି ଉତ୍ତମ କର୍ମ କରିଯାଅ । ତାହା ମଧ୍ୟ ଶୀଘ୍ର ନ କଲେ ଅନୁତାପ କରିବାକୁ ପଡିପାରେ ।

୧୧୨- ଏହି ସଂସାରରେ କେବଳ ଭଗବାନ୍‌ଙ୍କ ବ୍ୟତୀତ ତୁମର କେହି ନାହିଁ । ମାତା, ପିତା, ଭାଇ, ସ୍ତ୍ରୀ, ପୁତ୍ର, ଘର, ଟଙ୍କା, ସବୁ ନାଶବାନ୍ ଅଟେ । ଏମାନଙ୍କର ସଙ୍ଗ ଲାଭ କେବଳ କିଛି ଦିନ ପାଇଁ । ଏମାନଙ୍କ ମଧ୍ୟରୁ କେହି ତୁମ ସାଙ୍ଗରେ ଯିବେ ନାହିଁ ।

୧୧୩- ସଂସାରରେ ବିଶ୍ୱାସ ଯୋଗ୍ୟ ପଦାର୍ଥ କିଛି ନାହିଁ।



## ଗୀତା

୧- ବ୍ରହ୍ମଚର୍ଯ୍ୟାଶ୍ରମ, ଗୀତାର ପ୍ରଚାର, ସତ୍‌ସଙ୍ଗ ପ୍ରଚାର ଆଦି କର୍ମ ବହୁତ ଉତ୍ତମ ଅଟେ । ଲୋକମାନଙ୍କୁ ଏ ସମ୍ବନ୍ଧରେ ମଧ୍ୟ କୁହାଯାଉଅଛି । ଦେଶୀ ଲୁଗା ଓ ଜୋତା, ବ୍ରହ୍ମଚର୍ଯ୍ୟାଶ୍ରମ, ଗୀତା ପ୍ରଚାର ଏସବୁରେ କ'ଣ ବା କଷ୍ଟ ଅଛି? ଏବେ ଏସବୁ ପାଇଁ ଅନେକ ସୁବିଧା ଅଛି । ଆଗକୁ କଳିଯୁଗରେ ବହୁତ ଖରାପ ସମୟ ଆସୁଅଛି ।

୨- ଗୀତା ଅଧ୍ୟୟନଦ୍ୱାରା ଭଗବାନ୍‌ଙ୍କ ପ୍ରତି ସମ୍ପୂର୍ଣ୍ଣ ଶ୍ରଦ୍ଧା ଜାତ ହୋଇପାରେ ।

୩- ଗୀତାର ଅର୍ଥ ବହୁତ ସରଳ ଅଟେ । ତାହାର ସାର ହେଲା— ତ୍ୟାଗଦ୍ୱାରା ଭଗବତ୍‌ପ୍ରାପ୍ତି ।

୪- ସର୍ବଦା ଭଜନ-ଧ୍ୟାନ, ଗୀତା ଅଭ୍ୟାସ କରୁଥିବା ବ୍ୟକ୍ତିଙ୍କ ପ୍ରତି ଭଗବାନ୍ ଓ ମହାତ୍ମାମାନେ ପ୍ରସନ୍ନ ରହନ୍ତି ।

୫- ମୋର ଗୀତା ଅତ୍ୟନ୍ତ ପ୍ରିୟ ଗ୍ରନ୍ଥ, କାରଣ ତାହା ମୋର ପ୍ରିୟ ଭଗବାନ୍‌ଙ୍କଦ୍ୱାରା ସୃଷ୍ଟ । ଏହାର ମନନ ପ୍ରତିଦିନ କରିବା ଉଚିତ ।

୬- ଯେପରି ଦଲାଲଙ୍କ ସହ ସେମ୍ପୁଲର ଗଣ୍ଠୁଲି ଧରି ମୂଲିଆ ବୁଲୁଥିବାବେଳେ ମାଲିକଙ୍କ ସହ ମୂଲିଆର ମଧ୍ୟ ଭେଟ ହୋଇଯାଏ, ସେହିପରି ଗୀତାର ପ୍ରଚାର ଯିଏ ନିଷ୍କାମ ଭାବରେ କରେ, ସେ ମଧ୍ୟ ପରମାତ୍ମାଙ୍କୁ ଭେଟିବାର ପାତ୍ର ହୋଇଯାଏ ।

୭- ଗୀତାର ପ୍ରଚାର ସବୁଠାରୁ ଉଚ୍ଚକୋଟୀର କର୍ମ ଅଟେ ଏବଂ ପରମାତ୍ମାଙ୍କ

ଧ୍ୟାନ ମଧ୍ୟ ଅତ୍ୟନ୍ତ ଉତ୍ତମ କାର୍ଯ୍ୟ ଅଟେ। ଏହି ଉଭୟ ମଧ୍ୟରେ ଗୀତାର ପ୍ରଚାର ଏକ ନମ୍ବର ଅଟେ ।

୮- ଯେଉଁ କଥା ଶୁଣିଲେ ଗୀତାର ପ୍ରଚାର ଓ ଭଗବତ୍ ଧ୍ୟାନ ପାଇଁ ଉତ୍ସାହ ବୃଦ୍ଧି ହୁଏ, ସେହି କଥା ସବୁ କାମ ଛାଡି କରିବା ଉଚିତ ।

୯- ଶ୍ରୀଗୀତାର ପ୍ରଚାର ସବୁଜାତିର ଲୋକମାନଙ୍କ ମଧ୍ୟରେ କରାଯିବା ଉଚିତ।

୧୦- ସତ୍‌ସଙ୍ଗ ଛାଡି ମଧ୍ୟ ଶ୍ରୀଗୀତାର କର୍ମ କରିବା ଉଚିତ ।

୧୧- ଶ୍ରୀଗୀତାର ମହିମା ଓ ପ୍ରଚାର ପରି ଲାଭଦାୟକ କାର୍ଯ୍ୟ କିଛି ନାହିଁ। ମୋତେ ଯାହା କିଛି ଲାଭ ଦେଖିବାକୁ ମିଳୁଛି, ତାହା ମଧ୍ୟ ଶ୍ରୀଗୀତାର ପ୍ରଭାବ ଅଟେ।

୧୨- ***ଗୋ, ଗୀତା, ଗଙ୍ଗା, ଗାୟତ୍ରୀ ଔର ଗୋବିନ୍ଦକା ନାମ। ଇନ୍ ପାଞ୍ଚୌଁକୀ ଶରଣସେ ପୂରନ ହୋୱେ କାମ॥*** କୌଣସି ଗୋଟିକର ଶରଣ ଦ୍ୱାରା ମଧ୍ୟ ମୁକ୍ତି ପ୍ରାପ୍ତ ହୋଇପାରେ। ଏମାନଙ୍କ ମଧ୍ୟରେ ଗୀତା ଓ ଗୋବିନ୍ଦଙ୍କ ନାମ ଶ୍ରେଷ୍ଠ ଅଟେ।

୧୩- ଗୀତା ଜ୍ଞାନର ଧାରା ଅଟେ ।

୧୪- ଭଗବାନ୍‌ଙ୍କୁ ପାଇବାପାଇଁ ଅର୍ଥ ସହିତ ଗୀତା ଅଭ୍ୟାସ କରିବା ଉଚିତ ।

୧୫- ଯିଏ ଗୀତାର ଶ୍ଳୋକକୁ ଅର୍ଥ, ଭାବ, ବିଷୟ ସହିତ ସ୍ମରଣ କରେ, ସେ ପ୍ରଥମ ଶ୍ରେଣୀ ଛାତ୍ର ଅଟେ ।

୧୬- ଶ୍ଳୋକର ଭାବ ଯିଏ ଗ୍ରହଣ କରେ, ସେ ଦ୍ୱିତୀୟ ଶ୍ରେଣୀର ଅଟେ ।

୧୭- ଯିଏ ଗୀତାନୁଯାୟୀ ଗୁଣ ଧାରଣ କରିବା ସଙ୍ଗେ ସଙ୍ଗେ ଅବଗୁଣଗୁଡିକୁ ତ୍ୟାଗ କରେ, ସେ ତୃତୀୟ ଶ୍ରେଣୀ ଛାତ୍ର ଅଟେ ।

୧୮- ସଂସାରର ଉନ୍ନତିପାଇଁ ବିଦ୍ୟାଳୟଗୁଡିକଦ୍ୱାରା ଗୀତାର ପ୍ରଚାର ହେବା ଆବଶ୍ୟକ ।

୧୯- ଗୀତା ଅର୍ଥ ସହିତ ଅଭ୍ୟାସ କଲେ ଅନେକ ଲାଭ ହୁଏ, କାରଣ ମରଣ କାଳରେ ମନେ ପଡ଼ିଗଲେ ଉଦ୍ଧାର ମିଳିଯାଏ ।

୨୦- ଗୀତାର ଏକ ଏକ ଶବ୍ଦ ହୀରା, ମାଣିକ ସଦୃଶ ଅଟେ ।

୨୧- ମୁଁ ଗୀତାକୁ ହିଁ ସ୍ୱୀକାର କରେ । ଗୀତା ବିରୁଦ୍ଧରେ ଯାହା କିଛି କୁହାଯାଏ, ତାହା ମୋଦ୍ୱାରା ଗ୍ରହଣୀୟ ନୁହେଁ ।

୨୨- ଶ୍ରୁତି, ସ୍ମୃତି ସକଳ ଶାସ୍ତ୍ରର ସାର ଗୀତା ଅଟେ ।

୨୩- ଗୀତାର ପ୍ରଚାର ଘରେ ଘରେ ହେବା ଉଚିତ । ଲୋମ-ଲୋମରେ ଏହା ଅନୁଭୂତ ହେବା ଉଚିତ ।

୨୪- ଗୀତା ଏକ ପରମ ରହସ୍ୟମୟ ଗ୍ରନ୍ଥ ଅଟେ । ଏଥିରେ ସମସ୍ତ ବେଦ ଓ ଉପନିଷଦର ସାର ସଂଗୃହୀତ ହୋଇଅଛି ।

୨୫- ଗୀତା ସର୍ବଶାସ୍ତ୍ରମୟୀ ଅଟେ । ସକଳ ଶାସ୍ତ୍ରର ସାର ଏଥିରେ ଭରି ରହିଅଛି । ଏହାକୁ ସକଳ ଶାସ୍ତ୍ରର ଖଣି କହିଲେ ଅତ୍ୟୁକ୍ତି ହେବ ନାହିଁ ।

୨୬- ଭଗବଦ୍‌ଗୀତା ଏପରି ଏକ ଅତୁଳନୀୟ ଶାସ୍ତ୍ର, ଯାହାର ଗୋଟିଏ ହେଲେ ଶବ୍ଦ ସଦୁପଦେଶବିହୀନ ନୁହେଁ । ସେଥିରେ ଯାହା କିଛି କୁହାଯାଇ ଅଛି, ତାହା ପ୍ରତ୍ୟେକ ଅକ୍ଷର ସହିତ ଯଥାର୍ଥ ଅଟେ ।

୨୭- ଶ୍ରୀମଦ୍‌ଭଗବଦ୍‌ଗୀତା ସାକ୍ଷାତ୍ ଭଗବାନ୍‌ଙ୍କର ଦିବ୍ୟବାଣୀ ଅଟେ । ଯଥାର୍ଥରେ ଏହାର ବର୍ଣ୍ଣନା କେହି କରିପାରିବ ନାହିଁ ।

୨୮- ଗୀତା ସମ୍ବନ୍ଧରେ ସ୍ପଷ୍ଟ ଜ୍ଞାନ ଲାଭ କରିବା ପରେ, ସକଳ ଶାସ୍ତ୍ରର ତାତ୍ତ୍ୱିକ ଜ୍ଞାନ ଆପେ ଆପେ ସ୍ପଷ୍ଟ ହୋଇଯାଏ, ତାହାପାଇଁ ପୃଥକ ପରିଶ୍ରମ କରିବାକୁ ପଡେ ନାହିଁ ।

୨୯- ଏହି ଗୀତା କମଳନାଭ ଭଗବାନ୍‌ଙ୍କର ମୁଖ-କମଳ-ନିଃସୃତ ଅଟେ । ତାଙ୍କର ନାଭିରୁ କମଳ ଉଦ୍ଭୂତ ହୋଇଥିଲା । ସେହି କମଳରୁ ବ୍ରହ୍ମା ଉତ୍ପନ୍ନ ହେଲେ । ବ୍ରହ୍ମାଙ୍କଠାରୁ ଚାରିବେଦ ପ୍ରକଟ ହେଲେ ଏବଂ ସେମାନଙ୍କ ଆଧାରରେ ଋଷିଗଣ ସକଳ ଶାସ୍ତ୍ରର ରଚନା କଲେ । ତେଣୁ ଗୀତାକୁ ଭାବ ସହିତ ଭଲଭାବେ ବୁଝି ଗ୍ରହଣ କଲେ ଅନ୍ୟ ଶାସ୍ତ୍ରଗୁଡିକର ଆବଶ୍ୟକତା ପଡେ ନାହିଁ। କାରଣ ସମସ୍ତ ଶାସ୍ତ୍ର ଭଗବାନ୍‌ଙ୍କ ନାଭିକମଳରୁ ବାହାରିଛି; ଅଥଚ ଗୀତା ସ୍ୱୟଂ ଭଗବାନ୍‌ଙ୍କ ମୁଖକମଳଦ୍ୱାରା କଥିତ ।

୩୦- ଗୀତାର ରଚନା ଏପରି ସରଳ ଓ ସୁନ୍ଦର ଯେ ସାମାନ୍ୟଭାବେ ଅଭ୍ୟାସ କଲେ ମନୁଷ୍ୟ ସହଜରେ ବୁଝିପାରେ । କିନ୍ତୁ ଏହାର ଅର୍ଥ ଓ ରହସ୍ୟ ଏତେ ଗୂଢ଼ ଓ ଗଭୀର ଯେ ଏହାକୁ ଆଜୀବନ ଅଭ୍ୟାସ କଲେ ମଧ୍ୟ ଏହାର ରହସ୍ୟ ଶେଷ ହୁଏ ନାହିଁ ।

୩୧- ଭଗବାନ୍‌ଙ୍କର ଗୁଣ, ପ୍ରଭାବ, ସ୍ୱଭାବ, ମର୍ମ, ଉପାସନା ତଥା କର୍ମ

ଓ ଜ୍ଞାନର ବର୍ଣ୍ଣନ ଯେଉଁରୂପେ ଏହି ଗୀତାରେ କରାଯାଇଅଛି, ସେପରି ଅନ୍ୟ କୌଣସି ଶାସ୍ତ୍ରରେ ମିଳିବା କଠିନ ଅଟେ ।

୩୨- ଏକାଗ୍ରଚିତ୍ତ ହୋଇ ଶ୍ରଦ୍ଧା ଓ ଭକ୍ତିର ସହିତ ବିଚାର କଲେ ଗୀତାର ପଦେ ପଦେ ପରମ ରହସ୍ୟ ପ୍ରକାଶିତ ହୁଏ ।

୩୩- ସକଳ ଶାସ୍ତ୍ରର ଉତ୍ପତ୍ତି ବେଦରୁ ହେଲା । ବେଦର ପ୍ରକଟ ବ୍ରହ୍ମାଙ୍କର ମୁଖରୁ ହେଲା ଓ ବ୍ରହ୍ମା ଭଗବାନ୍‌ଙ୍କର ନାଭିକମଳରୁ ଉତ୍ପନ୍ନ ହେଲେ । ଏହିପରି ସକଳ ଶାସ୍ତ୍ର ଓ ଭଗବାନ୍‌ଙ୍କ ମଧ୍ୟରେ ବଡ଼ ବ୍ୟବଧାନ ରହିଗଲା । କିନ୍ତୁ ଗୀତା ତ ସ୍ୱୟଂ ଭଗବାନ୍‌ଙ୍କର ମୁଖାରବିନ୍ଦରୁ ବାହାରିଛି । ତେଣୁ ଏହା ସକଳ ଶାସ୍ତ୍ରରୁ ବଡ କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ ।

୩୪- ଗୀତା ଗଙ୍ଗାଠାରୁ ମଧ୍ୟ ବଡ । ଶାସ୍ତ୍ରରେ ଗଙ୍ଗାସ୍ନାନର ଫଳ ମୁକ୍ତିଲାଭ କୁହାଯାଇଅଛି । କିନ୍ତୁ ଗଙ୍ଗାରେ ସ୍ନାନ କରିଥିବା ବ୍ୟକ୍ତି ସ୍ୱୟଂ ମୁକ୍ତିଲାଭ କରିପାରେ । ସେ ଅନ୍ୟକୁ ଉଦ୍ଧାର କରି ପାରେ ନାହିଁ । କିନ୍ତୁ ଗୀତାରୂପୀ ଗଙ୍ଗାରେ ବୁଡ ମାରିଥିବା ବ୍ୟକ୍ତି ସ୍ୱୟଂ ମୁକ୍ତ ହେବା ସଙ୍ଗେ ସଙ୍ଗେ ଅନ୍ୟକୁ ମଧ୍ୟ ମୁକ୍ତି ପ୍ରଦାନ କରିପାରେ ।

୩୫- ଗଙ୍ଗା ତ ଭଗବାନ୍‌ଙ୍କ ପାଦରୁ ବାହାରି ଅଛି, ମାତ୍ର ଗୀତା ସାକ୍ଷାତ୍ ଭଗବାନ୍‌ଙ୍କ ମୁଖାରବିନ୍ଦରୁ ନିଃସୃତ ହୋଇଅଛି ।

୩୬- ଯିଏ ଆସି ଗଙ୍ଗାରେ ସ୍ନାନ କରେ, ସେ କେବଳ ମୁକ୍ତି ପାଏ । ମାତ୍ର ଗୀତା ଘରେ ଘରେ ପ୍ରବେଶ କରି ମୁକ୍ତିର ମାର୍ଗ ଦର୍ଶାଏ ।

୩୭- ଗୀତା ଗାୟତ୍ରୀରୁ ବଡ ଅଟେ । ଗାୟତ୍ରୀ ଜପ କଲେ ମୁକ୍ତି ମିଳେ । ଏହା ସତ୍ୟ ଅଟେ । କିନ୍ତୁ ଗାୟତ୍ରୀ ଜପକାରୀ ସ୍ୱୟଂ ମୁକ୍ତି ପାଏ, ମାତ୍ର ଗୀତା ଅଭ୍ୟାସକାରୀ ନିଜେ ତରିଯାଏ ଓ ଅନ୍ୟକୁ ତାରି ଦିଏ । ଯେବେ ଭଗବାନ୍ ସ୍ୱୟଂ ତାହାରି ହୋଇଯାଆନ୍ତି, ତେବେ ମୁକ୍ତି କେଉଁ ବଡ କଥା ? ମୁକ୍ତି ତ ତାର ଚରଣରଜରେ ବାସ କରେ । ସେ ମୁକ୍ତିର ଛତ୍ର ଖୋଲି ଦିଏ ।

୩୮- ବାସ୍ତବରେ ଗୀତା ସମାନ ସଂସାରରେ ଯଜ୍ଞ, ଦାନ, ତପ, ତୀର୍ଥ, ବ୍ରତ, ସଂଯମ ଓ ଉପବାସ ଆଦି କିଛି ନୁହେଁ ।

୩୯- ଗୀତା ସ୍ୱୟଂ ଭଗବାନ୍‌ଙ୍କଠାରୁ ବଡ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ଭଗବାନ୍ ନିଜେ କହିଛନ୍ତି—

**ଗୀତାଶ୍ରୟେଽହଂ ତିଷ୍ଠାମି ଗୀତା ମେ ଚୋତ୍ତମଂ ଗୃହମ୍ ।**
**ଗୀତାଜ୍ଞାନମୁପାଶ୍ରିତ୍ୟ ତ୍ରୀଁଲ୍ଲୋକାନ୍ ପାଳୟାମ୍ୟହମ୍ ॥**

(ବରାହପୁରାଣ)

୪୦- ଗୀତା ଭଗବାନ୍‌ଙ୍କର ପ୍ରଧାନ ରହସ୍ୟମୟ ଆଦେଶ ଅଟେ । ତେଣୁ ଏହାକୁ ଯେ ପାଳନ କରେ, ସେ ତାଙ୍କର ପ୍ରାଣଠାରୁ ଅଧିକ ପ୍ରିୟ ଅଟେ । ଏଥିରେ ଆଶ୍ଚର୍ଯ୍ୟର କଥା କ'ଣ ଅଛି ?

୪୧- ଗୀତା ଭଗବାନ୍‌ଙ୍କର ଶ୍ୱାସ ଅଟେ, ହୃଦୟ ଅଟେ ଏବଂ ଭଗବାନ୍‌ଙ୍କର ବାଙ୍‌ମୟୀ ମୂର୍ତ୍ତି ଅଟେ ।

୪୨- ଭଗବାନ୍ ମୁକ୍ତ କଣ୍ଠରେ ଘୋଷଣା କରି ଅଛନ୍ତି ଯିଏ ମୋର ଏହି ଗୀତାରୂପ ଆଜ୍ଞା ପାଳନ କରିବ, ତାହାର ନିଃସନ୍ଦେହ ମୁକ୍ତି ହୋଇଯିବ ।

୪୩- ଯାହାର ହୃଦୟ, ବାଣୀ, ଶରୀର, ଇନ୍ଦ୍ରିୟଗଣ ଏବଂ ସମସ୍ତ କର୍ମ ଗୀତାରେ ମଗ୍ନ, ସେ ସାକ୍ଷାତ୍ ଗୀତାର ମୂର୍ତ୍ତି ଅଟେ । ତାହାର ଦର୍ଶନ ସ୍ପର୍ଶ, ଭାଷଣ ଏବଂ ଚିନ୍ତନଦ୍ୱାରା ମଧ୍ୟ ଅନ୍ୟମାନେ ପବିତ୍ର ହୋଇ ଯାଆନ୍ତି ।

୪୪- ଗୀତା ଜ୍ଞାନର ଅଥଳ ସମୁଦ୍ର ଅଟେ । ଏହା ମଧ୍ୟରେ ଜ୍ଞାନର ଅନନ୍ତ ଭଣ୍ଡାର ପରିପୂର୍ଣ୍ଣ ଅଛି । ଏହାର ତତ୍ତ୍ୱ ବୁଝାଇବାରେ ବଡ ବଡ ବିଦ୍ୱାନ୍ ଏବଂ ତତ୍ତ୍ୱାଲୋଚକ ମହାତ୍ମାମାନଙ୍କର ବାଣୀ ମଧ୍ୟ ସମର୍ଥ ହୋଇପାରେ ନାହିଁ, କାରଣ ତାର ପୂର୍ଣ୍ଣ ରହସ୍ୟ କେବଳ ଭଗବାନ୍ ଶ୍ରୀକୃଷ୍ଣ ହିଁ ଜାଣନ୍ତି ।

୪୫- ଗୀତା ଅନନ୍ତଭାବର ଅଥଳ ସମୁଦ୍ର ଅଟେ । ସମୁଦ୍ର ମଧ୍ୟରେ ଗଭୀରତମ ପ୍ରଦେଶକୁ ବୁଡିଲେ ଯେପରି ରତ୍ନଲାଭ ହୁଏ, ସେହିପରି ଏହି ଗୀତା ସାଗରରେ ଗଭୀର ବୁଡ଼ ପକାଇଲେ ଜିଜ୍ଞାସୁମାନେ ନିତ୍ୟ ନୂତନ ବିଚିତ୍ରମୟ ଭାବ-ରତ୍ନ-ରାଶି ଉପଲବ୍ଧ କରନ୍ତି ।

୪୬- ଯେପରି ବେଦ ପରମାତ୍ମାଙ୍କର ନିଃଶ୍ୱାସ ଅଟେ, ସେହିପରି ଗୀତା ମଧ୍ୟ ସାକ୍ଷାତ୍ ଭଗବାନ୍‌ଙ୍କ ବଚନ ହୋଇଥିବାରୁ ଭଗବତ୍-ସ୍ୱରୂପ ଅଟେ । ଏଣୁ ଭଗବାନ୍‌ଙ୍କ ସଦୃଶ ଗୀତାର ସ୍ୱରୂପ ମଧ୍ୟ ଭକ୍ତମାନଙ୍କୁ ନିଜ ଭାବନା ଅନୁଯାୟୀ ଭିନ୍ନ ଭିନ୍ନ ରୂପରେ ପ୍ରତିଭାସିତ ହୁଏ ।

୪୭- କୃପାସିନ୍ଧୁ ଭଗବାନ୍ ନିଜର ପ୍ରିୟସଖା ଭକ୍ତ ଅର୍ଜୁନକୁ ନିମିତ୍ତ କରି ସମଗ୍ର ସଂସାରର କଲ୍ୟାଣପାଇଁ ଏହି ଅଦ୍‌ଭୁତ ଗୀତା-ଶାସ୍ତ୍ର କହିଥିଲେ ।

୪୮- ମନୁଷ୍ୟକୁ ମୁକ୍ତିମାର୍ଗକୁ ଆଣିବା ପାଇଁ କୌଣସି ଏକ ଉତ୍ତମ ଗ୍ରନ୍ଥର ଆଶ୍ରୟ ନେବା ଉଚିତ । ମୋ ମତରେ ଏପରି ପବିତ୍ର ଗ୍ରନ୍ଥ ହିଁ "ଶ୍ରୀମଦ୍‌ଭଗବଦ୍‌ଗୀତା" ଅଟେ ।

୪୯- ସୀମିତ ସରଳ ଶବ୍ଦରେ କଠିନରୁ କଠିନ ସିଦ୍ଧାନ୍ତଗୁଡିକୁ ବୁଝାଉଥିବା, ସକଳ ପ୍ରକାରର ଅଧିକାରୀମାନଙ୍କୁ ଅଧିକାର ଅନୁଯାୟୀ ଉପଯୋଗୀ ମାର୍ଗ

ନିର୍ଦ୍ଦେଶ କରୁଥିବା, ସଠିକ୍ ଧର୍ମର ପଥପ୍ରଦର୍ଶକ, ପକ୍ଷପାତ ଓ ସ୍ୱାର୍ଥରହିତ ଉପଦେଶ ପ୍ରଦାନ କରିବାରେ ସମର୍ଥ ଏହି ଭଗବଦ୍‌ଗୀତା ହିଁ ଏକମାତ୍ର ସାର୍ବଭୌମ ମହାନ୍ ଗ୍ରନ୍ଥ ଅଟେ।

୫୦- ଗୀତା ଭଗବାନ୍‌ଙ୍କ ଶ୍ରୀମୁଖର ବଚନାମୃତ ଅଟେ। ଗୀତାରେ **"ଶ୍ରୀଭଗବାନୁବାଚ"** ନାମରେ ଯେତେଗୁଡ଼ିଏ ବାଣୀ ଅଛି, ସେଥିରୁ କେତେକ ଶ୍ରୁତିର ଅବିକଳ ବଚନ ଅଟେ। ଅର୍ଜ୍ଜୁନକୁ ଏଗୁଡ଼ିକ ଶ୍ଳୋକରୂପରେ କୁହାଯାଇଥିଲା ଏବଂ ଅବଶିଷ୍ଟ ସମ୍ବାଦ ସାଧାରଣ ଭାଷାରେ ଥିଲା, ଯାହାକୁ ବ୍ୟାସଦେବ ଶ୍ଳୋକରେ ପରିଣତ କରିଥିଲେ।

୫୧- ଗୀତାପରି ସଂସାରରେ କୌଣସି ଗ୍ରନ୍ଥ ନାହିଁ। ସମସ୍ତ ମତାବଲମ୍ବୀ ଏହାର ଉତ୍କୃଷ୍ଟତା ସ୍ୱୀକାର କରନ୍ତି। ତେଣୁ ଆମେ ଗୀତା ଏପରି ଅଭ୍ୟାସ କରିବା ଉଚିତ ଯେପରି ଆମର ଆତ୍ମା ଗୀତାମୟ ହୋଇଯିବ।

୫୨- ଗୀତାର ଅର୍ଥ ବୁଝିବାପାଇଁ ବିଶେଷ ପ୍ରଯତ୍ନ କରିବା ଉଚିତ । ଗୀତାର ଯଥେଷ୍ଟ ଅଭ୍ୟାସ ଆବଶ୍ୟକ । ଯେତେବେଳେ ପାଠ କରିବ, ତାହାର ଅର୍ଥ ଉପରେ ଯଥେଷ୍ଟ ଧ୍ୟାନ ଦେବା ଉଚିତ । ପ୍ରଥମେ ଅର୍ଥ ପଢ଼ି ନିଅ । ତାହାପରେ ଶ୍ଳୋକ ପାଠ କର ।

୫୩- ଗୀତାର ଯେଉଁ ଶ୍ଳୋକ ତୁମକୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ବୋଧ ହେବ, ତାହାକୁ ମୁଖସ୍ଥ କରି ନିଅ । ଯେଉଁ ବ୍ୟକ୍ତି ବିଭିନ୍ନ ଧର୍ମଗ୍ରନ୍ଥ ପଢ଼ିବାକୁ ସମୟର ଅଭାବ ଅନୁଭବ କରନ୍ତି, ସେମାନେ ଅର୍ଥ ସହିତ ଅଧ୍ୟୟନ ଅବଶ୍ୟ କରିବା ଉଚିତ ଓ ଏହାର ଉପଦେଶଗୁଡ଼ିକୁ ପାଳନ କରିବାକୁ ତତ୍ପର ହେବା ଉଚିତ ।

୫୪- ଗୀତାରେ ଶତ ଶତ ସଂଖ୍ୟାରେ ଏପରି କେତେକ ଶ୍ଳୋକ ଅଛି, ତାହା ମଧ୍ୟରୁ ଗୋଟିଏ ଗୋଟିଏ ଶ୍ଳୋକକୁ ପୂର୍ଣ୍ଣରୂପେ ପାଳନ କଲେ ମନୁଷ୍ୟ ମୁକ୍ତ ହୋଇଯାଏ, ତେବେ ସମ୍ପୂର୍ଣ୍ଣ ଗୀତା କଥା କ'ଣ କହିବା? ଉଦାହରଣସ୍ୱରୂପ—ଅଧ୍ୟାୟ ୨।୭୧; ୩।୩୦; ୪।୩୪; ୫।୨୯; ୬।୪୭; ୭।୧୪; ୮।୧୪; ୯।୩୨; ୧୦।୯-୧୦; ୧୧।୫୪, ୫୫; ୧୨।୮; ୧୩।୧୦; ୧୪।୧୯, ୨୬; ୧୫।୧୯; ୧୬।୧; ୧୭।୧୬; ୧୮।୬୫, ୬୬ ଇତ୍ୟାଦି।

୫୫- ଗୀତା ଧର୍ମର ପ୍ରଚ୍ଚାରପାଇଁ ସମସ୍ତେ ଯତ୍ନଶୀଳ ହେବା ଉଚିତ। ଏହାଦ୍ୱାରା ସମସ୍ତଙ୍କୁ ଅପରିମିତ ସୁଖ ମିଳିପାରେ। ଏହା ଏକ ସରଳ, ସହଜ ଓ ମୁଖ୍ୟ ଉପାୟ ଅଟେ ।

୫୬- ଗୀତାର ପ୍ରଚାରପାଇଁ ଭଗବାନ୍ କୌଣସି ଦେଶ, କାଳ, ଜାତି ଓ ବ୍ୟକ୍ତିବିଶେଷପାଇଁ ପ୍ରତିବନ୍ଧକ ରଖି ନାହାନ୍ତି । ବରଂ ନିଜ ଭକ୍ତମାନଙ୍କ ଗହଣରେ ଗୀତାର ପ୍ରଚାର କରୁଥିବା ବ୍ୟକ୍ତିକୁ ନିଜର ମହାନ୍ ପ୍ରେମୀ ହିସାବରେ ଗ୍ରହଣ କରନ୍ତି ।

୫୭- ସମସ୍ତ ଦେଶଗୁଡ଼ିକରେ ସକଳ ଜାତିମାନଙ୍କ ମଧ୍ୟରେ ଗୀତାର ପ୍ରଚାର ଯଥେଷ୍ଟ ପରିମାଣରେ ହେବା ଉଚିତ ।

୫୮- କେବଳ ଗୀତାର ପ୍ରଚାରଦ୍ୱାରା ପୃଥିବୀର ପ୍ରତ୍ୟେକ ମନୁଷ୍ୟର ମୁକ୍ତି ଲାଭ ହୋଇପାରେ ।

୫୯- ଗୀତା ପାଠ କରୁଥିବା ବ୍ୟକ୍ତି ମଧ୍ୟରେ ସଦାଚାର, ଶ୍ରଦ୍ଧା, ଭକ୍ତି ଓ ପ୍ରେମ ଥିବା ଆବଶ୍ୟକ, କାରଣ ଶ୍ରଦ୍ଧାହୀନ, ଶୁଣିବାକୁ ଅନିଚ୍ଛୁକ, ଆଚରଣଭ୍ରଷ୍ଟ ଓ ଭକ୍ତିହୀନ ବ୍ୟକ୍ତିମାନଙ୍କ ମଧ୍ୟରେ ଗୀତାର ପ୍ରଚାର ନ କରିବା ପାଇଁ ଭଗବାନ୍ ନିଷେଧ କରିଅଛନ୍ତି ।

୬୦- ଗୀତାରେ କୁହାଯାଇଥିବା ଉପାୟ ଅନୁଯାୟୀ ଆଚରଣ କରିବା ଅଧିକାର ମନୁଷ୍ୟକୁ ଦିଆଯାଇ ଅଛି । ଜଗଦ୍‌ଗୁରୁ ଭଗବାନ୍ ଶ୍ରୀକୃଷ୍ଣ ଏହି ଉପଦେଶ ସମସ୍ତ ମାନବଜାତିର କଲ୍ୟାଣ ଉଦ୍ଦେଶ୍ୟରେ ପ୍ରଦାନ କରିଅଛନ୍ତି । ଏହା କୌଣସି ନିର୍ଦ୍ଦିଷ୍ଟ ବର୍ଣ୍ଣ ବା ଆଶ୍ରମ ପାଇଁ ଉଦ୍ଦିଷ୍ଟ ନୁହେଁ । ଏହାହିଁ ଗୀତାର ବୈଶିଷ୍ଟ୍ୟ ଅଟେ ।

୬୧- ମୁକ୍ତି ମନୁଷ୍ୟର ଜନ୍ମସିଦ୍ଧ ଅଧିକାର ଏବଂ ଗୀତା ମୁକ୍ତିମାର୍ଗ ପ୍ରଦର୍ଶନର ଏକ ପ୍ରଧାନ ଗ୍ରନ୍ଥ ଅଟେ । ତେଣୁ ପରମେଶ୍ୱରଙ୍କଠାରେ ପ୍ରେମ ଓ ଭକ୍ତି ରଖିଥିବା ପ୍ରତ୍ୟେକ ମନୁଷ୍ୟର ଏହି ଗ୍ରନ୍ଥ ଉପରେ ଅଧିକାର ଅଛି ।

୬୨- ଗୀତାରୂପୀ ଦୁଗ୍ଧାମୃତ ଅର୍ଜୁନରୂପୀ ବତ୍ସକୁ ନିମିତ୍ତ କରି ସମଗ୍ର ବିଶ୍ୱକୁ ମିଳିଲା । ପରନ୍ତୁ ତାହା ଏତେ ସାର୍ବଭୌମ ଓ ସୁମଧୁର ଯେ ଯାହାକୁ ବିଶ୍ୱର ସକଳ ଦେଶ, ଜାତି, ବର୍ଣ୍ଣ ଓ ଆଶ୍ରମର ବ୍ୟକ୍ତି ଅବାରିତ ପାନ କରି ଅମରତ୍ୱ ପ୍ରାପ୍ତ କରିପାରନ୍ତି ।

୬୩- ଯେପରି ଭଗବତ୍‌ପ୍ରାପ୍ତି ଉପରେ ସମସ୍ତଙ୍କର ଅଧିକାର ଅଛି, ସେହିପରି ଗୀତା ଉପରେ ମଧ୍ୟ ସମସ୍ତଙ୍କର ଅଧିକାର ଅଛି ।

୬୪- ଗୀତା ସକଳ ବର୍ଣ୍ଣାଶ୍ରମର ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ଅଟେ । ସମସ୍ତେ ନିଜ ନିଜର ବର୍ଣ୍ଣାଶ୍ରମ କର୍ମ କରିବା ମଧ୍ୟରେ ସାଂଖ୍ୟ ବା ଯୋଗ ଉଭୟରୁ କୌଣସି ଗୋଟିଏକୁ ନିଷ୍ଠାର ସହ ସାଧନ କରିପାରନ୍ତି ।

୬୫- ଗୀତାରେ କର୍ମ, ଭକ୍ତି ଓ ଜ୍ଞାନ—ଏହି ତିନୋଟି ସିଦ୍ଧାନ୍ତର ସ୍ୱ ସ୍ୱ ସ୍ଥାନରେ ପ୍ରାଧାନ୍ୟ ରହିଅଛି ।

୬୬- ଜ୍ଞାନ, କର୍ମ ଓ ଭକ୍ତି—ତିନୋଟିର ହିଁ ସମ୍ୟକ୍‌ଭାବରେ ପ୍ରତିପାଦନ ହୋଇଅଛି ।

୬୭- ଗୀତା ଅଧିକାରୀ-ଭେଦରେ ଜ୍ଞାନଯୋଗ ଓ କର୍ମଯୋଗକୁ ମୁକ୍ତିର ଦୁଇଟି ସ୍ୱତନ୍ତ୍ର ଉପାୟରୂପେ ପ୍ରତିପାଦନ କରେ ।

୬୮- ଗୀତା ବର୍ଣ୍ଣାଶ୍ରମକୁ ଅନୁମୋଦନ କରେ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଚାରିବର୍ଣ୍ଣ ନିଜ ନିଜର ସ୍ୱାଭାବିକ ବର୍ଣ୍ଣଧର୍ମକୁ ସ୍ୱାର୍ଥରହିତ ନିଷ୍କାମଭାବରେ ସମ୍ପାଦନ କଲେ ସେମାନଙ୍କର ମୁକ୍ତି ହୁଏ ।

୬୯- ଜନ୍ମ ଓ କର୍ମ ଉଭୟ ଦୃଷ୍ଟିରୁ ଗୀତା ବର୍ଣ୍ଣାଶ୍ରମକୁ ସ୍ୱୀକୃତି ପ୍ରଦାନ କରେ । **''ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ''** (୪ । ୧୩) ।

୭୦- ଗୀତା ମୂର୍ତ୍ତିପୂଜାକୁ ସ୍ୱୀକାର କରେ, ଅଧ୍ୟାୟ ୯ । ୨୬ ଏବଂ ୯ । ୩୪ ଶ୍ଳୋକ ଦୁଇଟିରୁ ଏହା ପ୍ରମାଣିତ ହେଉଅଛି ।

୭୧- ଗୀତା ବେଦକୁ ସ୍ୱୀକାର କରେ ଏବଂ ତାହାକୁ ବହୁ ଉଚ୍ଚ ଦୃଷ୍ଟିରେ ଦେଖେ । ଗୀତାରେ ଯେତେଗୁଡିଏ ଉତ୍ତମଗୁଣ ସମ୍ବନ୍ଧରେ କୁହାଯାଇଅଛି, ସେମାନଙ୍କ ମଧ୍ୟରେ ଏପରି ଏକ ଗୁଣ ଅଛି, ଯାହାଦ୍ୱାରା ମହାପୁରୁଷ ସହଜରେ ବାରି ହୋଇଯାଆନ୍ତି । ସେହି ଗୁଣଟିର ନାମ ''ସମତା'' ।

୭୨- ଗୀତାରେ ପରମାର୍ଥ ପ୍ରୟୋଗର ଉତ୍ତମ କଳା ବର୍ଣ୍ଣିତ ହୋଇଅଛି ।

୭୩- ଯାହାକୁ ଯେଉଁ ବିଷୟ ପ୍ରିୟ ଓ ଯେଉଁ ସିଦ୍ଧାନ୍ତ ଗ୍ରହଣୀୟ, ତାହା ଗୀତାରେ ଉଦ୍‌ଭାସିତ ହୋଇଅଛି ।

୭୪- ଶ୍ରୀମଦ୍‌ଭଗବଦ୍‌ଗୀତା ଜୟର ଧ୍ୱଜା ଉଡାଇଅଛି, ଅତଃ ଆମର ଅବନତି କେଉଁ କାରଣରୁ ହେବ ।

୭୫- ଗୀତାଜ୍ଞାନ ଉପଲବ୍ଧି ହେବାପରେ ଆଉ ଅଧିକ କିଛି ଜାଣିବାକୁ ରହେ ନାହିଁ ।



# ଭଗବତ୍ତତ୍ତ୍ୱ

୧- ଈଶ୍ୱରଙ୍କର ତାତ୍ତ୍ୱିକ ସ୍ୱରୂପ ଅଲୌକିକ ଅଟେ । ପରମରହସ୍ୟମୟ ଓ ଗୁହ୍ୟତମ ଅଟେ । କେବଳ ଯେଉଁମାନେ ତାଙ୍କୁ ପାଇଛନ୍ତି, ସେମାନେ ତାହା ଜାଣନ୍ତି ।

୨- ଭଗବାନ୍‌ଙ୍କ ମଧ୍ୟରେ କୌଣସି ଗୁଣ ନାହିଁ, ସେ ଗୁଣାତୀତ ଅଟନ୍ତି । ଭଲ-ମନ୍ଦ ସକଳଗୁଣ ତାଙ୍କ ମଧ୍ୟରେ ଅଛି । ତାଙ୍କ ମଧ୍ୟରେ କେବଳ ସଦ୍‌ଗୁଣ ଅଛି, ଦୁର୍ଗୁଣ ଆଦୌ ନାହିଁ । ଏହି ତିନୋଟି କଥା ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ କୁହାଯାଇପାରେ ।

୩- ଆଦି ପୁରୁଷ ବିଷ୍ଣୁ ସର୍ବସମର୍ଥ ଓ ସର୍ବଗୁଣସମ୍ପନ୍ନ ଅଟନ୍ତି । ସତ୍ତ୍ୱଗୁଣର ମୂର୍ତ୍ତି ଅଟନ୍ତି । ସାତ୍ତ୍ୱିକ ତେଜ, ପ୍ରଭାବ, ସାମର୍ଥ୍ୟ ଓ ବିଭୂତି ଆଦିରେ ବିଭୂଷିତ ଅଟନ୍ତି । ଶୁଦ୍ଧ ସତ୍ତ୍ୱ ହିଁ ତାଙ୍କର ସ୍ୱରୂପ ଅଟେ ।

୪- ଭଗବାନ୍‌ଙ୍କ ସ୍ୱରୂପକୁ ଭଗବାନ୍ ହିଁ ଜାଣନ୍ତି । ତତ୍ତ୍ୱଜ୍ଞ ଲୋକେ ସଂକେତରୂପରେ ତାଙ୍କର ସ୍ୱରୂପର କିୟଦଂଶ ବର୍ଣ୍ଣନା କରିପାରନ୍ତି । ମାତ୍ର ଯାହା କିଛି ସେମାନେ ବର୍ଣ୍ଣନ କରନ୍ତି, ଭଗବାନ୍ ତାଠାରୁ ଅଧିକ ବିଚିତ୍ରମୟ ଅଟନ୍ତି ।

୫- ଏ ସମସ୍ତ ଜଗତ୍ ଭଗବାନ୍‌ଙ୍କର ଏକ ଅଂଶରେ ବିଦ୍ୟମାନ । ଭଗବାନ୍ ହିଁ ଏହି ଜଗତ୍ ରୂପରେ ଅଭିବ୍ୟକ୍ତ ହେଉ ଅଛନ୍ତି ।

୬- ଏହି ଚରାଚର ଜଗତ୍ ପରମାତ୍ମାଙ୍କର ସଗୁଣସ୍ୱରୂପ ଅଟେ । ମାତ୍ର ଯେଉଁଠାରେ ଜଗତ୍ ନାହିଁ, କେବଳ ପରମାତ୍ମା ହିଁ ବିଦ୍ୟମାନ, ତାହା ଗୁଣାତୀତ ଅଟେ ।

୭- ଭଗବାନ୍ ଯେକୌଣସି ପରିସ୍ଥିତିରେ, ଯେକୌଣସି ସମୟରେ, ଯେକୌଣସି ସ୍ଥାନରେ ଓ ଯେକୌଣସି ରୂପରେ ପ୍ରକଟ ହୋଇପାରନ୍ତି ।

୮- ନିରାକାର-ସାକାର ଉଭୟ ହିଁ ଏକ ତତ୍ତ୍ୱ ଅଟେ ।

୯- ଦେବର୍ଷି ନାରଦ ମଧ୍ୟ ଭକ୍ତିସୂତ୍ରରେ କହିଛନ୍ତି—**"ସା ତ୍ୱସ୍ମିନ୍ ପରମପ୍ରେମରୂପା"** ସେହି ପରମେଶ୍ୱରଙ୍କଠାରେ ଅତିଶୟ ପ୍ରେମ ହିଁ ଭକ୍ତି ଅଟେ । **"ଅମୃତସ୍ୱରୂପା ଚ"** ଏବଂ ସେ ମଧ୍ୟ ଅମୃତସ୍ୱରୂପ ଅଟନ୍ତି ।

୧୦- ଏହିପରି ଅନେକ ଭକ୍ତି ଅଛି । ଏହି ଭକ୍ତିରୁ ବୋଧ ହୁଏ ଯେ ଈଶ୍ୱରଙ୍କଠାରେ ଯେଉଁ ପରମପ୍ରେମ ରହିଛି, ତାହାହିଁ ଅମୃତ, ତାହାହିଁ ଭକ୍ତି ଅଟେ । ଯଦି ଆମେ କହିବା ଯେ ବ୍ୟାକରଣ ଦୃଷ୍ଟିରୁ ଭକ୍ତିର ଅର୍ଥ ସେବା, କାରଣ ଭକ୍ତି ଶବ୍ଦ **"ଭଜ ସେବାୟାମ୍"** ଧାତୁରୁ ସୃଷ୍ଟ ବୋଲି କହିବା ଠିକ୍ ଅଟେ । ପ୍ରେମ ସେବାର ଫଳ ଅଟେ ଓ ଭକ୍ତି ସାଧନାର ଅନ୍ତିମ ସୀମା ଅଟେ, ଯେପରି ବୃକ୍ଷର ପୂର୍ଣ୍ଣତା ଓ ଗୌରବ ଫଳ ଧାରଣ ହିଁ ଅଟେ ।

୧୧- ଆକାଶ ନିରାକାର । କିନ୍ତୁ ସମୟ ସମୟରେ ଆକାଶରେ ମେଘ

ଖଣ୍ଡଗୁଡ଼ିକ ଦେଖା ଦିଅନ୍ତି । ଏଗୁଡ଼ିକ ଆକାଶରେ ହିଁ ଉତ୍ପନ୍ନ ହୁଅନ୍ତି ଓ ଶେଷରେ ସେହି ଆକାଶରେ ମିଳେଇ ଯାଆନ୍ତି । ଆକାଶର ବାସ୍ତବିକ ସ୍ଥିତି ଅପରିବର୍ତ୍ତିତ ରହେ । କିନ୍ତୁ ଆକାଶର ଯେତିକି ଅଂଶ ମେଘାଚ୍ଛନ୍ନ ରହେ, ସେହି ଅଂଶ ଏକ ବିଶେଷରୂପ ଧାରଣ କରେ ଓ ତାହା ମଧ୍ୟରେ ବୃଷ୍ଟିଆଦିର କ୍ରିୟା ହୁଏ ।

୧୨- ସେହିପରି ଏକ ଅନନ୍ତ ଶୁଦ୍ଧ ବ୍ରହ୍ମର ଯେଉଁ ଅଂଶ ମାୟାଦ୍ୱାରା ଆଚ୍ଛାଦିତ ହୁଏ, ସେହି ଦୃଶ୍ୟମାନ ଅଂଶର ନାମ ସଗୁଣ ଈଶ୍ୱର ଅଟେ । ବାସ୍ତବରେ ଏହି ସଗୁଣ ଈଶ୍ୱର ଶୁଦ୍ଧ ବ୍ରହ୍ମଠାରୁ ଭିନ୍ନ ନୁହେଁ; କିନ୍ତୁ ମାୟା ହେତୁ ଭିନ୍ନ ଦୃଷ୍ଟିଗୋଚର ହେଉ ଥିବାରୁ ସଗୁଣ ଈଶ୍ୱରଙ୍କୁ ଲୋକମାନେ ଭିନ୍ନ ମନେ କରନ୍ତି । ଏହି ଭିନ୍ନ ରୂପରେ ଦୃଶ୍ୟମାନ ସଗୁଣ ଚୈତନ୍ୟ ସୃଷ୍ଟିକର୍ତ୍ତା ଈଶ୍ୱର ଅଟନ୍ତି । ଏହାଙ୍କୁ ଆଦି ପୁରୁଷ, ପୁରୁଷୋତ୍ତମ ଏବଂ ମାୟାବିଶିଷ୍ଟ ଈଶ୍ୱର କହନ୍ତି ।

୧୩- ଯେପରି ସର୍ବତ୍ର ବିସ୍ତାରିତ ବିଜୁଳି ତାରରେ ବିଜୁଳିର ପ୍ରବାହ ସର୍ବଦା ରହିଥାଏ, ସେହିପରି ଅଦୃଶ୍ୟ ଭଗବାନ୍ ଦେଖାଯାଉ ନ ଥିଲେ ମଧ୍ୟ ସର୍ବତ୍ର ବିରାଜମାନ ଅଟନ୍ତି ।

୧୪- ଅଗ୍ନି ଯେପରି ସର୍ବତ୍ର ବ୍ୟାପ୍ତ ଥାଏ, କେବଳ ଯେଉଁଠି ଚେଷ୍ଟା କରାଯାଏ, ସେଠାରେ ପ୍ରଜ୍ୱଳିତ ହୁଏ ଏବଂ ଶେଷରେ ବିଲୀନ ହୋଇଯାଏ, ସର୍ବତ୍ର ତାହା ଦୃଶ୍ୟମାନ ନ ହେଲେ ମଧ୍ୟ ବସ୍ତୁତଃ କେଉଁଠି ତାହାର ଅଭାବ ନ ଥାଏ, ସେହିପରି ଭଗବାନ୍ ମଧ୍ୟ ସର୍ବତ୍ର ବ୍ୟାପ୍ତ ଥାଇ ପ୍ରକଟ ତଥା ଅନ୍ତର୍ଦ୍ଧାନ ହୋଇଯାଆନ୍ତି ।

୧୫- ଅଗ୍ନି ନିରାକାରରୂପରେ ସର୍ବତ୍ର ବିଦ୍ୟମାନ ଥାଏ । ତେଣୁ ତାକୁ ଝକମକି ପଥର ତଥା ଦିଆସିଲି ଦ୍ୱାରା ଯେଉଁଠି ଆବଶ୍ୟକ, ସେଠାରେ ପ୍ରକଟ କରାଯାଏ । ଏହା ବ୍ୟତୀତ ଯେତେବେଳେ ତାକୁ ଗୋଟିଏ ସ୍ଥାନରେ ପ୍ରକଟ କରାଯାଏ, ସେତେବେଳେ ଅନ୍ୟ ସ୍ଥାନରେ ତାହାର ଅଭାବ ପରିଲକ୍ଷିତ ହୁଏ ନାହିଁ ଅର୍ଥାତ୍ ଏକ ସମୟରେ ତାହା ଅନେକ ସ୍ଥାନରେ ପ୍ରକଟ ହୋଇପାରେ । ଯେଉଁଠାରେ ତାହା ପ୍ରକଟ ହୁଏ, ସେଠାରେ ପୂର୍ଣ୍ଣ ଶକ୍ତି ବିଦ୍ୟମାନ । ସେହିପରି ଭଗବାନ୍ ମଧ୍ୟ ନିରାକାର ରୂପରେ ସର୍ବତ୍ର ବ୍ୟାପ୍ତ ଏବଂ କୌଣସି ଦେଶବିଶେଷରେ ନିଜର ପୂର୍ଣ୍ଣ ଭଗବତ୍‌ସତ୍ତା ସହିତ ସେ ପ୍ରକଟ ହୋଇଯାଆନ୍ତି ।

୧୬- ଜଗତର ଉଦ୍ଧାରପାଇଁ ନିର୍ବିକାର ପରମାତ୍ମା ଭକ୍ତମାନଙ୍କ ପ୍ରେମାସକ୍ତ ହୋଇ ନିଜ ଇଚ୍ଛାରେ ଅବତୀର୍ଣ୍ଣ ହୁଅନ୍ତି । ସେ ପ୍ରେମମୟ ଅଟନ୍ତି । ତାଙ୍କର

ପ୍ରତ୍ୟେକ କ୍ରିୟା ପ୍ରେମ ଓ ଦୟାରେ ପରିପୂର୍ଣ୍ଣ । ସେ ଯାହାକୁ ସଂହାର କରନ୍ତି, ତାକୁ ମଧ୍ୟ ଉଦ୍ଧାର କରନ୍ତି । ତାଙ୍କର ସଂହାର ମଧ୍ୟ ପ୍ରେମର ହିଁ ଉପହାର ଅଟେ।

୧୭- ଜଗତର କଲ୍ୟାଣପାଇଁ ଭଗବାନ୍ ଏହି ପ୍ରକାର ମନୁଷ୍ୟାଦି ରୂପରେ ପ୍ରକଟିତ ହୁଅନ୍ତି । ତାଙ୍କର ବରଦବିଗ୍ରହ ପ୍ରାକୃତ ଉପାଦାନଗୁଡିକରେ ତିଆରି ହୋଇ ନ ଥାଏ । ତାହା ଦିବ୍ୟ, ଚିନ୍ମୟ, ଦୀପ୍ତିମାନ୍, ଶୁଦ୍ଧ ତଥା ଅଲୌକିକ ଅଟେ। ସେ ନିଜର ଯୋଗମାୟା ଦ୍ୱାରା ମନୁଷ୍ୟ ରୂପରେ କେବଳ ମନୁଷ୍ୟମାନଙ୍କର କଲ୍ୟାଣ ପାଇଁ ପ୍ରକଟ ହୁଅନ୍ତି ।

୧୮- ଯେତେବେଳେ ଭଗବାନ୍ ନିଜ ଭକ୍ତ ପ୍ରତି ଦୟାପୂର୍ବକ ନିଜର ତତ୍ତ୍ୱ ଓ ରହସ୍ୟ ବୁଝାଇବାପାଇଁ ପ୍ରକଟ ହୁଅନ୍ତି, ସେ ସମୟରେ ମଧ୍ୟ ତାହାଙ୍କୁ ଦର୍ଶନ କରିବା ପାଇଁ ସେହି ମନୁଷ୍ୟ ସକ୍ଷମ, ଯେଉଁମାନଙ୍କୁ ଏପରି ରୂପ ଦର୍ଶନ କରିବାକୁ ଦିବ୍ୟଦୃଷ୍ଟି ପ୍ରାପ୍ତ ହୋଇଥାଏ ଏବଂ ଯିଏ ଭଗବାନ୍‌ଙ୍କର ପରମ ଭକ୍ତ ହୋଇଥାଏ ତଥା ଭଗବାନ୍ ଯାହାକୁ ସେପରି ରୂପ ଦେଖାଇବାକୁ ଇଚ୍ଛା କରନ୍ତି । ଅନ୍ୟ କେହି କୌଣସି ଉପାୟରେ ଦେଖି ପାରନ୍ତି ନାହିଁ।

୧୯- ଭଗବାନ୍‌ଙ୍କର ଅବତାର ବିଗ୍ରହ ଚିନ୍ମୟ ସଚ୍ଚିଦାନନ୍ଦମୟ ଅଟେ । ତେଣୁ ତାହା ଅନାମୟ ଓ ଦିବ୍ୟ ଅଟେ ।

୨୦- ଭଗବାନ୍‌ଙ୍କର ଶାରୀରିକ ଉପାଦାନ ଚିନ୍ମୟ ଓ ଦିବ୍ୟ ଅଟେ, ପ୍ରାକୃତିକ ନୁହେଁ । ଦେଖିବାକୁ ନରରୂପଧାରୀ ନରଲୀଳା କରୁଥିବା ପ୍ରାକୃତିକ ମନୁଷ୍ୟପରି ଜଣାପଡନ୍ତି ।

୨୧- ଭଗବାନ୍‌ଙ୍କ ଅବତାର କର୍ମପ୍ରେରିତ ନୁହେଁ କି ତାଙ୍କର ଶରୀର ପଞ୍ଚଭୂତ ନିର୍ମିତ ବା ମାୟିକ ନୁହେଁ । ତାଙ୍କର ଜନ୍ମ ଓ କର୍ମ ଦିବ୍ୟ ବା ଅଲୌକିକ ଅଟେ।

୨୨- ଭଗବାନ୍ ପ୍ରକୃତିକୁ ବଶୀଭୂତ କରି ନିଜର ସ୍ୱତନ୍ତ୍ର ଇଚ୍ଛାଦ୍ୱାରା ଜନ୍ମଗ୍ରହଣ କରନ୍ତି ଏବଂ ଲୀଳା ସମାପ୍ତ ହେବା ପରେ ଅବିଳମ୍ବେ ନିଜ ଧାମକୁ ଫେରିଯାଆନ୍ତି।

୨୩- ଭଗବାନ୍ ସର୍ବଦା ସବୁଦୃଷ୍ଟିରୁ ପୂର୍ଣ୍ଣକାମ ଅଟନ୍ତି (୩।୨୨) । ତଥାପି ଦୟାମୟ ସ୍ୱରୂପ ହୋଇଥିବାରୁ ସେ ସ୍ୱାଭାବିକ ରୂପେ ସମସ୍ତଙ୍କ ପ୍ରତି ଅନୁଗ୍ରହ କରି ସେମାନଙ୍କର କଲ୍ୟାଣପାଇଁ ବାରମ୍ବାର ଅବତୀର୍ଣ୍ଣ ହୁଅନ୍ତି । ତାଙ୍କର ଏହି ଅବତାର ଲୀଳାଗୁଡିକୁ ମନୁଷ୍ୟ ଗାଇ ଗାଇ ଏ ଭବସାଗରରୁ ତରି ଯାଏ ।

୨୪- ଭଗବାନ୍‌ଙ୍କର ସକଳ କର୍ମ ଲୀଳାମୟ ଅଟେ । ତାଙ୍କର କର୍ମ ମାଧ୍ୟମରେ ମନୁଷ୍ୟମାନଙ୍କୁ ନୀତି, ଧର୍ମ ଓ ପ୍ରେମର ଉପଦେଶ ମିଳେ । ଭଗବାନ୍ ସୃଷ୍ଟିରଚନା ଓ ଅବତାର-ଲୀଳା ଆଦି ଯେତେ କର୍ମ କରନ୍ତି, ସେଥିରେ ତାଙ୍କର କିଞ୍ଚିତ ସ୍ୱାର୍ଥ ନ ଥାଏ । କେବଳ ସଂସାରର ଅନୁଗ୍ରହ ନିମନ୍ତେ ସେ ମନୁଷ୍ୟାଦି ଅବତାରରେ ନାନା ପ୍ରକାର କର୍ମ କରନ୍ତି ।

୨୫- ନିଜର ପ୍ରିୟ ଭକ୍ତମାନଙ୍କୁ ନିଜ ଦିବ୍ୟଲୀଳାଗୁଡ଼ିକର ରସ ଆସ୍ୱାଦନ କରାଇବାପାଇଁ ଏହି ପୃଥିବୀ ଉପରେ ସେ ଅବତାର ଗ୍ରହଣ କରନ୍ତି । ଏହି ଅବତାରଗୁଡ଼ିକରେ ଧାରଣ କରିଥିବା ରୂପ ତଥା ତାଙ୍କର ଗୁଣ, ପ୍ରଭାବ, ନାମ, ମାହାତ୍ମ୍ୟ ଏବଂ ଦିବ୍ୟ କର୍ମଗୁଡ଼ିକର ଶ୍ରବଣ, କୀର୍ତ୍ତନ ଓ ସ୍ମରଣ କରି ସକଳ ମନୁଷ୍ୟ ସହଜରେ ଭବସାଗର ପାର ହୋଇଯାଆନ୍ତି । ଏହି କାର୍ଯ୍ୟ ବିନା ଅବତାରରେ ହୋଇ ନ ପାରେ । ଏହି କାରଣରୁ ସେ ଅବତାର ଗ୍ରହଣ କରନ୍ତି ।

୨୬- "ସେ ସର୍ବଜ୍ଞ, ସର୍ବବ୍ୟାପୀ, ସର୍ବଗୁଣସମ୍ପନ୍ନ, ସର୍ବସମର୍ଥ, ସର୍ବସାକ୍ଷୀ, ସତ୍, ଚିତ୍, ଆନନ୍ଦଘନ ପରମାତ୍ମା ହିଁ ନିଜ ଲୀଳାଦ୍ୱାରା ଭକ୍ତମାନଙ୍କ ଉଦ୍ଧାରପାଇଁ ଭିନ୍ନ ଭିନ୍ନ ସ୍ୱରୂପ ଧାରଣ କରି ଅନେକ ଲୀଳା କରିନ୍ତି ।"

୨୭- ସର୍ବଶକ୍ତିମାନ୍ ପୂର୍ଣ୍ଣବ୍ରହ୍ମ ପରମେଶ୍ୱର ବାସ୍ତବରେ ଜନ୍ମ ଓ ମୃତ୍ୟୁରହିତ ଅଟନ୍ତି । ତାଙ୍କର ଜନ୍ମ ପ୍ରାଣୀମାନଙ୍କପରି ହୁଏ ନାହିଁ । ସେ ନିଜର ଭକ୍ତମାନଙ୍କ ଉପରେ ଅନୁଗ୍ରହ କରି ଜନ୍ମଧାରଣର ଦିବ୍ୟ ଲୀଳା ମାତ୍ର କରନ୍ତି । ଏହି ଲୀଳାଗୁଡ଼ିକଦ୍ୱାରା ଭକ୍ତମାନଙ୍କର ମନକୁ ନିଜ ଆଡ଼କୁ ଆକର୍ଷଣ କରି ଦର୍ଶନ, ସ୍ପର୍ଶ ଓ ଅମୃତବାଣୀ ଦ୍ୱାରା ସେମାନଙ୍କୁ ଆହ୍ଲାଦିତ କରନ୍ତି । ସଂସାରରେ ନିଜର ଦିବ୍ୟ କୀର୍ତ୍ତି ବିସ୍ତାର କରି ସେଗୁଡ଼ିକର ଶ୍ରବଣ, କୀର୍ତ୍ତନ ଓ ସ୍ମରଣଦ୍ୱାରା ମନୁଷ୍ୟମାନଙ୍କର ପାପ ମୋଚନ କରନ୍ତି । ଜଗତ୍‌ରୁ ପାପାଗ୍ରହୀମାନଙ୍କୁ ବିନାଶ କରି ଧର୍ମର ସ୍ଥାପନା କରିବା ପାଇଁ ଜନ୍ମ ଧାରଣର ଲୀଳା ମାତ୍ର କରନ୍ତି ।

୨୮- ଈଶ୍ୱରୀୟ ଶକ୍ତି ବିଲକ୍ଷଣ ଅଟେ । ସେ ସର୍ବତ୍ର ସବୁ କିଛି କରିବାରେ ସମର୍ଥ ଅଟନ୍ତି । ଏହା ହିଁ ତାଙ୍କର ଈଶ୍ୱରତ୍ୱ ଓ ବିରାଟ ସ୍ୱରୂପ ।

୨୯- ପ୍ରଭୁଙ୍କର ସଂକଳ୍ପରୁ ସଂସାର ଜାତ ହୁଏ । ଏହି ସଂକଳ୍ପ ବିନା ସଂସାର ତିଷ୍ଠି ପାରିବ ନାହିଁ । ପ୍ରଭୁଙ୍କର ସଂକଳ୍ପ ମାତ୍ର ଦ୍ୱାରା ଅସଂଖ୍ୟ ଜନ୍ମର ମହାପାପୀର ସକଳ ପାପ ନିମିଷକ ମଧ୍ୟରେ ଭସ୍ମ ହୋଇଯାଏ । ପ୍ରଭୁଙ୍କ ସଂକଳ୍ପରୁ କ୍ଷଣକ ମଧ୍ୟରେ ସାରା ସଂସାର ଉଦ୍ଧାର ପାଇ ପାରେ । ସଂକଳ୍ପ ତ ବଡ଼ କଥା, କେବଳ ପ୍ରଭୁଙ୍କର ସଙ୍କେତ ମାତ୍ରରେ ତାଙ୍କର ଇଙ୍ଗିତରେ ବ୍ରହ୍ମାଣ୍ଡର ଉଦ୍ଧାର ହୋଇପାରେ ।

୩୦- ଭଗବାନ୍ ଯଦି ନିଜକୁ ଲୁଗ୍ଵାଇବାକୁ ଗ୍ଵହାନ୍ତି, ତାହାହେଲେ ତାଙ୍କୁ ଚିହ୍ନିବାର ଶକ୍ତି କାହାରି ନାହିଁ । ସେ ଯେତେବେଳେ କୃପା କରି ନିଜକୁ କାହାରି ସମ୍ମୁଖରେ ପ୍ରକଟିତ କରନ୍ତି, ସେତେବେଳେ ସେ କେବଳ ତାଙ୍କୁ ଦେଖେ । **"ସୋ ଜାନଇ ଜେହି ଦେହୁ ଜନାଈ ।"**

୩୧- ଭକ୍ତର ଭାବନା ଅନୁଯାୟୀ ଭଗବାନ୍ ରୂପ ନିଅନ୍ତି ।

୩୨- ଏପରି କୌଣସି ସ୍ଥାନ ନାହିଁ, ଯେଉଁଠାରେ କି ପରମାତ୍ମା ନାହାନ୍ତି । ଏପରି କୌଣସି ସ୍ଥାନ ନାହିଁ, ଯେଉଁଠାରେ କି ତାଙ୍କର ମାୟା ନାହିଁ । ମାୟାରୂପ ସାମଗ୍ରୀକୁ ନେଇ ପରମାତ୍ମା ମନଇଚ୍ଛା ଯେଉଁଠି ଗ୍ଵହାନ୍ତି ସେଠାରେ ପ୍ରକଟ ହୁଅନ୍ତି ।

୩୩- ସଗୁଣ ସାକାର ରୂପକୁ ଆମେ ସ୍ଵଚକ୍ଷୁରେ ମଧ୍ୟ ଦେଖିପାରିବା ।

୩୪- ଯାହା କିଛି ଉଦ୍‌ଭାସିତ, ତାହା ସବୁ ମାୟା ଅଟେ । ମାୟାର ଅଧୀଶ୍ଵର ଭଗବାନ୍‌ଙ୍କୁ ଏହାର ଯାଦୁକର ମନେ କରି ଯାଦୁକରର ଶିଷ୍ୟ ପରି ସଂସାରର ବସ୍ତୁଗୁଡ଼ିକୁ ନେଇ ଖେଳ ଖେଳିବା ଉଚିତ ।

୩୫- ସର୍ବତ୍ର ଏକମାତ୍ର ସଚ୍ଚିଦାନନ୍ଦଘନ ସମାନଭାବରେ ବିଦ୍ୟମାନ । ସଂସାରରେ ଯେଉଁ ଦୃଶ୍ୟମାନ ବସ୍ତୁ ଦୃଷ୍ଟିଗୋଚର ହୁଏ, ତାହାର ଅସ୍ତିତ୍ଵ ନାହିଁ, ସର୍ବତ୍ର ଭଗବାନ୍ ହିଁ ବ୍ୟାପି ରହିଅଛନ୍ତି । ଯଦି ଏ କଥା ଅନୁଭୂତ ହୁଏ, ତେବେ ସର୍ବତ୍ର ଭଗବାନ୍ ପ୍ରତିଭାତ ହୁଅନ୍ତି ।

୩୬- ଯିଏ ଭଗବାନ୍‌ଙ୍କ ମର୍ମ ବୁଝିନିଏ, ସେ ମୋହିତ ହୁଏ ନାହିଁ ।

୩୭- ସଂସାର କୌଣସି ପଦାର୍ଥ ନୁହେଁ । ବାସ୍ତବରେ ଯାହା କିଛି ଅଛି, ତାହା ଶ୍ରୀସଚ୍ଚିଦାନନ୍ଦଘନ ହିଁ ଅଟନ୍ତି ।

୩୮- କେବଳ ନାରାୟଣଙ୍କ ବ୍ୟତୀତ ଆଉ କିଛି ନାହିଁ ।

୩୯- ଯାହା କିଛି ଦୃଶ୍ୟମାନ, ତାହାର ଅସ୍ତିତ୍ଵ ନାହିଁ ଏବଂ ଯାହା ଅଛି, ତାହା ଦୃଶ୍ୟମାନ୍ ହୁଏ ନାହିଁ । କାରଣ ଭଗବାନ୍‌ଙ୍କର ଗୁଣାତୀତ ସ୍ଵରୂପ ଇନ୍ଦ୍ରିୟାତୀତ ଅଟେ ।

୪୦- ଭଗବାନ୍ ତ ସବୁ ଜାଗାରେ ଉପସ୍ଥିତ ଅଛନ୍ତି । କେବଳ ତୁମର ଯେପର୍ଯ୍ୟନ୍ତ ବିଶ୍ଵାସ ହୋଇନାହିଁ, ସେପର୍ଯ୍ୟନ୍ତ ସେ ଛପି ରହନ୍ତି ।

୪୧- ମନ ଯେଉଁଆଡେ ଯାଉଅଛି, ସେହିଠାରେ ମନକୁ ପରମାତ୍ମାଙ୍କଠାରେ ନିୟୋଜିତ କରିବା ଆବଶ୍ୟକ ।

୪୨- ଯେଉଁ ପଦାର୍ଥ ଆଡକୁ ମନ ଯାଏ, ସେହି ପଦାର୍ଥରେ ପରମାତ୍ମାଙ୍କ ସ୍ୱରୂପ ଦେଖିବା ଉଚିତ ।

୪୩- ତୁମରି ଯେଉଁ ପଦାର୍ଥରେ ପ୍ରୀତି ଅଧିକ, ସେହି ପଦାର୍ଥରେ ଭଗବାନ୍‌ଙ୍କୁ ଲଗାଇ ତାଙ୍କୁ ଧ୍ୟାନ କର ।

୪୪- ସର୍ବତ୍ର ଏକ ନାରାୟଣ ହିଁ ପରିପୂର୍ଣ୍ଣ । ନାରାୟଣଙ୍କ ସେବା ବ୍ୟତୀତ ଆଉ କିଛି ନାହିଁ ।

୪୫- ଏକ ପରମେଶ୍ୱର ହିଁ ସମଭାବରେ ସର୍ବତ୍ର ପରିପୂର୍ଣ୍ଣ ଅଛନ୍ତି ।

୪୬- ଶ୍ରୀକୃଷ୍ଣ ଗୀତାର କେତେକ ସ୍ଥାନରେ ଅନେକ ଗୋପନୀୟ କଥା କହିଅଛନ୍ତି, ଯାହାକି ଆଗରୁ ତାହା କାହାରିକୁ କହି ନ ଥିଲେ ( ୧୧ । ୩୨-୩୪; ୧୮ । ୬୪) । ତାଙ୍କ ସାମନାରେ ୧୮ ଅକ୍ଷୌହିଣୀ ସୈନ୍ୟ ମୃତ୍ୟୁବରଣ କଲେ, ଏହାର କାରଣ ସେମାନେ ଭଗବାନ୍‌ଙ୍କର ପ୍ରଭାବ ଜାଣି ନ ଥିଲେ । ସମ୍ଭବତଃ ସେମାନେ ମୂର୍ଖ ଥିଲେ—ଏହି ଧାରଣା ଗୀତା ପଢିଥିବା ସାଧାରଣ ପାଠକମାନଙ୍କ ମନରେ ସୃଷ୍ଟି ହୁଏ । କିନ୍ତୁ ଏହା ଠିକ୍ ନୁହେଁ, ସେମାନଙ୍କର ବୁଝିବାରେ ଭୁଲ ରହୁଛି । ବର୍ତ୍ତମାନ ଯଦି ଶ୍ରୀକୃଷ୍ଣ ଗୀତା ୪ । ୭ ଅନୁଯାୟୀ ପୁଣି ଅବତାର ଗ୍ରହଣ କରନ୍ତି, ଆମେ ମଧ୍ୟ ଏହିପରି ଆଚରଣ କରିବା ।

୪୭- ଯେଉଁ ବ୍ୟକ୍ତି ନାମ ସ୍ମରଣ ସହିତ ଭଗବାନ୍‌ଙ୍କୁ ସର୍ବଜ୍ଞ, ସର୍ବଶକ୍ତିମାନ୍ ସର୍ବବ୍ୟାପୀ ଓ ପରମନ୍ୟାୟପରାୟଣ ରୂପେ ଦୃଢ଼ତାର ସହିତ ଗ୍ରହଣ କରିନିଏ, ତାହାଦ୍ୱାରା ଭଗବଦ୍‌ବିରୁଦ୍ଧ କାର୍ଯ୍ୟ ହୋଇ ନ ପାରେ ।

୪୮- ସମୁଦ୍ର ଜଳରେ ଲବଣ, କାଠ ମଧ୍ୟରେ ଅଗ୍ନି ଓ ଦୁଧ ମଧ୍ୟରେ ଘିଅ ପ୍ରଚ୍ଛନ୍ନଭାବେ ବିଦ୍ୟମାନ ଥାଏ, ସେହିପରି ପରମାତ୍ମା ସକଳ ପଦାର୍ଥରେ ବିଦ୍ୟମାନ ଅଛନ୍ତି । ସର୍ବତ୍ର ଭଗବାନ୍ ମିଳିପାରନ୍ତି । ଏପରି ଭାବିବା ଉଚିତ । ଏହା ଭାବିବାଦ୍ୱାରା ଜପ, ଧ୍ୟାନ ସତ୍‌ସଙ୍ଗ ଅଧିକ କରିବାପାଇଁ ମନ ବଳାଏ ।

୪୯- ପରମାତ୍ମାଙ୍କୁ ଜାଣିଥିବା ବ୍ୟକ୍ତିକୁ ମାୟାଶକ୍ତି କବଳିତ କରିପାରେ ନାହିଁ ।

୫୦- ଭଗବାନ୍ ସର୍ବତ୍ର ବିଦ୍ୟମାନ । ତାଙ୍କୁ କେଉଁ ସୁଦୂର ସ୍ଥାନରୁ ଆସିବାକୁ ପଡେ ନାହିଁ । ତୁମର ଉତ୍କଣ୍ଠା ଜାତ ହେଲେ ସେ ସର୍ବତ୍ର ଦୃଷ୍ଟିଗୋଚର ହୁଅନ୍ତି ।

୫୧- ଆମେ ବିଷୟ-ବିମୂଢ଼ ମନୁଷ୍ୟ ଭଗବାନ୍‌ଙ୍କର ଲୀଳା ଓ କାର୍ଯ୍ୟକୁ କିପରି ବୁଝିପାରିବା ?

୫୨- ଈଶ୍ୱରଙ୍କ ସମ୍ବନ୍ଧରେ ନିଜ ହୃଦୟରେ ଦୃଢ଼ତାପୂର୍ବକ ଏତକ ଅବଶ୍ୟ ଧାରଣ କରିବା ଉଚିତ ଯେ ଈଶ୍ୱର ଅଛନ୍ତି । ସର୍ବତ୍ର ଅଛନ୍ତି । ସେ ସର୍ବାନ୍ତର୍ଯାମୀ, ସର୍ବଶକ୍ତିମାନ୍, ସର୍ବବ୍ୟାପୀ, ସର୍ବଜ୍ଞ, ସନାତନ, ସର୍ବଦିବ୍ୟଗୁଣ-ସମ୍ପନ୍ନ, ନିତ୍ୟ, ପରମ ପ୍ରେମୀ, ପରମ ସୁହୃଦ୍, ପରମ ଆତ୍ମୀୟ ଓ ପରମ ଗୁରୁ ଅଟନ୍ତି । ଏହି ସବୁ ଗୁଣରେ ତାଙ୍କଠାରୁ ବଡ଼ ବା ତାଙ୍କ ସମାନ ଜଗତ୍‌ରେ ଅନ୍ୟ କିଏ ନାହାନ୍ତି, ନ ଥିଲେ ବା ହେବେ ନାହିଁ ।

୫୩- ଅଗ୍ନିତତ୍ତ୍ୱ କାରଣରୂପରେ ବା ପରମାଣୁ ରୂପରେ ନିରାକାର ଅଟେ । ସଂସାରରେ ସମଭାବରେ ସର୍ବତ୍ର ଅପ୍ରକଟରୂପରେ ତାହା ବ୍ୟାପ୍ତ ଅଛି । କାଠ-କାଠର ଘର୍ଷଣରୁ, ଝକମକି ପଥରରୁ, ଦିଆସିଲିରୁ ବା ଅନ୍ୟାନ୍ୟ ଉପାୟଦ୍ୱାରା ଅଗ୍ନି ଗୋଟିଏ ସ୍ଥାନରେ ବା ଏକ ସମୟରେ ଅନେକ ସ୍ଥାନରେ ଏକଦେଶୀୟ ସାକାରରୂପରେ ପୂର୍ଣ୍ଣଶକ୍ତିସମ୍ପନ୍ନ ହୋଇ ପ୍ରକଟିତ ହୋଇପାରେ । ଏପରି ପୂର୍ଣ୍ଣଶକ୍ତିସମ୍ପନ୍ନ ହୋଇ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ବା ଏକାବେଳକେ ଅନେକ ସ୍ଥାନରେ ସାକାରରୂପେ ପ୍ରକଟ ହୋଇ ମଧ୍ୟ ତାହା ଅବ୍ୟକ୍ତ ନିରାକାର ରୂପରେ ସର୍ବତ୍ର ବ୍ୟାପ୍ତ ରହେ । ଏହିପରି ନିରାକାର ସର୍ବବ୍ୟାପୀ ବିଜ୍ଞାନାନନ୍ଦଘନ ଅକ୍ରିୟ ପରମାତ୍ମା ଅପ୍ରକଟରୂପେ ସର୍ବତ୍ର ରହିଥାଇ ମଧ୍ୟ ନିଜର ସର୍ବଗୁଣସମ୍ପନ୍ନ ପୂର୍ଣ୍ଣ ପ୍ରଭାବ ସହିତ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ବା ଏକ ସମୟରେ ସର୍ବତ୍ର ପ୍ରକଟିତ ହୋଇପାରନ୍ତି ।

୫୪- ବିଭିନ୍ନ କାରଣମାନଙ୍କ ମଧ୍ୟରୁ ଭଗବାନ୍‌ଙ୍କର ଅବତରଣର ଏକ ମୁଖ୍ୟ କାରଣ ସ୍ପଷ୍ଟ ହୁଏ ଯେ ସେ ସଂସାରର ପ୍ରାଣୀମାନଙ୍କ ପ୍ରତି ଦୟା କରି ସଗୁଣରୂପରେ ପ୍ରକଟିତ ହୋଇ ଏପରି ଏକ ମହାନ୍ ଆଦର୍ଶ ରଖିଯାଆନ୍ତି ତଥା ସଂସାରକୁ ଏପରି ସୁଲଭ ଓ ସୁଖକର ମୁକ୍ତିମାର୍ଗ ପ୍ରଦର୍ଶନ କରନ୍ତି, ଯଦ୍ଦ୍ୱାରା ବର୍ତ୍ତମାନ ଓ ଭବିଷ୍ୟତରେ ଅନେକ ସାଂସାରିକ ଜୀବ ପରମେଶ୍ୱରଙ୍କ ଉପଦେଶ ଓ ଆଚରଣକୁ ଲକ୍ଷ୍ୟ କରି ତାହାକୁ ଅନୁସରଣ କରି ପରମ କୃତାର୍ଥ ହୁଅନ୍ତି ।

୫୫- ଭଗବାନ୍‌ଙ୍କର ଜନ୍ମ ଓ ବିଗ୍ରହ ବଡ ଦିବ୍ୟ ଓ ରହସ୍ୟମୟ ବିଷୟ ଅଟେ । ତାଙ୍କର ପ୍ରକଟ ହେବା ଓ ଅନ୍ତର୍ଦ୍ଧାନ ହେବା ଏକ ସ୍ୱତନ୍ତ୍ର ଲୀଳା ଅଟେ । ତାହା ମନୁଷ୍ୟର ଜନ୍ମ-ମୃତ୍ୟୁଠାରୁ ଭିନ୍ନ ଅଟେ ।

୫୬- ଭଗବାନ୍ ନିଜ ଭକ୍ତମାନଙ୍କୁ ନିଜ ଇଚ୍ଛାନୁଯାୟୀ ଦର୍ଶନ ଦେଇ ଅନ୍ତର୍ଦ୍ଧାନ ହୋଇଯାଆନ୍ତି ।

୫୭- ଭଗବାନ୍‌ଙ୍କର ଆବିର୍ଭାବ କେବଳ ସାଧାରଣ ପ୍ରାଣୀମାନଙ୍କ ଜନ୍ମ ତୁଳନାରେ ବିଚିତ୍ର ନୁହେଁ। ଏହା ମଧ୍ୟ ଯୋଗୀମାନଙ୍କ ଆବିର୍ଭାବ ତୁଳନାରେ ବିଚିତ୍ର ଅଟେ।

୫୮- ଭଗବାନ୍ ମୂଳ ପ୍ରକୃତିକୁ ନିଜ ଅଧୀନସ୍ଥ କରି ନିଜର ଯୋଗମାୟାଦ୍ୱାରା ପ୍ରକଟ ହୁଅନ୍ତି ।

୫୯- ଈଶ୍ୱରଙ୍କର ପ୍ରକଟ ହେବା, ତାଙ୍କର ନିଜ ଲୀଳା ଅଟେ।

୬୦- ଈଶ୍ୱରଙ୍କର ପ୍ରକଟ ହେବା ସବୁଦୃଷ୍ଟିରୁ ସ୍ୱତନ୍ତ୍ର ଅଟେ।

୬୧- ପ୍ରାଣୀମାନଙ୍କ ପ୍ରତି ଦୟା ହିଁ ତାଙ୍କର ଅବତାର ଗ୍ରହଣ କରିବାର କାରଣ ଅଟେ ।

୬୨- ଈଶ୍ୱରଙ୍କ ଶରୀର ପରମ ଦିବ୍ୟ ଓ ଅପ୍ରାକୃତ ଅଟେ। ତାହା ପଞ୍ଚଭୂତରୁ ତିଆରି ହୋଇ ନ ଥାଏ।

୬୩- (ଅବତାରରେ) ସମ୍ପୂର୍ଣ୍ଣ ଅନନ୍ତ ଆନନ୍ଦ ହିଁ ମୂର୍ତ୍ତିବନ୍ତ ହୋଇ ଅବତାର ଗ୍ରହଣ କରେ, ସାକ୍ଷାତ୍ ପ୍ରେମ ହିଁ ଦିବ୍ୟ ମୂର୍ତ୍ତି ଧାରଣ କରି ପ୍ରକଟିତ ହୁଏ ।

୬୪- ଯେ ସେହି ଆନନ୍ଦ ଓ ପ୍ରେମାର୍ଣ୍ଣବ ଶ୍ୟାମସୁନ୍ଦରଙ୍କ ଦିବ୍ୟ ଶରୀର ତତ୍ତ୍ୱ ଜାଣି ପାରେ, ସେ ପ୍ରେମରେ ମୁଗ୍ଧ ହୋଇଯାଏ ଓ ଆନନ୍ଦମୟ ହୋଇଯାଏ ।

୬୫- ନେତ୍ର ରୂପକୁ ଦେଖିପାରେ, ତେଣୁ ଭଗବାନ୍‌ଙ୍କୁ ରୂପ ଧାରଣ କରିବାକୁ ପଡ଼େ; ଚର୍ମ ସ୍ପର୍ଶଦ୍ୱାରା ଅନୁଭବ କରେ, ତେଣୁ ଭଗବାନ୍‌ଙ୍କୁ ସ୍ପର୍ଶଯୋଗ୍ୟ ହେବାକୁ ପଡେ; ନାସିକା ଗନ୍ଧ ଆହରଣ କରେ, ତେଣୁ ଭଗବାନ୍‌ଙ୍କୁ ଦିବ୍ୟଗନ୍ଧମୟ ଶରୀର ଧାରଣ କରିବାକୁ ପଡେ ।

୬୬- ସାକ୍ଷାତ୍ ପରମେଶ୍ୱର ଭଗବାନ୍ ଶ୍ରୀକୃଷ୍ଣଙ୍କୁ ପରମାତ୍ମା ନ ମାନି ଏକ ମନୁଷ୍ୟବିଶେଷ ମନେ କରିବା ଅର୍ଥ ଏକ ଚକ୍ରବର୍ତ୍ତୀ ବିଶ୍ୱସମ୍ରାଟକୁ ସାଧାରଣ କରଦ ରାଜା କହି ତାଙ୍କୁ ଅପମାନିତ କରିବା। ଏହା ହେଉଛି ଈଶ୍ୱରଙ୍କୁ ଅବଜ୍ଞା ବା ତାଙ୍କୁ ଅପମାନ ପ୍ରଦାନ କରିବା ।

୬୭- ଶୁଦ୍ଧ ସଚ୍ଚିଦାନନ୍ଦ ନିରାକାର ପରମାତ୍ମାଙ୍କର ଦିବ୍ୟଗୁଣ ସହିତ ପ୍ରକଟ ହେବାର ତତ୍ତ୍ୱକୁ ଯିଏ ଜାଣେ ସେହି ପୁରୁଷ ସେହି ପରମାତ୍ମାଙ୍କର ଦୟା ଲାଭ କରି ପରମଗତି ପ୍ରାପ୍ତ କରେ ।

୬୮- ଭଗବାନ୍‌ଙ୍କର କର୍ମର ଦିବ୍ୟତା ଜାଣିଲେ ମନୁଷ୍ୟ ପରମପଦ ପ୍ରାପ୍ତ କରେ ।

୬୯- ଭଗବାନ୍‌ଙ୍କର ପ୍ରତ୍ୟେକ କର୍ମରେ ପ୍ରେମ, ଦକ୍ଷତା, ନିଷ୍କାମତା ଓ ଦୟା ପରିପୂର୍ଣ୍ଣ ଥାଏ ।

୭୦- ଭଗବାନ୍‌ଙ୍କ ପାଇଁ କୌଣସି କର୍ତ୍ତବ୍ୟ ନ ଥାଏ । ମାତ୍ର ମନୁଷ୍ୟମାନଙ୍କୁ ସତ୍‌ମାର୍ଗରେ ଲଗାଇବାପାଇଁ ହିଁ ସେ କର୍ମ କରନ୍ତି। ଆମେ ତ କି ଛାର, ଭଗବାନ୍‌ଙ୍କର ଲୀଳାକୁ ଋଷି, ମୁନି ଓ ଦେବତାଗଣ ଦେଖି ମଧ୍ୟ ମୋହିତ ହୋଇଯାଆନ୍ତି।

୭୧- ଈଶ୍ୱରଙ୍କ ପାଇଁ କୌଣସି କଥା ଅସମ୍ଭବ ନୁହେଁ । ସେ ଅସମ୍ଭବକୁ ମଧ୍ୟ ସମ୍ଭବ କରିପାରନ୍ତି ।

୭୨- ପରମାତ୍ମାଙ୍କର ଜନ୍ମ ଓ କର୍ମର ଦିବ୍ୟତା ବଡ ଅଲୌକିକ ଓ ରହସ୍ୟମୟ ଅଟେ ।

୭୩- ଭଗବାନ୍‌ଙ୍କର ଜନ୍ମ ଓ କର୍ମର ଦିବ୍ୟତାକୁ ଯିଏ ତତ୍ତ୍ୱରୂପରେ ଜାଣେ, ସେ ଭଗବାନ୍‌ଙ୍କୁ ତତ୍ତ୍ୱରେ ଜାଣେ ।

୭୪- ସର୍ବଶକ୍ତିମାନ୍ ସଚ୍ଚିଦାନନ୍ଦଘନ ପରମାତ୍ମା ଅଜନ୍ମା, ଅବିନାଶୀ, ସର୍ବପ୍ରାଣୀର ପରମଗତି ଓ ପରମ ଆଶ୍ରୟ ଅଟନ୍ତି । ସେ କେବଳ ଧର୍ମର ସ୍ଥାପନା ଓ ସଂସାରର ଉଦ୍ଧାରପାଇଁ ନିଜର ଯୋଗମାୟାଦ୍ୱାରା ସଗୁଣରୂପ ହୋଇ ଅବତାର ଗ୍ରହଣ କରନ୍ତି ।

୭୫- ଭଗବାନ୍‌ଙ୍କପରି ସୁହୃଦ୍, ପ୍ରେମୀ ଓ ପତିତପାବନ ଅନ୍ୟ କେହି ନାହାନ୍ତି।

୭୬- ଭଗବାନ୍‌ଙ୍କ ବିଗ୍ରହର ରହସ୍ୟ ଭଗବଦ୍ରୂପରେ ସ୍ଥିତ ପରମ ଭକ୍ତ ମହାତ୍ମାମାନେ ହିଁ ଭଗବତ୍‌କୃପାବଳରେ ଜାଣିଥାଆନ୍ତି ।

୭୭- ସୂର୍ଯ୍ୟକିରଣ ସର୍ବତ୍ର ପଡୁଥିଲେ ମଧ୍ୟ କାଠ ଓ କାଚ ଉପରେ ତା'ର ପ୍ରଭାବ ଭିନ୍ନ ଭିନ୍ନ ହୋଇଥାଏ। ଏପରିକି ସୂର୍ଯ୍ୟମୁଖୀ କାଚ ସୂର୍ଯ୍ୟ କିରଣକୁ ଏକତ୍ରିତ କରି ତୂଳା ବା ଲୁଗାକୁ ପୋଡିଦେଇପାରେ। ଏହା ହିଁ ତାହାର ବିଶେଷତା। ସେହିପରି ଭଗବାନ୍ ସର୍ବବ୍ୟାପ୍ତ ହେଲେ ହେଁ ସଂସାରର ପଦାର୍ଥ ଅପେକ୍ଷା ଭଗବାନ୍ ମନୁଷ୍ୟ ହୃଦୟରେ ନିବାସ କରନ୍ତି ବୋଲି ବିଶେଷରୂପେ ସ୍ୱୀକାର କରାଯାଇଛି । ଜ୍ଞାନୀ ଓ ଭକ୍ତଙ୍କ ହୃଦୟରେ ତାହା ଠାରୁ ଅଧିକ ବୈଶିଷ୍ଟ୍ୟ ଥାଏ। ଅବତାରବିଗ୍ରହରେ ସବୁଠାରୁ ଅଧିକ ବୈଶିଷ୍ଟ୍ୟ ଥାଏ। ତାହା ତ ତାଙ୍କର ନିଜ ସ୍ୱରୂପ ଅଟେ। ଏତଦ୍‌ବ୍ୟତୀତ ତାଙ୍କର କାର୍ଯ୍ୟ ସବୁ ଭଗବଦ୍‌ରୂପ ଅଟେ।

୭୮- ଭଗବାନ୍ ଶ୍ରୀକୃଷ୍ଣ ପ୍ରେମ ଓ ଆନନ୍ଦର ମୂର୍ତ୍ତି ଅଟନ୍ତି ।

୭୯- ଭଗବାନ୍ ଶ୍ରୀକୃଷ୍ଣଙ୍କର ଅବତାର ପ୍ରେମ ଓ ଧର୍ମ ସଂସ୍ଥାପନ ତଥା ପ୍ରଚାରପାଇଁ ହୋଇଥିଲା ।

୮୦- ଭଗବାନ୍ ଶ୍ରୀକୃଷ୍ଣ ବିଶୁଦ୍ଧ ପ୍ରେମର ଯେଉଁ ବିଶାଳ ଧାରା ପ୍ରବାହିତ କରିଥିଲେ ତାହା ଥରେ ବୁଝିନେଲେ କାହାର ହୃଦୟ ଆନନ୍ଦରେ ଦ୍ରବିତ ଓ ପୁଲକିତ ନ ହେବ।

୮୧- ଭଗବାନ୍‌ଙ୍କର ପ୍ରେମମୟ ଲୀଳା ଓ ପ୍ରେମର ତତ୍ତ୍ୱ ସମ୍ବନ୍ଧୀୟ ଜ୍ଞାନ କେବଳ ତାଙ୍କର ଅନୁଗ୍ରହରୁ ପ୍ରାପ୍ତ ହୁଏ।

୮୨- ଭଗବାନ୍ ଶ୍ରୀକୃଷ୍ଣ ସ୍ୱୟଂ ଜ୍ଞାନସ୍ୱରୂପ ଅଟନ୍ତି । ତାଙ୍କଠାରେ ବିଷୟବିକାରର ଆଶଙ୍କା କରାଯାଇ ନ ପାରେ ।

୮୩- ଯେତେବେଳେ ଭଗବାନ୍ ମନୁଷ୍ୟ ଶରୀର ଧାରଣ କରି ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ମନୁଷ୍ୟଙ୍କ ପରି ପ୍ରଯତ୍ନ କରନ୍ତି ।

୮୪- ଭଗବାନ୍‌ଙ୍କର ମନୁଷ୍ୟୋଚିତ କର୍ମଗୁଡିକୁ ଦେଖି ମୁନି ଋଷିମାନେ ମଧ୍ୟ ଭ୍ରମରେ ପଡନ୍ତି । ତେବେ ମନୁଷ୍ୟମାନଙ୍କ କଥା କ'ଣ କହିବା ?

୮୫- ଭଗବାନ୍ ଦୟାପରବଶ ହୋଇ ଯାହାକୁ ନିଜର ପରିଚୟ ଦିଅନ୍ତି, ସେ ଧନ୍ୟ ହୋଇଯାଏ ଓ ସେ ହିଁ ତାଙ୍କୁ ଚିହ୍ନିପାରେ ।

୮୬- ଯେଉଁଠାରେ ସତ୍ୟ, ଧର୍ମ, ଲଜ୍ଜା ଓ ସରଳତା ବିଦ୍ୟମାନ, ସେଠାରେ ଶ୍ରୀକୃଷ୍ଣ ଥାଆନ୍ତି, ଯେଉଁଠାରେ ଶ୍ରୀକୃଷ୍ଣ ଥାଆନ୍ତି, ସେଠାରେ ଜୟ ହୁଏ ।

୮୭- ଭଗବାନ୍‌ଙ୍କ କୌଣସି କର୍ମ ବା ସଂକଳ୍ପ କେବେହେଲେ ନିଷ୍ଫଳ ଯାଏ ନାହିଁ ।

୮୮- ସଂସାରରେ କ୍ଷମା, ଦୟା, ଶାନ୍ତି ଆଦି ଯେତେଗୁଣ ଦୃଶ୍ୟମାନ ହୁଏ; ତେଜ, ଐଶ୍ୱର୍ଯ୍ୟ ଆଦି ଯେତେ ବିଭୂତି ଏବଂ ଶକ୍ତି, ପ୍ରତାପ ଆଦି ଯେତେ ଉଚ୍ଚଭାବ ପ୍ରକାଶିତ ହୁଏ, ସେଗୁଡିକ ଭଗବାନ୍‌ଙ୍କର ତେଜର କିୟଦଂଶର ପରିପ୍ରକାଶ ବୋଲି ବୁଝିବା ଉଚିତ ।

୮୯- ଈଶ୍ୱର ପୂର୍ଣ୍ଣରୂପରେ ଦୟାଳୁ ତଥା ନ୍ୟାୟବାନ୍ ଅଟନ୍ତି ।

୯୦- ଈଶ୍ୱରଙ୍କ ଦଣ୍ଡ ମଧ୍ୟ ବରଦାନସଦୃଶ ଅଟେ ।

୯୧- ଈଶ୍ୱର ନିଜ ସେବକର ଅପରାଧଗୁଡିକୁ ବିଚାର ନ କରି ନିଜର ଦୟାପୂର୍ଣ୍ଣ ସ୍ୱଭାବର ପରାକାଷ୍ଠା ପ୍ରଦର୍ଶନ କରି ଥାଆନ୍ତି ।

୯୨- ପ୍ରାଣୀମାନଙ୍କୁ ରକ୍ଷା କରିବାପାଇଁ ଈଶ୍ୱର ନ୍ୟାୟାନୁକୂଳ ସହାୟତା

ମଧ୍ୟ ପ୍ରଦାନ କରନ୍ତି, ପଦେ ପଦେ ସାବଧାନ କରାଉଥାଆନ୍ତି । ଅଜ୍ଞାନତାକାରଣରୁ ମନୁଷ୍ୟ ଯଦି ବୁଝି ନ ପାରେ, ତେବେ ଈଶ୍ୱରଙ୍କର ଦୋଷ କ'ଣ ?

୯୩- ଭଗବାନ୍ ଅଯାଚିତ ମାର୍ଗ ଦର୍ଶନକାରୀ ଓ ହେତୁରହିତ ପ୍ରେମ ପ୍ରଦାନକାରୀ ଅଟନ୍ତି ।

୯୪- ଦୟାଳୁ ପରମେଶ୍ୱର ଦୁଃଖୀ ପ୍ରାଣୀମାନଙ୍କୁ ପୂର୍ଣ୍ଣରୂପେ ସହାୟତା ପ୍ରଦାନ କରିବାପାଇଁ ସବୁରୂପେ ପ୍ରସ୍ତୁତ ଥାଆନ୍ତି । କିନ୍ତୁ ପାପୀ ପ୍ରାଣୀ ଅଶ୍ରଦ୍ଧା ଓ ଅଜ୍ଞାନତାକାରଣରୁ ପରମେଶ୍ୱରଙ୍କଠାରୁ ସେହି ଲାଭ ଉଠାଇ ପାରନ୍ତି ନାହିଁ ।

୯୫- ଈଶ୍ୱରଙ୍କ ସମ୍ବନ୍ଧରେ ଯିଏ ଯେତେ ଅଧିକ ଜାଣେ, ସେ ସେତେ ଲାଭବାନ୍ ହୁଏ ।

୯୬- ଯେପରି ଅଜ୍ଞାନୀ ପୁରୁଷ ଗଙ୍ଗାକୂଳରେ ବାସ କରି ମଧ୍ୟ ତାହାଠାରୁ ଲାଭ ଉଠାଇପାରେ ନାହିଁ, ଦରିଦ୍ର ମନୁଷ୍ୟର ଗୃହରେ ପରଶ ମଣି ଥିଲେ ମଧ୍ୟ ତାହାକୁ ଏକ ପଥର ମନେ କରି ତାହା ଦ୍ୱାରା ଉପକୃତ ହୋଇପାରେ ନାହିଁ; ସେହିପରି ଈଶ୍ୱର ତତ୍ତ୍ୱ ଜାଣି ନ ଥିବା ଅଜ୍ଞାନୀ ଈଶ୍ୱରଙ୍କଠାରୁ କୌଣସି ଲାଭ ପାଇପାରେ ନାହିଁ ।

୯୭- ଈଶ୍ୱରଙ୍କୁ ଯଥାର୍ଥରୂପେ ଜାଣିବା ପରେ ଈଶ୍ୱର ପ୍ରାଣଠାରୁ ଅଧିକ ପ୍ରିୟ ଲାଗନ୍ତି ।

୯୮- ଯେଉଁ ମୁହୂର୍ତ୍ତରେ ମନୁଷ୍ୟ ଈଶ୍ୱରଙ୍କୁ ପରମ ହିତୈଷୀ, ପ୍ରାଣଠାରୁ ଅଧିକ ପ୍ରିୟରୂପେ ହୃଦୟଙ୍ଗମ କରେ, ସେହି ମୁହୂର୍ତ୍ତରୁ ମନୋବିକାର, ରାଗଦ୍ୱେଷାଦି ସମୂଳେ ବିନାଶ ହୋଇଯାଏ ।

୯୯- ପରମାତ୍ମା ନିତ୍ୟ ହୋଇଥିବାରୁ ତତ୍‌ସମ୍ବନ୍ଧୀୟ ଜ୍ଞାନ ମଧ୍ୟ ନିତ୍ୟ ଅଟେ ।

୧୦୦- ଯଦ୍ୟପି ଈଶ୍ୱର ସମସ୍ତଙ୍କର ପ୍ରେମୀ, ସୁହୃଦ୍ ଏବଂ ରକ୍ଷକ ଅଟନ୍ତି, କିନ୍ତୁ ଯିଏ ତାଙ୍କୁ ପ୍ରେମୀ ଓ ସୁହୃଦ୍‌ରୂପେ ବୁଝିପାରେ, ପରମେଶ୍ୱର ତାହାକୁ ସବୁ ଦୃଷ୍ଟିରୁ ରକ୍ଷା କରନ୍ତି ।

୧୦୧- ଈଶ୍ୱର ନ୍ୟାୟପରାୟଣ ଅଟନ୍ତି । ସେ ନ୍ୟାୟପରାୟଣତାକୁ ରକ୍ଷା କରିବା ସହିତ ଦୟାଳୁ ମଧ୍ୟ ଅଟନ୍ତି ।

୧୦୨- ବାସ୍ତବରେ ବସ୍ତୁତତ୍ତ୍ୱ ସବୁଠାରୁ ବିଚିତ୍ର ଅଟେ । ତାହାକୁ 'ଭେଦ' କୁହାଯାଇ ପାରିବ ନାହିଁ କି 'ଅଭେଦ' କୁହାଯାଇ ପାରିବ ନାହିଁ । ତାହା ମନ ଓ ବାଣୀର ଊର୍ଦ୍ଧ୍ୱରେ ।

୧୦୩- ବାସ୍ତବିକ ତତ୍ତ୍ୱକୁ ଯିଏ ଜାଣନ୍ତି, ତାହା କେବଳ ତାଙ୍କରି ଅନୁଭବ। କାରଣ ସେ ମଧ୍ୟ ନିଜ ବାଣୀଦ୍ୱାରା ବର୍ଣ୍ଣନା କରିପାରନ୍ତି ନାହିଁ ।

୧୦୪- ବାସ୍ତବିକ ସ୍ୱରୂପ ଅନିର୍ବଚନୀୟ ଅଟେ ।

୧୦୫- ପରମାତ୍ମାଙ୍କ କୃପାରୁ ହିଁ ପରମାତ୍ମାଙ୍କୁ ଜାଣି ହୁଏ ।

୧୦୬- ପରମାତ୍ମତତ୍ତ୍ୱକୁ ଯଥାର୍ଥରୂପରେ ଜାଣିବାର ସରଳ ଉପାୟ ଶରଣାଗତି ଅଟେ ।

୧୦୭- ଅନିର୍ବଚନୀୟ, ଅଲକ୍ଷ୍ୟ, ଅଚିନ୍ତ୍ୟ ଓ ଗୁଣାତୀତ ଅନନ୍ତ ବ୍ରହ୍ମଙ୍କର କୌଣସି ଏକ ଅଂଶରେ ସତ୍ତ୍ୱ, ରଜ, ତମ ତ୍ରିଗୁଣମୟୀ ପ୍ରକୃତି ରହିଥାଏ । ସେହି ଅଂଶକୁ ସଗୁଣ ବ୍ରହ୍ମ କୁହାଯାଏ । ତାହାକୁ ସଗୁଣ ନିରାକାର ବ୍ରହ୍ମରୂପେ ବୁଝିବା ଉଚିତ ।

୧୦୮- ଗୁଣାତୀତର ଉପାସନା କରାଯାଇ ପାରେ ନାହିଁ, କାରଣ ଗୁଣର ବାହାରେ ଥିବା ବସ୍ତୁ କାହାରି ବିଷୟ ହୋଇ ନ ପାରେ ।

୧୦୯- ସେହି ସର୍ବବ୍ୟାପୀ ନିରାକାର ବ୍ରହ୍ମ ହିଁ ନିଜ ଇଚ୍ଛାରେ ତେଜଯୁକ୍ତ ଆଲୋକରୂପରେ ଆସେ । ତାଙ୍କୁ ଜ୍ୟୋତିର୍ମୟ ମଧ୍ୟ କୁହାଯାଏ ।

୧୧୦- ସେହି ଜ୍ୟୋତିର୍ମୟ ବ୍ରହ୍ମ ଚତୁର୍ଭୁଜ ରୂପରେ ମହାବିଷ୍ଣୁ ଆକାରରେ ଦିବ୍ୟ ବିଗ୍ରହ ଗ୍ରହଣ କରନ୍ତି । ସେହି ଚତୁର୍ଭୁଜ ମହାବିଷ୍ଣୁଙ୍କୁ ସଗୁଣ-ସାକାର ବ୍ରହ୍ମ କହନ୍ତି ।

୧୧୧- ସେହି ମହାବିଷ୍ଣୁ ବ୍ରହ୍ମା, ବିଷ୍ଣୁ ଓ ମହେଶରୂପରେ ଉତ୍ପତ୍ତି, ପାଳନ ଏବଂ ସଂହାର କାର୍ଯ୍ୟ କରନ୍ତି ।

୧୧୨- ଯେପରି ମେଘ, ଜଳ, ବରଫ ଆଦି ସାମଗ୍ରିକଭାବେ ଜଳ ହିଁ ଅଟେ, ସେହିପରି ଗୁଣାତୀତ ସଗୁଣ-ନିରାକାର ଜ୍ୟୋତିର୍ମୟ ଏବଂ ସଗୁଣ ସାକାର ସବୁ ମିଶି ହିଁ ଏକ ସମଗ୍ର ବ୍ରହ୍ମ କୁହାଯାଏ ।

୧୧୩- ଭଗବାନ୍‌ଙ୍କର ଶରଣ ନେଇ ଯେ କୌଣସି ରୂପର ଉପାସନା କରୁଥିବା ପୁରୁଷ ସମଗ୍ର ବ୍ରହ୍ମକୁ ଜାଣିବା ସଙ୍ଗେ ସଙ୍ଗେ ତାଙ୍କୁ ମଧ୍ୟ ପାଇପାରେ ।

୧୧୪- ଈଶ୍ୱରଙ୍କ ରହସ୍ୟ ଅଦ୍‌ଭୁତ ଏବଂ ଅଲୌକିକ ଅଟେ । ସେହି ଈଶ୍ୱରକୃପାରୁ ହିଁ ତାଙ୍କ ସମ୍ବନ୍ଧରେ ଯତ୍‌କିଞ୍ଚିତ୍ ଜାଣି ହୁଏ ।

୧୧୫- ଗୁପ୍ତତତ୍ତ୍ୱକୁ "ରହସ୍ୟ" କୁହାଯାଏ । ରହସ୍ୟ (ମର୍ମ) ଯେ କେହି ପୁରୁଷକୁ କୁହାଯାଏ ନାହିଁ । ଭଗବାନ୍ ମଧ୍ୟ ତାଙ୍କର ପ୍ରିୟ ଭକ୍ତକୁ କେବଳ ନିଜ ରହସ୍ୟ କୁହନ୍ତି ।

୧୧୬- ନିଜର ବାସ୍ତବିକ ସ୍ଥିତି ନିଜର ପ୍ରିୟ ପ୍ରେମୀଙ୍କୁ କହିଦେବା ହିଁ ପ୍ରକୃତ ରହସ୍ୟକୁ ଖୋଲି ଦେବା ଅଟେ ।

୧୧୭- ଯେଉଁ ମନୁଷ୍ୟ ନିଜର ଗୁରୁ, ଶାସ୍ତ୍ର, ସନ୍ଥ ବା ସତ୍‌ସଙ୍ଗ ଆଦି କୌଣସି ଉପାୟରେ ଈଶ୍ୱରଙ୍କ ରହସ୍ୟ ବୁଝି ନିଏ, ସେ ଆଉ ଏକ ମୁହୂର୍ତ୍ତପାଇଁ ଭଗବାନ୍‌ଙ୍କୁ ଭୁଲିପାରେ ନାହିଁ । ସେ ନିତ୍ୟ ନିରନ୍ତର ଈଶ୍ୱରଙ୍କୁ ହିଁ ଭଜନ କରେ ।

୧୧୮- ଈଶ୍ୱରଙ୍କର ତତ୍ତ୍ୱ ଜାଣିଥିବା ମନୁଷ୍ୟ ଜାଣିପାରେ ଯେ ତାଙ୍କଠାରୁ ବଡ ଆଉ କିଛି ଏ ସଂସାରରେ ନାହିଁ । ତେଣୁ ସେ ସବୁଥିରୁ ବିମୁଖ ହୋଇ କେବଳ ଭଗବାନ୍‌ଙ୍କୁ ନିରନ୍ତର ଭଜୁଥାଏ ।

୧୧୯- ସମଗ୍ର ବିଶ୍ୱ ପରମେଶ୍ୱରଙ୍କର ସ୍ୱରୂପ ଅଟେ । ଆମେ ଯଦି ପ୍ରତ୍ୟେକ ରୂପରେ ଭଗବାନ୍‌ଙ୍କୁ ଚିହ୍ନି ପାରିବା, ଭଗବାନ୍‌ଙ୍କ ରହସ୍ୟ ଆମ ପାଇଁ ଖୋଲିଯିବ ଓ ଆମର କୌଣସି ଭୟ ବା ବ୍ୟାକୁଳତା ମଧ୍ୟ ରହିବ ନାହିଁ ।

୧୨୦- ଯେପରି ବହୁରୂପୀ ନିଜର ରହସ୍ୟ କହିଦିଏ, ସେହିପରି ଭଗବାନ୍ ମଧ୍ୟ ଦୟା କରି ଯେବେ ନିଜର ରହସ୍ୟ କହିଦିଅନ୍ତି, ତେବେ ଭକ୍ତ ସେହି ମୁହୂର୍ତ୍ତରେ ସୁଖୀ ଓ ନିର୍ଭୀକ ହୋଇଯାଏ, କାରଣ ତା ପରଠାରୁ ସେ ସର୍ବତ୍ର, ସବୁକ୍ଷଣରେ କେବଳ ଏକ ଆନନ୍ଦରୂପ ଭଗବାନ୍‌ଙ୍କୁ ଦେଖିବାକୁ ପାଏ ।

୧୨୧- ସାମର୍ଥ୍ୟ, ଶକ୍ତି ବା ତେଜକୁ ପ୍ରଭାବ କହନ୍ତି । ଈଶ୍ୱରଙ୍କ ପ୍ରଭାବ ଅପରିମେୟ ଅଟେ ।

୧୨୨- ଈଶ୍ୱର ଅସମ୍ଭବକୁ ସମ୍ଭବ କରିପାରନ୍ତି । ସମସ୍ତ ସଂସାରକୁ ଉଦ୍ଧାର କରିବା ଏକ ଅସମ୍ଭବ କାର୍ଯ୍ୟପରି ଆମକୁ ବୋଧହୁଏ । ମାତ୍ର ଈଶ୍ୱର ଯଦି ଚାହାଁନ୍ତି, ତେବେ ଏକ ମୁହୂର୍ତ୍ତରେ ତାହା ସମ୍ଭବ ହେବ ।

୧୨୩- ଈଶ୍ୱର ଅପରିମିତ ପ୍ରଭାବଶାଳୀ ଓ ସର୍ବଶକ୍ତିମାନ୍ ଅଟନ୍ତି । ତାଙ୍କର ପୂର୍ଣ୍ଣ ପ୍ରଭାବ ସମ୍ବନ୍ଧରେ ଦେବ, ଦାନବ ଓ ମହର୍ଷିଗଣ ମଧ୍ୟ ଜାଣନ୍ତି ନାହିଁ । ସେ କେବଳ ନିଜେ ହିଁ ନିଜକୁ ଜାଣନ୍ତି ।

୧୨୪- ସମଗ୍ର ଶକ୍ତି ସେହି ଈଶ୍ୱରଙ୍କ ଶକ୍ତିର ଏକ ଅଂଶ ଅଟେ ।

୧୨୫- ଭଗବାନ୍‌ଙ୍କର ବାସ୍ତବିକ ପ୍ରଭାବ ତାଙ୍କର ଶରଣ ନେବାପରେ ତାଙ୍କ କୃପାରୁ ହିଁ ଜାଣି ହୁଏ ।

୧୨୬- ପରମେଶ୍ୱର ଗୁଣାତୀତ ଓ ସର୍ବ ସଦ୍‌ଗୁଣରେ ପରିପୂର୍ଣ୍ଣ ଅଟନ୍ତି ।

ତାଙ୍କର ଗୁଣ ଅନନ୍ତ, ଅସୀମ, ଯାହାକୁ କି ଶେଷ-ଶାରଦା ଆଦି ମଧ୍ୟ ବର୍ଣ୍ଣନା କରିବାକୁ ଅକ୍ଷମ ।

୧୨୭- ତାଙ୍କର ଗୁଣାବଳୀକୁ ବର୍ଣ୍ଣନା କରିବା ଯାହା, ଅନନ୍ତ ଧନରାଶିର ସ୍ୱାମୀଙ୍କୁ ଲକ୍ଷପତି କହିବା ତାହା କିମ୍ବା ସୂର୍ଯ୍ୟଙ୍କ ସହ ଜୁଲୁଜୁଲିଆ ପୋକକୁ ତୁଳନା କରିବା ତାହା ହିଁ ହେବ ।

୧୨୮- ଭଗବାନ୍ ପରମ ପ୍ରେମମୟ ଅଟନ୍ତି। ସମଗ୍ର ସଂସାରର ପ୍ରେମକୁ ଏକତ୍ରିତ ଯଦି କରାଯାଏ, ତେବେ ତାହା ପ୍ରେମମୟ ପ୍ରଭୁଙ୍କର ପ୍ରେମସାଗରର ଏକ ବୁନ୍ଦା ସଙ୍ଗେ ସମାନ ହେବ।

୧୨୯- ଭଗବାନ୍‌ଙ୍କର ଜ୍ୟୋତି ଅଲୌକିକ ଅଟେ। କୋଟି କୋଟି ସୂର୍ଯ୍ୟଙ୍କର ଜ୍ୟୋତିକୁ ଏକତ୍ରିତ କଲେ ହୁଏତ ତାଙ୍କର ଜ୍ୟୋତି ସଙ୍ଗେ ତୁଳନୀୟ ହେବ।

୧୩୦- ଭଗବାନ୍‌ଙ୍କ ଉଦାରତା କ'ଣ ବା କହିବା ? ବିଷ ପିଆଇ ଥିବା ପୂତନାକୁ ମଧ୍ୟ ସେ ପରମଗତି ପ୍ରଦାନ କରିଥିଲେ । ଏହି ଉଦାହରଣରୁ ତାଙ୍କ ଉଦାରତାର ଅନୁମାନ କରାଯାଇପାରେ ।

୧୩୧- ଅଭୟ ଭଗବାନ୍‌ଙ୍କର ସ୍ୱରୂପ ଅଟେ । ଯେଉଁ ପ୍ରଭୁଙ୍କର ରହସ୍ୟ ଜାଣିବା ମାତ୍ରେ ହିଁ ବା ତାଙ୍କ ପ୍ରଭାବ ଓ ନାମ ସ୍ମରଣ ମାତ୍ରେ ହିଁ ମନୁଷ୍ୟ ସବୁଦିନ ପାଇଁ ଅଭୟ ହୋଇଯାଏ, ସେହି ଅଭୟ ରୂପ ଭଗବାନ୍‌ଙ୍କର ଅଭୟ-ଗୁଣକୁ କିପରି ବର୍ଣ୍ଣନା କରିବା ?

୧୩୨- ଭଗବାନ୍ ତ ଦୟାର ସାଗର ଅଟନ୍ତି । ପାପୀରୁ ପାପୀ ମନୁଷ୍ୟ ଯଦି ତାଙ୍କର ଶରଣ ଗ୍ରହଣ କରି ନିଏ, ତେବେ ତାକୁ ସବୁଦିନ ପାଇଁ ପାପମୁକ୍ତ କରି ଦିଅନ୍ତି ।

୧୩୩- ଯାହାକୁ କେହି ନିଜର କରନ୍ତି ନାହିଁ, ସେ ଯଦି ଶରଣାଗତ ହୁଏ, ପ୍ରଭୁ ତାକୁ ଗ୍ରହଣ କରି ନିଅନ୍ତି ।

୧୩୪- ପରମାତ୍ମାଙ୍କର ଜ୍ଞାନ ଅଦ୍ଭୁତ ଅଟେ । ସେ ସ୍ୱୟଂ ଜ୍ଞାନରୂପ ଅଟନ୍ତି। ସମଗ୍ର ସଂସାରର ଜ୍ଞାନକୁ ଏକତ୍ରିତ କଲେ ତାହା ପରମାତ୍ମାଙ୍କର ଜ୍ଞାନର ଏକ କ୍ଷୁଦ୍ର ପରମାଣୁ ସଙ୍ଗେ ମଧ୍ୟ ତୁଳନୀୟ ହେବ ନାହିଁ ।

୧୩୫- ଭଗବାନ୍‌ଙ୍କର ପବିତ୍ରତା କିଏ ବା କଳନା କରିବ ? ତାଙ୍କର ନାମ-ଜପ, ଗୁଣ-ଗାନ ଓ ସ୍ୱରୂପ-ଚିନ୍ତନଦ୍ୱାରା ତ ମହାପାପୀ ମନୁଷ୍ୟ ମଧ୍ୟ ପରମ ପବିତ୍ର ହୋଇଯାଏ ।

୧୩୬- ଭଗବାନ୍ ମହାନ୍ ବ୍ରହ୍ମଚାରୀ ଅଟନ୍ତି । ଏପରିକି କାମଦେବ

ମଧ୍ୟ ତାଙ୍କୁ ସ୍ମରଣ କରୁଥିବା ଭକ୍ତଙ୍କ ପାଖକୁ ପ୍ରବେଶ କରି ପାରେ ନାହିଁ । ଯାହାଙ୍କର ଚିନ୍ତନ ଓ ଧ୍ୟାନଦ୍ୱାରା ମନୁଷ୍ୟ ବ୍ରହ୍ମଚାରୀ ହୋଇଯାଏ, ସେହି ମହାନ୍ ବ୍ରହ୍ମଚାରୀଙ୍କର ବ୍ରହ୍ମଚର୍ଯ୍ୟର ମହିମା କିଏ ଗାଇ ପାରିବ ?

୧୩୭- ଭଗବାନ୍ କ୍ଷମାର ମୂର୍ତ୍ତି ଅଟନ୍ତି । ବିନାକାରଣରେ ଭୃଗୁ ତାଙ୍କ ବକ୍ଷରେ ପଦାଘାତ କରିଥିଲେ ସୁଦ୍ଧା ସେଥିରେ ଅସନ୍ତୁଷ୍ଟ ନ ହୋଇ ସେହି ପଦଚିହ୍ନକୁ ନିଜେ ସର୍ବଦା ଭୂଷଣରୂପେ ଧାରଣ କଲେ । ପରିପୂର୍ଣ୍ଣ ରାଜସଭାରେ ଯେଉଁ ଶିଶୁପାଳ ଭର୍ତ୍ସନା କରିଥିଲା ଓ ଶତ ଶତ ଅପରାଧ କରିଥିଲା, ସେହି ଅପରାଧଗୁଡିକୁ ମଧ୍ୟ ପ୍ରଭୁ କ୍ଷମା କରି ତାକୁ ମୁକ୍ତି ଦେଇଥିଲେ ।

୧୩୮- "ଅଦ୍ୱେଷ୍ଟା" ଭଗବାନ୍‌ଙ୍କର ସ୍ୱଭାବ ଅଟେ । ଦ୍ୱେଷର ଗନ୍ଧ ମଧ୍ୟ ତାଙ୍କଠାରେ ନାହିଁ । ଭଗବାନ୍ ଦ୍ୱେଷକାରୀକୁ ଦଣ୍ଡ ଦେବା ସଙ୍ଗେ ସଙ୍ଗେ ଉଦ୍ଧାର ମଧ୍ୟ କରିଦିଅନ୍ତି ।

୧୩୯- ସତ୍ୟ ଭଗବାନ୍‌ଙ୍କର ସ୍ୱରୂପ ଅଟେ । ସମଗ୍ର ସଂସାରରେ ଯେଉଁ ସତ୍ତାର ବୋଧ ଆମ୍ଭେମାନେ କରୁଁ ତାହାହିଁ ଈଶ୍ୱରଙ୍କ ଅଧିଷ୍ଠାନ ସ୍ଥଳ ଅଟେ । ସକଳ ସଂସାର ସତ୍ୟସ୍ୱରୂପ ଭଗବାନ୍‌ଙ୍କର ସତ୍ୟର ଆଧାର ଉପରେ ପ୍ରତିଷ୍ଠିତ ।

୧୪୦- ଭଗବାନ୍ ପରମ ବୈରାଗ୍ୟବାନ ଅଟନ୍ତି । ଗୁଣମୟ ସକଳ ସଂସାରକୁ ଧାରଣ କରି ମଧ୍ୟ ସେ ଗୁଣାତୀତ ଅଟନ୍ତି । ସାରା ସଂସାରରୂପୀ କୁଟୁମ୍ବକୁ ପାଳନ କରୁଥିଲେ ହେଁ ସେ କାହାପ୍ରତି ଆସକ୍ତି କରନ୍ତି ନାହିଁ । ସର୍ବଦା ସକଳ ପଦାର୍ଥଠାରୁ ନିର୍ଲିପ୍ତ ରହନ୍ତି ।

୧୪୧- ଶାନ୍ତି ଓ ଆନନ୍ଦ ଭଗବାନ୍‌ଙ୍କ ସ୍ୱରୂପ ଅଟେ, ଯାହାଙ୍କର ଶରଣାଗତ ହେଲେ ମନୁଷ୍ୟ ପରମ ଶାନ୍ତି ଓ ପରମ ଆନନ୍ଦ ଲାଭ କରେ ତାଙ୍କର ଶାନ୍ତି ଓ ଆନନ୍ଦର ତୁଳନା କାହା ସହିତ କରିପାରିବା ?

୧୪୨- ପ୍ରଭୁ ସକଳ ସାତ୍ତ୍ୱିକ ଗୁଣର ସାଗର ଅଟନ୍ତି । ତାଙ୍କଠାରେ କ୍ଷମା, ଦୟା, ଶାନ୍ତି, ସମତା, ସରଳତା, ଉଦାରତା, ପବିତ୍ରତା ଅପରିମିତ ଥାଏ । ସେ ଜ୍ଞାନ, ବୈରାଗ୍ୟ, ତେଜ ଓ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ଅଟନ୍ତି ।

୧୪୩- ସମଗ୍ର ସଂସାରର ଜ୍ଞାନ ଓ ତେଜକୁ ଏକତ୍ରିତ ଯଦି କରାଯାଏ, ତଥାପି ତାହା ତେଜୋମୟ ଜ୍ଞାନ ସ୍ୱରୂପ ପରମାତ୍ମାଙ୍କର ତେଜ ଓ ଜ୍ଞାନର ଏକ ଅଂଶ ସହିତ ମଧ୍ୟ ସମାନ ହୋଇ ନ ପାରେ ।

୧୪୪- ଈଶ୍ୱର ସ୍ୱଶକ୍ତି ବଳରେ ଆବିର୍ଭାବ ଓ ଅନ୍ତର୍ଦ୍ଧାନ ହୋଇ ଥାଆନ୍ତି ଅର୍ଥାତ୍ ଛପି ଯାଆନ୍ତି । ଏହା ହିଁ ତାଙ୍କର ଅତ୍ୟନ୍ତ ରହସ୍ୟମୟୀ ଲୀଳା ଅଟେ ।

ଏହା ଭଗବାନ୍‌ଙ୍କର ଜ୍ଞାନମୟୀ ଅଲୌକିକ ବିଶୁଦ୍ଧ ଦିବ୍ୟ ମାୟା ଅଟେ । ତେଣୁ ଭଗବାନ୍‌ଙ୍କ ଲୀଳାଦ୍ୱାରା ଆବିର୍ଭୂତ ଅବତାରଗୁଡ଼ିକୁ କୃତ୍ରିମ ମନେ କରିବା ଉଚିତ ନୁହେଁ ।

୧୪୫- ଭଗବାନ୍‌ଙ୍କର ଭିନ୍ନ ଭିନ୍ନ ସାକାର ବିଗ୍ରହଗୁଡିକର ମହତ୍ତ୍ୱ ପ୍ରତିପାଦିତ କରିବାପାଇଁ ଭିନ୍ନ ଭିନ୍ନ ପୁରାଣଗୁଡିକ ସୃଷ୍ଟି ହୋଇଅଛି ।

୧୪୬- ଭଗବାନ୍‌ଙ୍କର ସକଳ ବିଗ୍ରହ ମହତ୍ତ୍ୱପୂର୍ଣ୍ଣ ଅଟେ । ମାତ୍ର ବସ୍ତୁତଃ ସେଗୁଡିକ ଏକ ଅଟେ ।

୧୪୭- ଶିବପୁରାଣରେ ଶିବ, ବିଷ୍ଣୁପୁରାଣରେ ବିଷ୍ଣୁ ଏବଂ ବ୍ରହ୍ମବୈବର୍ତ୍ତ ତଥା ଭାଗବତରେ କୃଷ୍ଣ ସବୁ ହିଁ ଏକ ଅଟେ, ଅର୍ଥାତ୍ ଶୁଦ୍ଧ ବିଜ୍ଞାନାନନ୍ଦଘନ ବ୍ରହ୍ମ ହିଁ ଅଟନ୍ତି । ସେ ବ୍ରହ୍ମା, ବିଷ୍ଣୁ ଓ ଶିବରୂପରେ ପ୍ରକଟିତ ହୋଇ ସାଂସାରିକ ଉତ୍ପତ୍ତି, ସ୍ଥିତି ଏବଂ ସଂହାରର କାର୍ଯ୍ୟ କରନ୍ତି । ଏହି ସବୁ ତାଙ୍କର ଲୀଳା ଅଟେ ।

୧୪୮- ଈଶ୍ୱରଙ୍କ ଲୀଳାଗୁଡିକର ରହସ୍ୟ ସାଧାରଣ ବିଗ୍ରହ ଓ ବୁଦ୍ଧିର ମନୁଷ୍ୟମାନଙ୍କପାଇଁ ଅଜ୍ଞେୟ ଅଟେ ।

୧୪୯- ସମଗ୍ର ସଂସାରର ସୌନ୍ଦର୍ଯ୍ୟ ପ୍ରଭୁଙ୍କ ସୌନ୍ଦର୍ଯ୍ୟର କାଣିଗ୍ରଏ ମଧ୍ୟ ନୁହେଁ । ସେ ଆନନ୍ଦମୂର୍ତ୍ତି ଅଟନ୍ତି ।

୧୫୦- ଯେପରି ତାରରେ ବିଜୁଳି ଅନେକ ପ୍ରକାରର କାର୍ଯ୍ୟ ସମ୍ପାଦନ କରେ, ସେହିପରି ପ୍ରଭୁଙ୍କର ଶକ୍ତି ସବୁ କିଛି କରୁଛି ।

୧୫୧- ପ୍ରଭୁଙ୍କ ରହସ୍ୟ କିଏ ଅବା ଜାଣି ପାରେ? ସେ ସକଳ ପଦାର୍ଥରେ ଅଛନ୍ତି, ମାତ୍ର ତାଙ୍କୁ କେହି ଧରିପାରେ ନାହିଁ । ମର୍ମର ଅନ୍ୟନାମ ରହସ୍ୟ ଅଟେ ।

୧୫୨- ପରମାତ୍ମାଙ୍କର ରହସ୍ୟ ଜାଣିଥିବା ପୁରୁଷ ସର୍ବଦା ଓ ସର୍ବତ୍ର ନିର୍ଭୟ ରହେ ।

୧୫୩- ପ୍ରାଣୀ ମଧ୍ୟରେ ନିହିତ ଶକ୍ତି ପ୍ରଭୁଙ୍କ ରହସ୍ୟ ହୃଦୟଙ୍ଗମ ପାଇଁ ଯଥେଷ୍ଟ ନୁହେଁ । ତେଣୁ ଯେବେ ପ୍ରଭୁ ଜଣାନ୍ତି, ତେବେ ସେ ଜାଣିପାରେ ।

୧୫୪- ଈଶ୍ୱର ସର୍ବଶକ୍ତିମାନ୍, ସର୍ବଜ୍ଞ, ସର୍ବବ୍ୟାପୀ, ସର୍ବଗୁଣସମ୍ପନ୍ନ, ନିର୍ବିକାର, ଅନନ୍ତ, ନିତ୍ୟ, ବିଜ୍ଞାନ ଓ ଆନନ୍ଦଘନ ଅଟନ୍ତି ।

୧୫୫- ସେହି ଚିନ୍ମୟ ପରମାତ୍ମା ସଗୁଣ ତଥା ନିର୍ଗୁଣ ମଧ୍ୟ ଅଟନ୍ତି । ଏହି ତ୍ରିଗୁଣମୟ ସମ୍ପୂର୍ଣ୍ଣ ସଂସାର ସେହି ପରମାତ୍ମାଙ୍କର କୌଣସି ଅଂଶ ବିଶେଷ

ଅଟେ। ଏହି ଅଂଶର ନାମ ସଗୁଣ ଯାହାକି ସଂସାରର ସହିତ ଅଟେ । ସଂସାରରହିତ ଅନନ୍ତ ଅସୀମ ବିଜ୍ଞାନାନନ୍ଦଘନ ଯେଉଁ ପରମାତ୍ମାଙ୍କ ସ୍ୱରୂପ ତାହା ନିର୍ଗୁଣ ଅଟେ। ସଗୁଣ ଓ ନିର୍ଗୁଣକୁ ସାମଗ୍ରିକ ଭାବେ ଈଶ୍ୱର କୁହାଯାଏ ।

୧୫୬- ସଗୁଣ ଈଶ୍ୱର ସାକାର ଓ ନିରାକାର ଉଭୟ ଅଟନ୍ତି । ଯେପରି ନିରାକାର ରୂପେ ବ୍ୟାପକ ଅଗ୍ନି ସଂଘର୍ଷଣ ଆଦି ଉପାୟଦ୍ୱାରା ସାଧକର ସମ୍ମୁଖରେ ପ୍ରକଟ ହୋଇଯାଏ, ସେହିପରି ସର୍ବାନ୍ତର୍ଯ୍ୟାମୀ ଦୟାଳୁ ପରମାତ୍ମା ନିରାକାରରୂପେ ଚରାଚର ସମସ୍ତ ଭୂତପ୍ରାଣୀରେ ବ୍ୟାପକ ରହି ମଧ୍ୟ ଧର୍ମ ସଂସ୍ଥାପନ ଓ ପ୍ରାଣୀମାନଙ୍କ ଉଦ୍ଧାର ପାଇଁ ଭକ୍ତର ଭାବନା ଅନୁରୂପ ଶ୍ରଦ୍ଧା, ଭକ୍ତି, ପ୍ରେମ ଆଦି ସାଧନାଦ୍ୱାରା ସାକାର ରୂପେ ସମୟ ସମୟରେ ପ୍ରକଟ ହୋଇଥାଆନ୍ତି ।

୧୫୭- ଯେତେବେଳେ ଓ ଯେଉଁଠାରେ ସେ ସାକାରରୂପେ ପ୍ରକଟ ହୁଅନ୍ତି, ଏହାର ଅର୍ଥ ଏହା ନୁହେଁ ଯେ ସେ କେବଳ ସେତିକି ଅଟନ୍ତି । ସେ ନିର୍ଗୁଣ ଓ ସଗୁଣ ରୂପରେ ସକଳ ସ୍ଥାନରେ ମଧ୍ୟ ଥାଆନ୍ତି । ସମସ୍ତ ଶକ୍ତି ସମ୍ପନ୍ନ ସମଗ୍ର ବ୍ରହ୍ମ ହିଁ ସଗୁଣ-ସାକାର ସ୍ୱରୂପରେ ପ୍ରକଟିତ ହୁଅନ୍ତି ।

୧୫୮- ସେହି ସଗୁଣ ପରମାତ୍ମା ସୃଷ୍ଟିର ଉତ୍ପତ୍ତି, ପାଳନ ଓ ବିନାଶ କାଳରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ରୂପରେ ବିରାଜମାନ ଥାଆନ୍ତି । ସର୍ବଶକ୍ତିମାନ୍, ସକଳ ସୁହୃଦ୍ ଏବଂ ବିନାକାରଣରେ ଦୟା ପ୍ରଦର୍ଶନକାରୀ ଭଗବାନ୍ଙ୍କୁ ଯିଏ ଗ୍ହେଁ, ସେ ପାଏ । ତାଙ୍କର ନୀତି ହେଲା—**"ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।"**



# ଈଶ୍ୱର

୧- ଈଶ୍ୱର ସ୍ୱତଃ ପ୍ରମାଣ ଅଟନ୍ତି । ଏହାପାଇଁ ଅନ୍ୟାନ୍ୟ ପ୍ରମାଣଗୁଡ଼ିକର ଆବଶ୍ୟକତା ନାହିଁ। ସିଦ୍ଧ ପ୍ରମାଣ ଈଶ୍ୱରଙ୍କ ସତ୍ତା ପ୍ରେରଣା ଉପରେ ଆଧାରିତ ଅଟେ।

୨- ଈଶ୍ୱର ଅଛନ୍ତି ବା ନାହାନ୍ତି—ଏହି ପ୍ରଶ୍ନ ମଧ୍ୟ ଈଶ୍ୱରଙ୍କୁ ପ୍ରମାଣିତ କରେ। କାରଣ ମିଥ୍ୟା ବସ୍ତୁ ବିଷୟରେ ପ୍ରଶ୍ନ ଉଠି ନପାରେ। ଯେପରି ବନ୍ଧ୍ୟାପୁତ୍ର ଅଛି ବା ନାହିଁ। ଏହା ଏକ ପ୍ରଶ୍ନ ହୋଇ ନ ପାରେ।

୩- ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ରାଦି

ପଦାର୍ଥଗୁଡିକର ଉତ୍ପତ୍ତି ଏବଂ ନାନାପ୍ରକାରରର ଯୋନିଦ୍ୱାରା ସମ୍ଭୂତ ଅଦ୍ଭୁତ ଓ ବିଚିତ୍ର ପ୍ରାଣୀ ଓ ଏଗୁଡିକର ନିୟମିତ ସଂଗ୍ଚଳନ କ୍ରିୟା ଦେଖିଲେ ଏହା ପ୍ରମାଣିତ ହୁଏ ଯେ ବିନା କର୍ତ୍ତାରେ ଉତ୍ପତ୍ତି ଓ ବିନା ସଂଗ୍ଚଳକରେ ନିୟମିତ ସଂଗ୍ଚଳିତ ହେବା ଅସମ୍ଭବ ଅଟେ । ତେଣୁ ଯେ ଏଗୁଡିକରେ ଉତ୍ପତ୍ତି ଓ ସଂଗ୍ଚଳନ କରେ ସେ ହିଁ ଈଶ୍ୱର ।

୪- ପ୍ରାଣୀମାନଙ୍କର ସୁଖ, ଦୁଃଖ, ଜାତି, ଆୟୁ, ସ୍ୱଭାବର ଭିନ୍ନତା ଗୁଣ କର୍ମାନୁଯାୟୀ ଯଥାଯୋଗ୍ୟ ବିଭାଗ କରିବା ଜ୍ଞାନସ୍ୱରୂପ ଈଶ୍ୱରଙ୍କର ବିନା ଜଡ ପ୍ରକୃତିଦ୍ୱାରା ସମ୍ଭବପର ନୁହେଁ, କାରଣ ସୃଷ୍ଟିର ପ୍ରତ୍ୟେକ କାର୍ଯ୍ୟ ପ୍ରୟୋଜନ ଉପରେ ଆଧାରିତ। ତେଣୁ ପ୍ରୟୋଜନ ଅନୁରୂପ ସୃଷ୍ଟିର ନିର୍ମାଣ ଏବଂ ସେମାନଙ୍କର ବିଭାଗୀକରଣ କୌଣସି ପରମ ଚେତନ କର୍ତ୍ତା ବିନା ସମ୍ଭବ ନୁହେଁ ।

୫- ଶୂନ୍ୟରେ କାଳ୍ପନିକ ଘର ତୋଳିବା ପରି ଈଶ୍ୱରଙ୍କ ସତ୍ତା କାଳ୍ପନିକ ନୁହେଁ ।

୬- ପରମାତ୍ମା କଳ୍ପିତ ନୁହଁନ୍ତି । ସେ ଧ୍ରୁବ ସତ୍ୟ ଅଟନ୍ତି ।

୭- ଯେଉଁ ଦୟାମୟୀ ଶକ୍ତିର ଆଶ୍ରୟ ନେଇ ଚରାଚର ପ୍ରାଣୀ ଦୁଃଖର ବିନାଶପାଇଁ କରୁଣଭାବରେ ଆର୍ତ୍ତନାଦ କରନ୍ତି ଓ ଯେଉଁ ଦୟାମୟୀ ଶକ୍ତି ସେମାନଙ୍କର ଦୁଃଖ ବିମୋଚନ କରେ ସେହି ସର୍ବଶକ୍ତିମାନ୍‌ଙ୍କୁ ପରମାତ୍ମା କୁହାଯାଏ ।

୮- ଏହି ସମଗ୍ର ସଂସାରର ପରମାତ୍ମା ହିଁ ଆଧାର ଓ ଅନାଦି କାରଣ ଅଟନ୍ତି ।

୯- ଈଶ୍ୱର ବିନା କାରଣ ଓ ବିନା ପ୍ରତ୍ୟୁପକାରରେ ସକଳ ପ୍ରାଣୀମାନଙ୍କ ଉପରେ ଦୟା କରନ୍ତି ଏବଂ ସମସ୍ତଙ୍କୁ ସମାନ ମନେକରି ସମସ୍ତଙ୍କୁ ପ୍ରେମ କରନ୍ତି । ତେଣୁ ତାଙ୍କୁ ମାନିବା ମନୁଷ୍ୟର କର୍ତ୍ତବ୍ୟ ଅଟେ ଏବଂ କର୍ତ୍ତବ୍ୟ ପାଳନ କରିବା ମନୁଷ୍ୟର ମନୁଷ୍ୟତ୍ୱ ଅଟେ ।

୧୦- ଈଶ୍ୱରଙ୍କୁ ମାନିଲେ ତାଙ୍କର ପ୍ରାପ୍ତିପାଇଁ ତାଙ୍କର ଗୁଣ, ପ୍ରେମ ଓ ପ୍ରଭାବକୁ ଜାଣିବାପାଇଁ ଅନୁସନ୍ଧାନ କରାଯାଏ ଏବଂ ତାଙ୍କର ନାମଜପ, ସ୍ୱରୂପର ଧ୍ୟାନ ଓ ଗୁଣଗୁଡିକର ଶ୍ରବଣ-ମନନପାଇଁ ଉଦ୍ୟମ କରାଯାଏ । ଏହାଦ୍ୱାରା ମନୁଷ୍ୟର ପାପ, ଅବଗୁଣ ଓ ଦୁଃଖଗୁଡିକ ନାଶ ହୋଇ ପରମାନନ୍ଦ ପ୍ରାପ୍ତି ହୁଏ ।

୧୧- ଭଲଭାବେ ବୁଝି ଈଶ୍ୱରଙ୍କୁ ମାନିଲେ ସେହି ମନୁଷ୍ୟଦ୍ୱାରା କୌଣସି

ପ୍ରକାର ଦୁରାଗ୍ରହ ହୁଏ ନାହିଁ । ଯେଉଁ ମନୁଷ୍ୟ ଦୁରାଗ୍ରହର ଆଶ୍ରୟ ନିଏ, ସେ ବାସ୍ତବରେ ଈଶ୍ୱରଙ୍କୁ ସ୍ୱୀକାର କରେ ନାହିଁ ।

୧୨- ନିର୍ମଳ ହୃଦୟରେ ଈଶ୍ୱରଙ୍କୁ ମାନିଲେ ତାଙ୍କର ସର୍ବଦା ଜୟ ହୁଏ । ଧ୍ରୁବ, ପ୍ରହ୍ଲାଦ ଆଦି ଏହାର ଅନେକ ଜ୍ୱଳନ୍ତ ଉଦାହରଣ ଅଟନ୍ତି । ଏପରିକି ବର୍ତ୍ତମାନ ମଧ୍ୟ ଯେଉଁମାନେ ସଚ୍ଚୋଟ ହୃଦୟରେ ଈଶ୍ୱରଙ୍କୁ ମାନି ତାଙ୍କର ଶରଣାପନ୍ନ ଅଟନ୍ତି, ତାଙ୍କର ସର୍ବବିଧ ଉନ୍ନତି ଦେଖିବାକୁ ମିଳେ । ସମ୍ପୂର୍ଣ୍ଣ ଶ୍ରୁତି ଓ ସ୍ମୃତି ଆଦି ଶାସ୍ତ୍ରର ସାର୍ଥକତା ମଧ୍ୟ ଈଶ୍ୱରଙ୍କୁ ମାନିଲେ ସିଦ୍ଧି ହୁଏ, କାରଣ ସମୁଦାୟ ଶାସ୍ତ୍ରର ଧ୍ୟେୟ ଈଶ୍ୱରଙ୍କୁ ପ୍ରତିପାଦନ କରିବାରେ ନିହିତ ।

**ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।**
**ଅଦୌ ମଧ୍ୟେ ତଥା ଗ୍ରନ୍ତେ ହରିଃ ସର୍ବତ୍ର ଗୀୟତେ ॥**

(ମହା. ସ୍ୱର୍ଗ. ଅ. ୬)

୧୩- ଈଶ୍ୱରଙ୍କୁ ଅବମାନନା କଲେ ମନୁଷ୍ୟର ଆଧ୍ୟାତ୍ମିକ ସ୍ଥିତି ନଷ୍ଟ ହୋଇଯାଏ ଓ ତାହା ମଧ୍ୟରେ ପଶୁତ୍ୱ ପ୍ରବେଶ କରେ । ପୃଥିବୀରେ ଯେଉଁମାନେ ଈଶ୍ୱରଙ୍କୁ ଅବଜ୍ଞା କରନ୍ତି, ସେମାନଙ୍କ ଆଚରଣକୁ ଲକ୍ଷ୍ୟ କଲେ ଏହି କଥା ସ୍ପଷ୍ଟ ହୁଏ ।

୧୪- ଯେଉଁ ପରମାତ୍ମା ସ୍ୱତଃ ପ୍ରମାଣ ଅଟନ୍ତି ଓ ଯାହାଙ୍କ ପ୍ରଭାବରେ ସକଳ ପ୍ରମାଣ ପ୍ରମାଣିତ ହୁଏ, ତାଙ୍କର ସ୍ଥିତି ସମ୍ବନ୍ଧରେ ପ୍ରମାଣ ଖୋଜିବା ଅର୍ଥ ହେଲା—ମନୁଷ୍ୟ ନିଜର ସ୍ଥିତି ସମ୍ବନ୍ଧରେ ଆଶଙ୍କା କରି ପଗ୍ରରିବା—ମୁଁ ଅଛି କି ମୁଁ ନାହିଁ ।

୧୫- ଯେଉଁମାନେ ସୂକ୍ଷ୍ମଦର୍ଶୀ, ସେମାନେ ନିଜର ସୂକ୍ଷ୍ମବୁଦ୍ଧିଦ୍ୱାରା ପରମାତ୍ମାଙ୍କର ପ୍ରତ୍ୟକ୍ଷ ସାକ୍ଷାତ୍ ଲାଭ କରନ୍ତି ।

୧୬- ଯେଉଁମାନେ ସ୍ୱୟଂ ସାକ୍ଷାତ୍ ପାଇଁ ଇଚ୍ଛା କରନ୍ତି, ସେମାନେ ଶ୍ରୁତି, ସ୍ମୃତି ତଥା ମହାତ୍ମାମାନଙ୍କର ପ୍ରଦର୍ଶିତ ମାର୍ଗ ଅନୁଯାୟୀ ପ୍ରଯତ୍ନ କଲେ ପରମାତ୍ମାଙ୍କର ସାକ୍ଷାତ୍ ଲାଭ କରି ପାରନ୍ତି ।

୧୭- ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ, ଅଭିନିବେଶ (ମରଣ ଭୟ)— ଏହି ପାଞ୍ଚଟି କ୍ଳେଶ, ପାପ-ପୁଣ୍ୟାଦି କର୍ମ, ସୁଖ-ଦୁଃଖାଦି ଭୋଗ ଓ ସମ୍ପୂର୍ଣ୍ଣ ବାସନାରୁ ରହିତ ପୁରୁଷ-ବିଶେଷ (ପୁରୁଷୋତ୍ତମ) ଈଶ୍ୱର ଅଟନ୍ତି ।

୧୮- କୋରାନ୍‌ରେ ଲେଖା ଅଛି—ପୂର୍ବ ଏବଂ ପଶ୍ଚିମ ସର୍ବତ୍ର ଭଗବାନ୍ ଅଛନ୍ତି। ତୁମେ ଯେଉଁ ଆଡକୁ ତୁମ ମୁଖ ଘୂରାଇବ, ସେ ଆଡ଼େ ମଧ୍ୟ

ଈଶ୍ୱରଙ୍କ ମୁଖ ରହିବ। ଈଶ୍ୱର ବାସ୍ତବରେ ବଡ ଉଦାର ଓ ସର୍ବଶକ୍ତିମାନ୍ ଅଟନ୍ତି।

୧୯- ଯିଶୁ ଖ୍ରୀଷ୍ଟ କହିଛନ୍ତି—ଯାହାର ଈଶ୍ୱର ବିଶ୍ୱାସ ଅଛି ତଥା ଯିଏ ଭଗବାନ୍‌ଙ୍କ ଶକ୍ତିର ଆଶ୍ରିତ, ସେ ସଂସାରରୁ ଉଦ୍ଧାର ପାଇବ। କିନ୍ତୁ ଅବିଶ୍ୱାସୀମାନଙ୍କର ବଡ ଦୁର୍ଗତି ହେବ ।

୨୦- ମନୁଷ୍ୟ ଯଦି ବିଗ୍ୟର ଦୃଷ୍ଟିରୁ ଦେଖେ ତେବେ ସେ ଈଶ୍ୱରଙ୍କ ସତ୍ତା ପଦେ ପଦେ ଅନୁଭବ କରିବ ।

୨୧- ସର୍ବଶକ୍ତିମାନ୍ ବିଜ୍ଞାନାନନ୍ଦଘନ ଈଶ୍ୱରଙ୍କର ସତ୍ତା ଓ ଦୟା ଉପରେ ଏବଂ ତାଙ୍କଦ୍ୱାରା କୃତ ମହାତ୍ମାମାନଙ୍କ ଜୀବନ-ଘଟଣା ଉପରେ ବିଶ୍ୱାସ କଲେ ନିଶ୍ଚିତରୂପେ ଲାଭ ହୁଏ ।

୨୨- ଭଗବାନ୍ ନିଶ୍ଚିତରୂପେ ଅଛନ୍ତି । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଏହା ଦୃଢ ନିଶ୍ଚିତ ଅଟେ ।

୨୩- ଈଶ୍ୱରଙ୍କ ସତ୍ତା ସ୍ୱୀକାର କଲେ ପାପଗୁଡିକର ଖଣ୍ଡନ ହୁଏ ।



# ପ୍ରାର୍ଥନା

୧- ଆପଣ ଥାଉଁ ଥାଉଁ ମୋର ଯଦି ଦୁର୍ଗତି ହେଲା, ତେବେ ମୋର କୌଣସି ଆପତ୍ତି ନାହିଁ । ମାତ୍ର ଆପଣଙ୍କର ଚିନ୍ତନ ଅବିରତ ଚ୍ୟଲିବା ଉଚିତ । ଏଥିପାଇଁ ଯେତେ କ୍ଳେଶ ଓ କଷ୍ଟ ଆସୁ ଦୁଃଖ ନାହିଁ । ଆପଣଙ୍କ ଚିନ୍ତନ କେବେ ମୋତେ ପ୍ରାଣଠାରୁ ବଳି ଭଲ ଲାଗିବ ? ପ୍ରଭୁ ! ଯେଉଁମାନଙ୍କୁ ତାହା ଭଲ ଲାଗେ, ସେମାନେ ଧନ୍ୟ । ଯେଉଁମାନେ ଏପରି ନୁହନ୍ତି, ତାଙ୍କର ମନୁଷ୍ୟ ଜନ୍ମ ପାଇବା କେବଳ ବ୍ୟର୍ଥ ହିଁ ଅଟେ ।

୨- ଈଶ୍ୱରଙ୍କୁ ପ୍ରାର୍ଥନା କଲେ ସେ ସ୍ୱୟଂ ହିଁ ସଦ୍‌ଗୁରୁ ପ୍ରାପ୍ତି କରାଇ ଦିଅନ୍ତି। ଏହି ବିଶ୍ୱାସ କରି ପ୍ରାର୍ଥନା କରିବା ଉଚିତ ।

୩- ପ୍ରଭୁଙ୍କଠାରୁ କ'ଣ ମାଗିବା ଉଚିତ ? ପ୍ରଭୁଙ୍କ ପ୍ରେମ ସହିତ ଅନନ୍ୟ ଚିନ୍ତନ ।

୪- ଭଗବାନ୍‌ଙ୍କଠାରୁ ମାଗିବାକୁ ଚ୍ୟହୁଁଛ ଯଦି କେବଳ ତାଙ୍କର ଦର୍ଶନ ଭିକ୍ଷା କର କିମ୍ବା ଏପରି ବସ୍ତୁ ମାଗ, ଯାହା ପାଇବାପରେ ଯେପରି ଆଉ କିଛି ମାଗିବାକୁ ନ ପଡେ।

୫- ଶରୀର, ସ୍ତ୍ରୀ, ପୁତ୍ର ଓ ଅର୍ଥପାଇଁ ଏତେ ବଡ ମାଲିକଙ୍କଠାରେ ଅଳି କରିବା ଉଚିତ ନୁହେଁ।

୬- ମହାତ୍ମାମାନେ କହନ୍ତି "ବରଂ ମରି ଯାଅ, ହେଲେ ଭଗବାନ୍‌ଙ୍କଠାରୁ ନିଜ ପାଇଁ କିଛି ମାଗ ନାହିଁ ।"

୭- ଭଗବାନ୍‌ଙ୍କଠାରେ ଏହି ତୁଚ୍ଛ ଶରୀରପାଇଁ କିଛି ପ୍ରାର୍ଥନା କରିବା ଅନୁଚିତ ।

୮- ବଡ ରହସ୍ୟର କଥା (କ) ସ୍ୱର୍ଗାଶ୍ରମ ଗଙ୍ଗାକୂଳସ୍ଥ ବଟବୃକ୍ଷର ଦୃଶ୍ୟକୁ ମନେ ପକାଅ ଏବଂ ପରମାତ୍ମାଙ୍କୁ ପ୍ରାର୍ଥନା କର । ହେ ପ୍ରଭୋ ! ହେ ଦୀନବନ୍ଧୋ! ଆପଣଙ୍କର ପ୍ରେମ ଓ ଭକ୍ତିରେ ଏପରି ସମୟ ବିତାଇବାପାଇଁ ଆଉ କେବେ ସମୟ ମିଳିବ । (ଖ) ଯେଉଁ ସବୁ କଥା ଏଥିରେ ବିଚ୍ଚାର କରାଯାଇ ଅଛି, ତାହା ସବୁ ବାରମ୍ବାର ମନେ ପକାଅ । ଏହା ଉପରେ ମନନ କର ଓ ଏକାନ୍ତରେ ବସି ବାରମ୍ବାର ବିଚ୍ଚାର କରି ନିଜର କର୍ତ୍ତବ୍ୟ ନିଶ୍ଚିତ କରି ତଦନୁକୂଳ ଆଚରଣ କର।

୯- ଭଗବାନ୍ ସର୍ବବ୍ୟାପୀ ଏବଂ ସର୍ବାନ୍ତର୍ଯ୍ୟାମୀ ହୋଇଥିବାରୁ ସକଳ ହୃଦୟରେ ପ୍ରତ୍ୟକ୍ଷ ବିଦ୍ୟମାନ ଅଛନ୍ତି । ମନୁଷ୍ୟ ଯଦି ସ୍ୱାର୍ଥ ତ୍ୟାଗ କରି ସରଳ ଜିଜ୍ଞାସୁ ଭାବରେ ହୃଦୟସ୍ଥିତ ଈଶ୍ୱରଙ୍କୁ ପଚ୍ଚାରେ, ତେବେ ତାଙ୍କଠାରୁ ଯଥାର୍ଥ ଉତ୍ତର ମିଳିଯାଏ ।

୧୦- ଏକାନ୍ତରେ ବସି ଗଦ୍‌ଗଦଭାବରେ କରୁଣ ସ୍ୱରରେ ଭଗବାନ୍‌ଙ୍କୁ ପ୍ରାର୍ଥନା କର—"ହେ ପରମେଶ୍ୱର ! ମୁଁ ହୃଦୟର ସହିତ ଆପଣଙ୍କର ସ୍ତୁତି ଚ୍ଚାହୁଁ ଅଛି । ଏହି ସ୍ତୁତି ଅବିରତ ମୋ ହୃଦୟରେ ରହୁ । ଏହା ହିଁ ଆପଣଙ୍କୁ ଭିକ୍ଷା କରୁଅଛି ।" ଏହିପରି ପ୍ରତିଦିନ ନିଜ ଭାବ ଅନୁଯାୟୀ ଭଗବାନ୍‌ଙ୍କଠାରେ କାତର ପ୍ରାର୍ଥନା କର । ଏକ ମିନିଟ ଆନ୍ତରିକ ପ୍ରାର୍ଥନାରେ ମଧ୍ୟ ଅନେକ ଲାଭ ମିଳିଥାଏ।

୧୧- ପରମାତ୍ମାଙ୍କଠାରେ ଛୋଟ-ବଡ଼ର କୌଣସି ବିଚ୍ଚାର ନାହିଁ । ଏକ ଛୋଟରୁ ଛୋଟ ବ୍ୟକ୍ତି ପରମାତ୍ମାଙ୍କୁ ଯେପରି ଭଜେ, ସେ ମଧ୍ୟ ତାକୁ ସେହିପରି ଭଜନ୍ତି । ଯଦି କେହି ତାଙ୍କୁ ପାଇବାପାଇଁ କାନ୍ଦି ବ୍ୟାକୁଳ ହୁଏ, ସେ ମଧ୍ୟ ତା ସହିତ ସାକ୍ଷାତପାଇଁ ବ୍ୟାକୁଳ ହୋଇପଡନ୍ତି । ଯିଏ ତାଙ୍କ ସହ ମିଶିବାକୁ ଇଚ୍ଛା କରେ, ସେ ବ୍ୟାକୁଳିତ ହୁଅନ୍ତି । ଏହା ତାଙ୍କର କେତେ ବଡ ଦୟା !

୧୨- ଯେତେବେଳେ ସାଧକ ତାର ପୁରୁଷାର୍ଥରୁ ନିରାଶ ହୋଇ ଯାଏ,

ସେତେବେଳେ ସେ ନିରୁପାୟ ହୋଇ ଭଗବାନ୍‌ଙ୍କର ଶରଣାଗତପୂର୍ବକ ଆର୍ତ୍ତ କଣ୍ଠରେ ଡାକେ—"ହେ ନାଥ ! ମୋତେ ଏ ଘୋର ସଂକଟରୁ ରକ୍ଷା କର । ମୁଁ ସବୁଆଡୁ ଅସମର୍ଥ । ମୁଁ ଯେ ନିଜ ବଳରେ ନିଜର ଉଦ୍ଧାରପାଇଁ ଭାବିଥିଲି, ତାହା ମୋର ଅତିଶୟ ଭୁଲ ଥିଲା । ରାଗ-ଦ୍ୱେଷ, କାମ-କ୍ରୋଧାଦି ଶତ୍ରୁ ଆଦିର ଗ୍ରପରେ ମୁଁ ଆଜି ଜାଣିଲି ଯେ ଆପଣଙ୍କର କୃପା ବିନା ଏ ବିପଦରୁ ମୁକ୍ତି ମିଳିବା ସମ୍ଭବ ନୁହେଁ ।" ଯେତେବେଳେ ଏହିପରି ଅହଂକାର ତ୍ୟାଗ କରି ସରଳ ଓ ଆନ୍ତରିକଭାବେ ମନୁଷ୍ୟ ଭଗବାନ୍‌ଙ୍କର ଶରଣାପନ୍ନ ହୁଏ, ସେତେବେଳେ ଭଗବାନ୍ ତାକୁ ନିଜର କରନ୍ତି ଓ ଆଶ୍ୱାସନା ଦିଅନ୍ତି, କାରଣ ଭଗବାନ୍ କହିଛନ୍ତି—

**ସକୃଦେବ ପ୍ରପନ୍ନାୟ ତବାସ୍ମୀତି ଚ ଯାଚତେ ।**
**ଅଭୟଂ ସର୍ବଭୂତେଭ୍ୟୋ ଦାଦାମ୍ୟେତଦ୍‌ବ୍ରତଂ ମମ ॥**

(ବା.ରା. ୬।୧୮।୩୩)

୧୩- ଦୟାସିନ୍ଧୁ ଭଗବାନ୍‌ଙ୍କ ଶରଣାଗତ ହୋଇ ତାଙ୍କର ଗୁଣ, ପ୍ରଭାବ ଓ ରହସ୍ୟର ତତ୍ତ୍ୱକୁ ଜାଣିବାପାଇଁ ଓ ତାଙ୍କୁ ପାଇବାପାଇଁ ନିମ୍ନ ଲିଖିତରୂପେ ପ୍ରାର୍ଥନା କରିବା ଉଚିତ—

"ହେ ନାଥ ! ଆପଣ ଦୟାସାଗର, ସର୍ବାନ୍ତର୍ଯ୍ୟାମୀ, ସର୍ବେଶ୍ୱର, ସର୍ବଶକ୍ତିମାନ୍ ଏବଂ ସର୍ବଜ୍ଞ ଅଟନ୍ତି । ଆପଣଙ୍କର କିଞ୍ଚିତ ଦୟାରୁ ହିଁ ସଂସାର ଏକ ମୁହୂର୍ତ୍ତରେ ଉଦ୍ଧାର ହୋଇପାରେ । ପୁଣି ଆମେ ଯେପରି ତୁଚ୍ଛ ପ୍ରାଣୀଙ୍କ କଥା କ'ଣ କହିବା? ତେଣୁ ଆମେ ଆପଣଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ସବିନୟ ପ୍ରାର୍ଥନା କରୁଅଛୁ ଯେ ହେ ଦୟାସିନ୍ଧୋ ! ଆମ ଉପରେ ଦୟାଦୃଷ୍ଟି ରଖନ୍ତୁ ଯଦ୍ଦ୍ୱାରା ଆମେ ଆପଣଙ୍କୁ ଯଥାର୍ଥରୂପେ ଜାଣିପାରୁଁ । ଯଦ୍ୟପି ଆମ ସଭିଙ୍କ ଉପରେ ଆପଣଙ୍କର ଅପାର ଦୟା ଅଛି, ତଥାପି ତାହାର ରହସ୍ୟ ନ ଜାଣିଥିବାରୁ ଆମେ ସବୁ ସେ ଦୟାରୁ ବଞ୍ଚିତ ହୋଇ ରହିଅଛୁ । ତେଣୁ ଆମ ଉପରେ ଏପରି କୃପା କରନ୍ତୁ ଯେପରି ଆମେ ଆପଣଙ୍କର ଦୟାର ରହସ୍ୟ ସମ୍ବନ୍ଧରେ ଅବଗତ ହୋଇପାରିବୁ । ଯଦି ଆପଣ କେବଳ ଦୟା ସାଗର ହୋଇ ଅନ୍ତର୍ଯ୍ୟାମୀ ହୋଇ ନ ଥାଆନ୍ତେ, ତେବେ ଆପଣ ଆମର ଅନ୍ତରର ପୀଡା ଜାଣିପାରନ୍ତେ ନାହିଁ । କିନ୍ତୁ ଆପଣ ତ ସକଳ ହୃଦୟରେ ବିରାଜିତ ସର୍ବାନ୍ତର୍ଯ୍ୟାମୀ ଅଟନ୍ତି । ତେଣୁ ଆପଣଙ୍କ ବିନା ଆମର ଯେଉଁ ଦୁର୍ଦ୍ଦଶା, ତାହା ମଧ୍ୟ ଆପଣ ଜାଣନ୍ତି । ଆପଣ ଦୟାସାଗର ଓ ସର୍ବାନ୍ତର୍ଯ୍ୟାମୀ ହୋଇ ଯଦି ସର୍ବେଶ୍ୱର ଓ ସର୍ବ

ସାମର୍ଥ୍ୟବାନ୍ ହୋଇ ନ ଥାଆନ୍ତେ, ତେବେ ଆମେ ଆମର କଲ୍ୟାଣପାଇଁ ଆପଣଙ୍କୁ ପ୍ରାର୍ଥନା କରନ୍ତୁ ନାହିଁ। କିନ୍ତୁ ଆପଣ ତ ସର୍ବଲୋକ ମହେଶ୍ୱର ଓ ସର୍ବଶକ୍ତିମାନ୍ । ତେଣୁ ଆମପରି ତୁଚ୍ଛ ପ୍ରାଣୀଙ୍କୁ ଏହି ମୃତ୍ୟୁରୂପ ସଂସାରସାଗରରୁ ଉଦ୍ଧାର କରିବା ଏକ ସାଧାରଣ କଥା ଅଟେ ।

୧୪- "ଆମେ କେବଳ ଏତିକି ଚାହୁଁଛୁ ଯେ ଆପଣଙ୍କଠାରେ ଆମର ଅନନ୍ୟ ପ୍ରେମ ରହୁ, ନିରନ୍ତର ଆମ ହୃଦୟରେ ଆପଣଙ୍କର ଚିନ୍ତନ ସ୍ଥାନ ପାଉ ଓ ଆପଣଙ୍କଠାରୁ ଆମର ବିୟୋଗ ନ ଘଟୁ । ଆପଣ ଏପରି ସୁହୃଦ୍ ଯେ ଆପଣ କେବଳ ଭକ୍ତଙ୍କର ନୁହେଁ, ଆପଣ ଏପରିକି ପତିତ ଓ ମୂର୍ଖମାନଙ୍କୁ ମଧ୍ୟ ଉଦ୍ଧାର କରନ୍ତି । ଆପଣ ପତିତପାବନ ପାତକୀତାରଣ ଆଦି ନାମରେ ବିଖ୍ୟାତ। ତେଣୁ ଆମ ପରି ଜ୍ଞାନ, ବୈରାଗ୍ୟ, ଭକ୍ତି ଓ ସଦାଚାରହୀନ ମୂଢ଼ ପତିତମାନଙ୍କୁ ଉଦ୍ଧାର କରିବା ଆପଣଙ୍କର କର୍ତ୍ତବ୍ୟ ଅଟେ ।"

୧୫- ଏକାନ୍ତରେ ବସି ନିର୍ମଳ ହୃଦୟରେ କରୁଣାପୂର୍ଣ୍ଣ ଭାବରେ ଗଦ୍‌ଗଦ୍ ସ୍ୱରରେ ଉପର୍ଯ୍ୟୁକ୍ତ ଭାବଯୁକ୍ତ କୌଣସି ଭାଷାରେ ପ୍ରଭୁଙ୍କୁ ପ୍ରାର୍ଥନା କଲେ ଭଗବତ୍‌କୃପାରୁ ଗୁଣ, ପ୍ରଭାବ ଓ ତତ୍ତ୍ୱସହିତ ଭଗବାନ୍‌ଙ୍କୁ ଜାଣି ମନୁଷ୍ୟ ପରମଶାନ୍ତି ଲାଭ କରେ ।

୧୬- ଯେଉଁ ବ୍ୟକ୍ତି ଆପଣଙ୍କ ଦୁର୍ଲଭ ଦର୍ଶନ ଲାଭ କରି ଆପଣଙ୍କଠାରୁ ସାଂସାରିକ ସୁଖ ଭିକ୍ଷା କରେ, ସେ ଭୃତ୍ୟ ନୁହେଁ, ମାତ୍ର ବ୍ୟବସାୟୀ ଅଟେ । ହେ ଭଗବନ୍ ! କାମନାରୁ ଅନିଷ୍ଟ ଜାତ ହୁଏ, କାମନା ଜାତ ହେଲେ ଇନ୍ଦ୍ରିୟ, ମନ, ପ୍ରାଣ, ଦେହ, ଧର୍ମ, ଧୈର୍ଯ୍ୟ, ବୁଦ୍ଧି, ଲଜ୍ଜା, ସମ୍ପତ୍ତି, ତେଜ, ସ୍ମୃତି ଏବଂ ସତ୍ୟର ମଧ୍ୟ ବିନାଶ ହୁଏ। ତେଣୁ ହେ ଈଶ୍ୱର ! ଯଦି ଆପଣ ମୋତେ ମୋ ମନମୁତାବକ ବର ପ୍ରଦାନ କରିବାକୁ ଚାହାଁନ୍ତି, ତେବେ ଏହି ବର ଦିଅନ୍ତୁ ଯେ ମୋ ହୃଦୟରେ ଅଭିଳାଷର ଅଙ୍କୁର ଜାତ ନ ହେଉ । ମୁଁ ଆପଣଙ୍କଠାରୁ ଏହି ବର ମାଗୁଅଛି ।

୧୭- ଶିଶୁକୁ ଭୁଲାଇବାପାଇଁ ମା ତା ଆଗରେ ନାନାପ୍ରକାରର ଖେଳନା ରଖେ, କିଛି ଖାଇବା ପଦାର୍ଥ ତା ହାତରେ ଦିଏ । ଯେଉଁ ପିଲା ସେହି ପଦାର୍ଥରେ ଭୁଲିଯାଇ ମା ପାଇଁ ଆଉ କାନ୍ଦେ ନାହିଁ, ମା ମଧ୍ୟ ଶିଶୁକୁ ଛାଡ଼ି ଅନ୍ୟ କାମରେ ଲାଗେ । କିନ୍ତୁ ଯେଉଁ ଶିଶୁ କୌଣସି ପଦାର୍ଥରେ ନ ଭୁଲି ମା, ମା ଡାକ ଛାଡେ, ମା ସବୁକାମ ଛାଡ଼ି ତାହାକୁ କୋଳକୁ ନେବାପାଇଁ ବାଧ୍ୟ ହୁଏ। ମା ମଧ୍ୟ ଭଲ ଭାବରେ ତା ପିଲାର ଜିଦି ଜାଣେ ଯେ ପିଲାଟି ମୋ ବ୍ୟତୀତ କୌଣସି ବିଷୟରେ ମନ ଭୁଲାଏ ନାହିଁ ।

୧୮- ଭଗବାନ୍ ମଧ୍ୟ ଭକ୍ତକୁ ପରୀକ୍ଷା କରିବା ପାଇଁ ନାନାପ୍ରକାର ବିଷୟ ପ୍ରଲୋଭନ ଦେଇ ଭୁଲାଇବାକୁ ଚାହାନ୍ତି । ଯିଏ ଏହି ପରୀକ୍ଷାରେ ଭୁଲିଯାଏ ସେ ଅନୁତ୍ତୀର୍ଣ୍ଣ ହୁଏ, ମାତ୍ର ଯେଉଁ ଭକ୍ତ ସୌଭାଗ୍ୟବଶତଃ ସଂସାରର ପ୍ରଲୋଭନ ତ୍ୟାଗ କରେ ସମସ୍ତ ପଦାର୍ଥକୁ ତୁଚ୍ଛ, କ୍ଷଣିକ ଓ ନାଶବାନ୍ ମନେ କରି ପରିତ୍ୟାଗ କରେ ଓ ତାଙ୍କ ପ୍ରେମରେ ମଗ୍ନ ହୋଇଯାଏ, ଏପରି ଭକ୍ତପାଇଁ ସବୁ କାମ ଛାଡି ଭଗବାନ୍‌ଙ୍କୁ ତୁରନ୍ତ ଆସିବାକୁ ପଡେ ।

୧୯- ମୁକ୍ତିର କାମନାକୁ କଳଙ୍କ ମନେ କରି ଏବଂ ନିଜର ଦୁର୍ବଳତା ତଥା ଅଯୋଗ୍ୟତାକୁ ଅନୁଭବ କରି ଭଗବାନ୍‌ଙ୍କ ଉପରେ ନିଜର ଅବିଶ୍ୱାସ ଭାବକୁ ସ୍ୱୀକାର ପୂର୍ବକ ଭକ୍ତ ପରମାତ୍ମାଙ୍କ ସମ୍ମୁଖରେ ଏକାନ୍ତରେ କାନ୍ଦି କହି ଉଠେ—

୨୦- “ହେ ପ୍ରଭୋ ! ଯେପର୍ଯ୍ୟନ୍ତ ମୋ ହୃଦୟରେ ମୁକ୍ତିର ଇଚ୍ଛା ବଳବତ୍ତର ଅଛି, ସେପର୍ଯ୍ୟନ୍ତ ମୁଁ ଆପଣଙ୍କର ଦାସ କିପରି ହେଲି? ମୁଁ ତ ମୁକ୍ତିର ଗୋଲାମ ଅଟେ। ଆପଣଙ୍କୁ ଛାଡି ଅନ୍ୟ କିଛି ଆଶା କରୁଛି । ମୁକ୍ତିପାଇଁ ଆପଣଙ୍କୁ ମୁଁ ଭକ୍ତି କରୁଛି ଏବଂ ଏଣେ ନିଜକୁ ଆପଣଙ୍କର ନିଷ୍କାମ ଶରଣାଗତ ଭକ୍ତ ମନେ କରୁଛି। ହେ ନାଥ ! ଏହା ମୋର ଦମ୍ଭାଚରଣ ଅଟେ । ସ୍ୱାମିନ୍ ! ଦୟାକରି ମୋର ଏ ଦମ୍ଭକୁ ବିନାଶ କର । ମୋର ହୃଦୟରୁ ମୁକ୍ତିରୂପୀ କାମନାର ମୂଳ ଉତ୍ପାଟନ କର । ମୋତେ କେବଳ ଅନନ୍ୟ ପ୍ରେମ ପ୍ରଦାନ କର । ଆପଣଙ୍କ ପରି ଅତୁଳନୀୟ ଦୟାମୟଙ୍କୁ କିଛି ମାଗିବା ହିଁ ପିଲାଳିଆମି ଅଟେ । କିନ୍ତୁ ଆତୁର କ’ଣ ନ କରେ ?”

୨୧- ଯଦି କେବେ ହୃଦୟରେ କୁବିଚାର ପ୍ରବେଶ କରେ, ତେବେ ସେଥିରୁ ନିଜକୁ ରକ୍ଷା କରିବାପାଇଁ ଆମେ କାତର ସ୍ୱରରେ ‘ହେ ନାଥ ! ହେ ନାଥ ! ଡାକିବା ଉଚିତ । ପ୍ରଭୁଙ୍କର ଆଶ୍ରୟ ନେଲେ ଚିନ୍ତା, ଭୟ, ଶୋକ, ସକଳ ପ୍ରକାର ଦୁର୍ଗୁଣ-ଦୁରାଚାର ସମୂଳେ ବିନାଶ ହୁଏ ଓ ସଦ୍‌ଗୁଣ, ସଦାଚାର ଏବଂ ଶାନ୍ତି ଆଦିର ସ୍ୱତଃ ବିକାଶ ହୁଏ ।

୨୨- ଈଶ୍ୱରଙ୍କୁ ଛାଡି ଅନ୍ୟ କିଛି କାମନା କର ନାହିଁ ।

୨୩- କାହାରିକୁ କିଛି ନ ମାଗିବା ସର୍ବୋତ୍ତମ ଉପାୟ ଅଟେ ।

୨୪- ଯଦି କେହି ଭଗବାନ୍‌ଙ୍କୁ ପାଇବାପାଇଁ କାମନା କରେ, ତେବେ ସେ ରୁକ୍ମିଣୀ, ସୀତା ଏବଂ ବ୍ରଜବାଳାମାନଙ୍କପରି ନିର୍ମଳ ପ୍ରେମ ହୃଦୟରେ ଭଗବାନ୍‌ଙ୍କର ସାକ୍ଷାତ୍‌ପାଇଁ ବିଳାପ କରିବାକୁ ହେବ ।

୨୫- ଏକ ମୁହୂର୍ତ୍ତ ବିଳମ୍ବକୁ ଏକ ପ୍ରଳୟ ସଦୃଶ ଅସହ୍ୟ ମନେ କରି ରୁକ୍ମିଣୀଙ୍କ ପରି ମିଳନ ଇଚ୍ଛାରେ ବିଳାପ କଲେ ଭଗବାନ୍ ପ୍ରତ୍ୟକ୍ଷ ଦର୍ଶନ ଦେଇପାରନ୍ତି ।

୨୬- କୁସଂସ୍କାରର ବିନାଶପାଇଁ ପ୍ରାର୍ଥନା କରିବା ଉଚିତ ।

୨୭- ଦୀନହୀନ ଭାବରେ ପରମେଶ୍ୱରଙ୍କୁ ପ୍ରାର୍ଥନା କଲେ ଏପରିକି ପତିତ ବ୍ୟକ୍ତି ମଧ୍ୟ ପରମପଦ ପାଇଥାଏ ।

୨୮- ଯେ ନିର୍ମଳ ହୃଦୟ ସହିତ ନିଜକୁ ଦୀନହୀନ ଓ ତୁଚ୍ଛ ମନେ କରି ପ୍ରାର୍ଥନା କରେ, ପ୍ରଭୁ ତାକୁ ଉଦ୍ଧାର କରନ୍ତି ।

୨୯- ଭଗବାନ୍‌ଙ୍କପାଇଁ ନିର୍ମଳ ହୃଦୟ ସହିତ ବିଳାପ ନ କରିପାରିବାର ଦୁଇଟି କାରଣ ଅଛି—ଶ୍ରଦ୍ଧାର ଅଭାବ ଓ ପୂର୍ବ ସଞ୍ଚିତ ପାପ । ଏହି କାରଣରୁ ଆମ ମନରେ ବିଶ୍ୱାସ ଓ ଭରସା ଜନ୍ମେ ନାହିଁ ଯେ ସେ ସବୁ ଜାଗାରେ ସଦା ସର୍ବଦା ଆମର କରୁଣ ଡାକ ଶୁଣିବାପାଇଁ ଓ ଦୟାର୍ଦ୍ର ହୃଦୟରେ ସାହାଯ୍ୟ କରିବାପାଇଁ ଉପସ୍ଥିତ ଅଛନ୍ତି ।

୩୦- ପ୍ରଭୁଙ୍କୁ ନିର୍ମଳ ହୃଦୟରେ କାତର କଣ୍ଠରେ ପ୍ରାର୍ଥନା କରିବା— "ହେ ପ୍ରଭୋ ! ମୁଁ ଅତି ତୁଚ୍ଛ ଓ ନୀଚ। ଗୋପୀମାନଙ୍କ ପରି ଯାହାର ପ୍ରେମବଳ ଅଛି। ତୁମେ ତା ହାତରେ ବିକି ହୋଇଯାଅ । ହେ ପ୍ରଭୋ ! ମୋ ପାଖରେ ପ୍ରେମର ବଳ ଯଦି ଥାଆନ୍ତା, ତେବେ ମୁଁ କାହିଁକି କାନ୍ଦନ୍ତି ଓ ପ୍ରାର୍ଥନା କରନ୍ତି । ମୁଁ ଯେତେବେଳେ ମୋର ପାପ, ଅବଗୁଣ ଓ ବଳଆଡକୁ ଦେଖେ, ମୋ ମନରେ ଭୀରୁତା ଓ ନିରାଶା ଛାଇ ଯାଏ । କିନ୍ତୁ ହେ ନାଥ ! ଆପଣଙ୍କ ଦୟା ତ ଅପାର ଅଟେ । ଆପଣ ଦୟାସିନ୍ଧୁ ଓ ପତିତପାବନ ଅଟନ୍ତି । ମୋତେ ଏପରି ବଳ ଦିଅନ୍ତୁ, ମୁଁ ଯେପରି ଆପଣଙ୍କର ରହସ୍ୟ ଜାଣିପାରିବି ।"

